ବଞ୍ଚିବାର କଳା

ଲେଖକ : ପ୍ରଫେସର ଶରତ ଚନ୍ଦ୍ର ରଥ
ଏମ୍.ଏ.ଏମ୍‌ଫିଲ୍, ପିଏଚ୍.ଡି

ପ୍ରକାଶକ : ଅଗ୍ରଦୂତ
ବାଙ୍କାବଜାର, କଟକ - ୭୫୩୦୦୨, ଓଡ଼ିଶା

ପ୍ରଥମ ପ୍ରକାଶ : ୨୦୧୭
କମ୍ପ୍ୟୁଟର ସହାୟତା ଓ ପ୍ରଚ୍ଛଦ : ଏମ୍. ପ୍ରିଣ୍ଟର୍ସ, କଟକ
ମୁଦ୍ରଣ : ରୁବି ଅଫ୍‌ସେଟ୍, କଟକ

ମୂଲ୍ୟ : ଟ. ୧୨୫/-

**BANCHIBARA KALA**
Written by : **Prof. Sarat Chandra Rath**
M.A, M.Phil, Ph.D.

Published by : **AGRADUTA**
Banka Bazar, Cuttack -753002, Odisha

First Edition : **2017**
Computer & design by : M. Printer, Cuttack

Price : ₹ 125/-

Digitized by PPRACHIN, SOA

ପୁସ୍ତକଟିକୁ ଶ୍ରୀମା ଶ୍ରୀଅରବିନ୍ଦଙ୍କ ଚରଣ କମଳରେ ସମର୍ପଣ
କରିବା ପରେ ନନା **ଶ୍ରୀ ନୀଳାଦ୍ରି ବିହାରୀ ରଥ**

ଓ

ବୋଉ **ଶ୍ରୀମତୀ ମନୋରମା ଦେବୀଙ୍କ**
ହାତରେ ପ୍ରଦାନ କଲି ।

**ଶରତ**

Digitized by PPRACHIN, SOA

# ଆଗରୁ ପଦେ

ସେଦିନ ଶିକାରୀମାନବ ଆଜି ଇଣ୍ଟରନେଟ ଯୁଗରେ ପହଞ୍ଚିଛି। ଘରେ ବସି ସମଗ୍ର ପୃଥିବୀକୁ ଦର୍ଶନ ଓ ସମଗ୍ର ପୃଥିବୀ ସହ ଯୋଗାଯୋଗ ସ୍ଥାପନ କରିପାରୁଛି। ପ୍ରାଚ୍ୟର ପାଶ୍ଚାତ୍ୟ ଓ ପାଶ୍ଚାତ୍ୟରୁ ପ୍ରାଚ୍ୟ ଦିଶୁଛି ନିଜ କୋଠାରୁ ସାମ୍ନା ଘରର କୋଠା ଦିଶିଲା ପରି। ଯାହା ସବୁ କାଲି ଅସମ୍ଭବ ଥିଲା ଓ ଲାଗୁଥିଲା ତାହା ଆଜି ସମ୍ଭବ ହୋଇଛି ଓ ସୁଲଭ ହୋଇଛି। ପାଞ୍ଚଶହ ବର୍ଷରୁ କମ୍ ସମୟରେ ଯେତେ ପ୍ରଗତି ଘଟିଛି ହୁଏତ ତା'ପୂର୍ବରୁ ଏକ ସହସ୍ର ବର୍ଷରେ ସେ ପ୍ରଗତି ଘଟି ନଥିଲା। ଅତଏବ ବୌଦ୍ଧିକତାର ମାନ ବଢ଼ିଛି, ଜିଜ୍ଞାସାର ଦିଗ୍‌ବଳୟ ପ୍ରସାରିତ ହୋଇଛି। ହେଲେ ଏସବୁ କଥା ସହିତ ତାଳଦେଇ ଗୋଟିଏ କଥା ବଢ଼ିନାହିଁ, ତାହା ହେଉଛି ବଞ୍ଚିବାର କଳା। ପାରସ୍ପରିକ ଶ୍ରଦ୍ଧା, ବିଶ୍ୱାସ, ଭରସା, ଆନ୍ତରିକତା, ସଦ୍‌ଭାବ ଇତ୍ୟାଦି ଯେତେ ବଢ଼ିବା କଥା ବଢ଼ିନାହିଁ। ଲାଫିଙ୍ଗ କ୍ଲବର ସଂଖ୍ୟା ବଢ଼ିଛି ମାତ୍ର ସ୍ୱତଃସ୍ଫୂର୍ତ୍ତ ହସ ବିଭବ କମିଯାଉଛି। ମୃଦୁ ହସ ତ ମଉଳି ମଉଳି ଝଡ଼ିଗଲାଣି ଓଠରୁ କହିଲେ ଭୁଲ୍ ହେବନାହିଁ। ଗମ୍ଭୀର ମୁହଁ ଧରି ବ୍ୟସ୍ତ ବିବ୍ରତ ହୋଇ ଧାଉଁଛି ମଣିଷ। ସେ ସର୍ବଦା ତରତର, ଏତେ ତରତର କାହିଁକି ବୁଝିହେଉନାହିଁ। ସମୟ ତ କାହା ପାଖରେ ନାହିଁ ବିପଦରେ କାହା ପାଖରେ ଠିଆ ହେବା ପାଇଁ ଅଥବା କାହାର ସମସ୍ୟା ସମାଧାନ ନିମନ୍ତେ ଆଗେଇ ଆସିବାପାଇଁ। ଏପରିକି ଶୁଭେଚ୍ଛା ଓ ସଦିଚ୍ଛା ନିମନ୍ତେ ମଧ୍ୟ କାହା ପାଖରେ ସମୟ ନାହିଁ କି ମାନସିକତା ନାହିଁ।

ଏତେବେଳେ ଯେଉଁ କଥାଟି ସବୁଠୁ ଅଧିକ ଦରକାର ତାହା ହେଉଛି ବଞ୍ଚିବାର କଳା। ସମାଜ ଓ ସଂସାରର ପଥ ଅତ୍ୟନ୍ତ ଜଟିଳ, ସେଥିରେ ଚାଲିବା ପାଇଁ କେତେ କଥା ଜାଣିବା ଦରକାର। ନଜାଣି ନବୁଝି ବାଟଚାଲିଲେ ପାଦେ ପାଦେ ଝୁଣ୍ଟିବାକୁ ହୁଏ। ବାଟର ଦୋଷ ଦେବାକୁହୁଏ ସିନା ତହିଁରେ କିଛି ଲାଭ ହୁଏନାହିଁ। ବାଟକୁ

Digitized by PPRACHIN, SOA

ହଠାତ୍ ବଦଳାଇ ହେବନାହିଁ, ଚାଲିବା ଶୈଳୀ ବଦଳାଇବାକୁ ଶିଖିବା ଦରକାର। ସ୍ଥାନ, କାଳ ପାତ୍ର ଅନୁସାରେ କଥା କହିବା, ବ୍ୟବହାର କରିବା ଏହିକଳାର ଏକଏକ ଅଂଶ। ବ୍ୟକ୍ତିଗତ, ଜୀବନ ସାମାଜିକ ଜୀବନ, ରାଷ୍ଟ୍ରୀୟ ଜୀବନ ତଥା ଅନ୍ତଃରାଷ୍ଟ୍ରୀୟ ଜୀବନ ପର୍ଯ୍ୟନ୍ତ ଏହି କଳା ପରିବ୍ୟାପ୍ତ।

ଏହି କଳାର ଅନୁଶୀଳନ ନିମନ୍ତେ ସାମାନ୍ୟ ପ୍ରୟାସ ଉକ୍ତ ପୁସ୍ତକରେ କରାଯାଇଛି। ଏଥିରେ ସ୍ଥାନିତ ବହୁ ପ୍ରବନ୍ଧ ଦୈନିକ 'ସମାଜ', ଦୈନିକ 'ଧରିତ୍ରୀ', ଦୈନିକ 'ପ୍ରମେୟ' ପ୍ରଭୃତିରେ ପ୍ରକାଶିତ ହୋଇଛି। ଏହି ଅବକାଶରେ ମୁଁ ଉପରୋକ୍ତ ସମ୍ବାଦପତ୍ରର ସଂପାଦକମାନଙ୍କୁ ବିନମ୍ର କୃତଜ୍ଞତା ଜଣାଉଛି। ପୁସ୍ତକଟିର ପାଠକୀୟ ଆଦୃତି ରହିଲେ ଶ୍ରମ ସାର୍ଥକ ମଣିବି।

ଶରତ ଚନ୍ଦ୍ର ରଥ

ଭୁବନେଶ୍ୱର

Digitized by PPRACHIN, SOA

# ସୂଚୀପତ୍ର


୧. ବଞ୍ଚିବାର କଳା ୯
୨. ଆମ ସଂସ୍କାର- ଆମ ପରିବାର ୧୩
୩. ଆଜିର ଜୀବନଧାରା ୧୫
୪. ଆମେ ଖୁସିରେ ରହିବା କିପରି ? ୧୮
୫. ଆବଶ୍ୟକତା ଓ କାମନା ୨୧
୬. କଥା କହିବାର କଳା ୨୪
୭. ପାରିବାରିକ ଶିକ୍ଷା ଓ ବିଶ୍ୱ ଜୀବନ ୨୭
୮. ସୁଖ ଓ ଆନନ୍ଦ ୩୧
୯. ବ୍ୟକ୍ତି ଓ ବିଶ୍ୱ ପ୍ରକୃତି ୩୪
୧୦. ଶିକ୍ଷା ଓ ମୂଲ୍ୟବୋଧ ୩୭
୧୧. ମାତୃତ୍ୱର ବର୍ଣ୍ଣବିଭା ୪୦
୧୨. ବଟରୁ କଳ୍ପବଟ ୪୩
୧୩. ଶିକ୍ଷା ଓ ମୂଲ୍ୟବୋଧ ୪୬
୧୪. ଆତ୍ମଶାନ୍ତିର ରୂପରେଖ ୪୯
୧୫. 'ନୂଆ ଜୀବନ : ନୂଆ ସ୍ୱାଦ' ୫୨
୧୬. ବିଶ୍ୱପ୍ରକୃତି ଓ ଆମେ ୫୫
୧୭. ଅନୁଚିନ୍ତନ ୫୭
୧୮. ପୂର୍ଣ୍ଣ ପୃଥିବୀର ଚିତ୍ର ୬୧
୧୯. ବ୍ୟକ୍ତିତ୍ୱ ଓ ଅହଂକାର ୬୪
୨୦. ଆତ୍ମ ମିତ୍ରତା ୬୬
୨୧. ଭଲ କାମ ଆମେ କରିବା କେମିତି ୬୯
୨୨. ଆତ୍ମବିଶ୍ଳେଷଣ ୭୨
୨୩. ମନବଳର ମହତ୍ତ୍ୱ ୭୫


Digitized by PPRACHIN, SOA

୨୪. ଅନ୍ୱେଷଣ ୭୮
୨୫. ଚିନ୍ତା, ଚେତନା ଓ ଆଚରଣ ୮୭
୨୬. ଅଭାବ – କାଲି ଓ ଆଜିର ୯୦
୨୭. ବିଦ୍ୟା ଓ ଅବିଦ୍ୟା ୯୩
୨୮. ଭାରି ଏକା ଲାଗୁଛି ୯୬
୨୯. ପ୍ରଗତିର ପରିଭାଷା ୯୯
୩୦. ଜୀବନ ଚିନ୍ତା ୧୦୨
୩୧. ଧନ ଅର୍ଜନେ ଧର୍ମ କରି ୧୦୮
୩୨. **ଆତ୍ମ ବିଶ୍ଳେଷଣର** ମହତ୍ତ୍ୱ ୧୧୦
୩୩. **ଭଙ୍ଗାଗଡ଼ାର** ମର୍ମକଥା ୧୧୩
୩୪. ଆମ ନାଭିରେ କସ୍ତୁରୀ ୧୧୬
୩୫. ଲାଭ କ୍ଷତିର ଅଙ୍କ କଷା ୧୧୯
୩୬. ଅବିଦ୍ୟା, ବିଦ୍ୟା ଓ ଅର୍ଥକାରୀ ବିଦ୍ୟା ୧୨୨
୩୭. ଜୀବନ ଜିଜ୍ଞାସା : ଅତୀତ, ବର୍ତ୍ତମାନ, ଭବିଷ୍ୟତ ୧୨୫
୩୮. ଆତ୍ମବିକାଶର ସ୍ୱରଲିପି ୧୨୮
୩୯. ଆନନ୍ଦବୋଧର ଭିତ୍ତି ଓ ଭୂମି ୧୩୨
୪୦. ବିଶ୍ୱ ଭ୍ରାତୃତ୍ୱ ଓ ସ୍ୱାମୀ ବିବେକାନନ୍ଦ ୧୩୫
୪୧. ଅନୁରାଗର ଅନୁଚିନ୍ତା ୧୩୯
୪୨. ଦୋଷ କେଉଁଠି ? ୧୪୨
୪୩. ବିଜ୍ଞାନ ଓ ଆତ୍ମଜ୍ଞାନ ୧୪୭
୪୪. ଜୀବନ ସୌରଭ ୧୫୦
୪୫. ଶେଷ କେଉଁଠି ୧୫୩
୪୬. ଆଲୋକର ଜୟଗାନ ୧୫୫
୪୭. ନିନ୍ଦାଜୀବନ ହିଁ ଶ୍ରଦ୍ଧାଜୀବନ ୧୫୮
୪୮. କୃତଜ୍ଞତାର ମର୍ମକଥା ୧୬୧
୪୯. ନାସ୍ତି ନୁହେଁ ଅସ୍ତି ୧୬୪



Digitized by PPRACHIN, SOA

# ବଞ୍ଚିବାର କଳା

ସଂପ୍ରତି ଜୀବନରୁ ବଞ୍ଚିବାର କଳାଟି ବହୁଳାଂଶରେ ଅପସରି ଯାଇଛି । ଜନସଂଖ୍ୟା ବଢ଼ିଛି, ଶିକ୍ଷାଗତ ଡ଼ିଗ୍ରୀ ସଂଖ୍ୟା ବଢ଼ୁଛି, ଡ଼ିଗ୍ରୀ ଧାରୀଙ୍କ ସଂଖ୍ୟା ବଢ଼ିଛି । ତେବେ ଶିକ୍ଷିତ ମାନଙ୍କ ସଂଖ୍ୟା ସେଇ ଅନୁପାତରେ ବଢ଼ିନାହିଁ । ବୌଦ୍ଧିକତା ବଢ଼ିଛି, ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବହୁ ଅଗ୍ରଗତି ହେଇଛି, ମାତ୍ର ବିକାଶ ଯେପରି ଘଟିବା କଥା ଘଟୁନାହିଁ । ବୌଦ୍ଧିକତାର ସଦୁପଯୋଗ ହେଉନାହିଁ, ସକାରାତ୍ମକ ଦିଗରେ ପ୍ରୟୋଗ ହେଉନାହିଁ ବରଂ ନକାରାତ୍ମକ ଦିଗରେ ପ୍ରୟୋଗ ହେଉଛି । ବ୍ୟକ୍ତି ବ୍ୟକ୍ତି ଭିତରେ, ଅନୁଷ୍ଠାନ ଅନୁଷ୍ଠାନ ଭିତରେ, ସଂସ୍କୃତି ସଂସ୍କୃତି ଭିତରେ ଶ୍ରଦ୍ଧାଶୀଳତା  ନାହିଁ କାରଣ ସହନଶୀଳତା ନାହିଁ । ବ୍ୟକ୍ତିଠାରୁ ସମଷ୍ଟି ପର୍ଯ୍ୟନ୍ତ କେଉଠାରେ ସହିଷ୍ଣୁତା ନାହିଁ । ସହାନୁଭୂତି ପ୍ରାୟତଃ ମଣିଷ ମନରୁ ଦୂରେଇ ଯାଉଛି । ଅନ୍ୟର ଦୁଃଖରେ ଖୁସି ହେବାର ଏବଂ ଅନ୍ୟର ସୁଖରେ ଦୁଃଖୀ ହେବାର ଚିତ୍ର ବହୁ ଭାବରେ ଦେଖିବାକୁ ମିଳୁଛି । କାହିଁକି ଏଇ ଅପଶକ୍ତିର ରାହୁଛାୟା ସମାଜକୁ ତଥା ବ୍ୟକ୍ତିକୁ ଗ୍ରାସ କରୁଛି ଏକଥା ବିଚାରକୁ ନେଲେ କେତେକ କଥାଭିତରୁ ସ୍ପଷ୍ଟ ଭାବରେ ଗୋଟିଏ କଥା ଅବବୋଧ ଭିତରକୁ ଆସୁଛି, ତାହା ହେଉଛି ଅହଂକାର । ବର୍ତ୍ତମାନ ଅହଂର ରାଜତ୍ୱ ଚାଲିଛି, ବୁଦ୍ଧିକୁ ଆୟତ୍ତ କରିଛି ଅହଂ । ମନ ବନ୍ଧା ପଡିଯାଇଛି, ଦାସତ୍ୱ ସ୍ୱୀକାର କରିଛି ଏହି ଅହଂ ନିକଟରେ । ସ୍ନେହ, ଶ୍ରଦ୍ଧା, ମମତା, ତ୍ୟାଗ, ସେବା, ଦୟା, କ୍ଷମା ପ୍ରଭୃତି ମାନବିକ ଗୁଣ ପଥର ତଳର ଘାସ ପରି କାହିଁ କେଉଁଠି ଚାପି ହୋଇରହିଯାଇଛି । ସୁକୁମାରତା ହଜିଯାଇଛି ମଣିଷ ମନରୁ, ସମନ୍ୱୟ କଥାଟି ନିଜର ସତ୍ତା ହରାଇବାକୁ ବସିଲାଣି । ଏକତା ବୋଲି ଯାହା ଅଛି ତାହା କେବଳ ନକାରାତ୍ମକତାରେ । ସମାଜର ପୁଣି ପରିବେଶର କ୍ଷତି ଘଟାଇବାରେ ଏପରି ଏକତା କାର୍ଯ୍ୟକାରୀ ହେବାର ଦେଖାଦେଉଛି । ପ୍ରଭୁ ହୋଇଛି ଉଗ୍ରତା, ହିଂସ୍ରତା, କ୍ରୋଧ, ବିଦ୍ରୋହ, ଛଳନା, ଘୃଣା ଇତ୍ୟାଦି ଇତ୍ୟାଦି ଅମାନବିକ ଗୁଣ । ଆତଙ୍କବାଦ, ଉଗ୍ରବାଦ ହୋଇଛି ଆଜିର ବିଶ୍ୱର ବିରାଟ ଆତଙ୍କ । ପାରିବାରିକ ଜୀବନ ପ୍ରାୟତଃ ବିପର୍ଯ୍ୟସ୍ତ । ପରସ୍ପର ସ୍ନେହର ଅଭାବରୁ ଘର ଆଉ ବୈକୁଣ୍ଠ ସମାନ ହୋଇ ରହିପାରୁନାହିଁ । ପରସ୍ପର ପ୍ରତି ଘରେ କର୍ତ୍ତବ୍ୟବୋଧ କମିଯାଇଛି । ପରସ୍ପରଠାରୁ ଦାବି ବଢ଼ିଯାଉଛି । ଅବଶ୍ୟ ସବୁ ପରିବାର ଯେ ବିପର୍ଯ୍ୟସ୍ତ ଏବଂ ପ୍ରତ୍ୟେକ ବ୍ୟକ୍ତି ଯେ ପବଳ ଅହଂକାରରେ ଭାରାକ୍ରାନ୍ତ, ଏକଥା ନୁହେଁ, ତେବେ ବହୁ ଭାବରେ ବ୍ୟକ୍ତି ଜୀବନ, ପାରିବାରିକ ଜୀବନ ଏବଂ ସାମାଜିକ ଜୀବନ ଛନ୍ଦହୀନ ଏଥିରେ ସନ୍ଦେହ ନାହିଁ । ଛନ୍ଦହୀନ ଜୀବନକୁ ଛନ୍ଦଯୁକ୍ତ କରାଯାଇ ଯେ ନପାରିବ ଏପରି ନୁହେଁ । ତେବେ ଏଥିପାଇଁ ଆବଶ୍ୟକ ଆତ୍ମବିଶ୍ଳେଷଣ, ଆତ୍ମ ସଂଶୋଧନ ।



Digitized by PPRACHIN, SOA

ଗୋଟିଏ କଥା ହେଉଛି ପାରସ୍ପରିକ ଅନୁମୋଦନ ଯାହା ବଞ୍ଚିବାର କଳାର ଏକ ବିଶିଷ୍ଟ ବିଭବ। ଅନ୍ୟଠାରେ ଥିବା ମହତ୍ତ୍ୱ ଓ ପ୍ରତିଭାକୁ ଚିହ୍ନିବା ଏବଂ ସ୍ୱୀକୃତି ଦେବା ମାଧ୍ୟମରେ ଏହି ଅନୁମୋଦନର ପ୍ରାଣ ପ୍ରତିଷ୍ଠା ଘଟିଥାଏ। ଏପରି ସ୍ୱୀକୃତି ମଧ୍ୟ ଅନ୍ୟ ପ୍ରାଣରେ ଅଗ୍ରଗତି ପାଇଁ ଉତ୍ସାହ ଭରି ଦିଏ। ମନରେ ଅସୀମ ପ୍ରେରଣା ଆଣିଦିଏ। ପ୍ରତ୍ୟେକ ବ୍ୟକ୍ତି ଭିତରେ କିଛି ନା କିଛି ସଦ୍‌ଗୁଣ ରହିଛି ତାହାର ଅନ୍ୱେଷଣ ଓ ଅନୁମୋଦନ ଅନ୍ୟମାନଙ୍କ ଦ୍ୱାରା ଅତ୍ୟନ୍ତ ଜରୁରୀ। ଏହାଦ୍ୱାରା ଅହଂକାର କମିଯିବ ଫଳତଃ ନିଜକୁ ବଡ଼କରି ଅନ୍ୟକୁ ସାନ ବୋଲି ଭାବିବାର ଅଭ୍ୟାସଟି ଚାଲିଯିବ। ଅନ୍ୟପକ୍ଷରେ ଅନ୍ୟକୁ ବଡ଼କଲେ ମଣିଷ ବଡ଼ ହୁଏ ଭାବନାଟି ମନରେ ଆସିଯିବ।

ବଞ୍ଚିବାର କଳାର ଅନ୍ୟ ବୈଭବ ହେଉଛି ମୂଲ୍ୟ ଅପେକ୍ଷା ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦେବା। ବର୍ତ୍ତମାନ ମୂଲ୍ୟବୋଧ ଅପେକ୍ଷା ମୂଲ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଛି। ଫଳସ୍ୱରୂପ ବସ୍ତୁ ହୋଇଯାଇଛି ବିକଶିତ ଜୀବନର ମାନଦଣ୍ଡ। ମଣିଷ ହୋଇଯାଇଛି ବସ୍ତୁର ଦାସ। ଯିଏ ଯେତେ ବସ୍ତୁର ଅଧିକାରୀ ସେ ସେତେ ବଡ଼ ବୋଲି ବିଚାର କରାଯାଉଛି। ବସ୍ତୁ ନାହିଁ ତ ଅନ୍ୟମାନଙ୍କର ଶ୍ରଦ୍ଧା ନାହିଁ, ସମ୍ମାନ ନାହିଁ। ଏପରି ହେଉଛି ଯେ ବହୁ ବସ୍ତୁ ପାଇପାରୁ ନଥିବା ଅଭିଭାବକମାନେ ଅବହେଳିତ ହେଉଛନ୍ତି, ଯଥାଯୋଗ୍ୟ ସମ୍ମାନ ସନ୍ତାନଠାରୁ ପାଇବାରୁ ବଞ୍ଚିତ ହେଉଛନ୍ତି। ମୂଲ୍ୟ ଉପରେ ଗୁରୁତ୍ୱ ପ୍ରଦାନର ଏହା ହିଁ ଏକ ପ୍ରକାର ଫଳଶ୍ରୁତି। ଅନ୍ୟପକ୍ଷରେ ମୂଲ୍ୟବୋଧ ଉପରେ ଗୁରୁତ୍ୱ ପ୍ରଦାନ କଲେ ପିତାମାତାଙ୍କର ତ୍ୟାଗ, ଶ୍ରଦ୍ଧା ଓ ସ୍ନେହଶୀଳତା ଆଖିରେ ପଡନ୍ତା, ସେମାନେ ପରିବାରରେ ଯଥାଯଥ ସମ୍ମାନ ଓ ଆଦର ଲାଭ କରନ୍ତେ।

ନିଜ ସଂସ୍କୃତି ପ୍ରତି ଆଦର ଓ ଆନ୍ତରିକତା ବଞ୍ଚିବାର କଳାର ଅନ୍ୟତମ ଉଜ୍ଜ୍ୱଳ ଦିଗନ୍ତ। ଯିଏ ଯେଉଁ ସଂସ୍କୃତିର ଅନ୍ତର୍ଭୁକ୍ତ ସେ ସେହି ସଂସ୍କୃତିକୁ ନେଇ ଗୌରବବୋଧର ଅଧିକାରୀ ହେବା ଉଚିତ୍। ନଚେତ୍ ବ୍ୟକ୍ତି ଛିନ୍ନମୂଳ ହୋଇଯିବା ଅବଶ୍ୟମ୍ଭାବୀ। ଛିନ୍ନମୂଳ ବ୍ୟକ୍ତିର ଭିତ୍ତି ନାହିଁ କି ସ୍ଥିତି ନାହିଁ, ପ୍ରଗତି ଦିବାସ୍ୱପ୍ନ ମାତ୍ର। କୁସଂସ୍କାର କଥା ଏଠି ପଡିନାହିଁ, ସଂସ୍କାରକୁ ସମ୍ମାନ ଦେଇଥିଲେ ଆତ୍ମସମ୍ମାନ ଆସେ। ଆତ୍ମ ସମ୍ମାନ ହିଁ ସ୍ୱାଭିମାନର ମୂଳକଥା। ସ୍ୱାଭିମାନ ଏବଂ ଅହଂକାର ଏକ କଥା ନୁହେଁ, ଉଭୟ ଭିତରେ ଅନେକ ଅନେକ ଦୂରତା ରହିଛି। ଅବଶ୍ୟ ସଂସ୍କୃତି ଚେତନାର ଅର୍ଥ ନୁହେଁ କେବଳ ନିଜ ସଂସ୍କୃତି ଉପରେ ଗୁରୁତ୍ୱ ଦେଇ ଅନ୍ୟ ସଂସ୍କୃତିକୁ ହୀନ, ନଗଣ୍ୟ ବୋଲି ବିଚାରିବା। ପ୍ରକୃତରେ ସଂସ୍କୃତି ସଚେତନତାର ଅର୍ଥ ହେଉଛି ନିଜ ସଂସ୍କୃତି ଉପରେ ଆସ୍ଥାରଖି ଅନ୍ୟ



Digitized by PPRACHIN, SOA

ସଂସ୍କୃତି ପ୍ରତି ଉଦାରତା ପୋଷଣ କରିବା। ଆବଶ୍ୟକ ହେଲେ ଅନ୍ୟ ସଂସ୍କୃତିରୁ ଭଲ କଥା ଆଣି ନିଜକୁ ଓ ନିଜ ପରିବେଶକୁ ସମୃଦ୍ଧ କରିବା। ନିଜ ମାତୃଭାଷାକୁ ଆଦର କରିବା ଏହି ସଂସ୍କୃତି ପ୍ରାଣତାର ଚିହ୍ନ। ମାତୃଭାଷା ପ୍ରତି ଶ୍ରଦ୍ଧା ହିଁ ଜ୍ଞାନର ଚିହ୍ନ। ନିଜକୁ ବୁଝିବା ଓ ବୁଝାଇବା ପାଇଁ ମାତୃଭାଷା ଠାରୁ ଅଧିକ ବଳିଷ୍ଠ ମାଧ୍ୟମ ଆଉ ନାହିଁ। ମାତୃଭାଷାକୁ ଆଦର କଲେ ମାତୃଭୂମି ପ୍ରତି ଆଦର ସ୍ୱତଃ ଆସେ ଏବଂ ମାତୃଭୂମି ପ୍ରତି ଯଥାର୍ଥ ଆଦର ଆସିଲେ ସମଗ୍ର ବିଶ୍ୱ ପ୍ରତି ଆନ୍ତରିକତା ଆସେ। ମାତୃଭୂମି ଓ ସମଗ୍ର ବିଶ୍ୱ, ପୁଣି ମାତୃଭାଷା ଓ ସମଗ୍ର ବିଶ୍ୱର ଭିନ୍ନ ଭିନ୍ନ ଭାଷା କିଏ ବଡ଼ କିଏ ସାନ ଭଳି ନଦିଶି ସେତେବେଳେ ସମାନ ସ୍ତରରେ ଥିଲା ପରି ଦିଶନ୍ତି। ତାହା ହିଁ ବିଶ୍ୱ ଗ୍ରାମ ଗଠନର ପ୍ରଥମ ସର୍ତ୍ତ ଓ ବିଶ୍ୱ ନାଗରିକତ୍ୱର ପ୍ରଥମ ପରିଚୟ।

ଏକପାଦ ପଛକୁ ଆସି ପୁଣି ଚିନ୍ତା ଓ କର୍ମରେ ଆଗକୁ ଗତି କରିବା ହେଉଛି ବଞ୍ଚିବାର କଳାର ଅନ୍ୟ ଏକ ବ୍ୟାପ୍ତି ଓ ଦୀପ୍ତି। ଏହାର ଅର୍ଥ ଆମେ ପ୍ରଥମଥର ଚିନ୍ତାରେ କୌଣସି କର୍ମାନୁଷ୍ଠାନ ନକରିବା। ଦ୍ୱିତୀୟଥର ଚିନ୍ତା କରି ଯେ କୌଣସି କର୍ମାନୁଷ୍ଠାନ ଗ୍ରହଣ କରିବା। ଏହା କଥା କହିବା ଦିଗରେ ମଧ୍ୟ ପ୍ରଯୁଜ୍ୟ। ହଠାତ୍ ଭାବନା ଆସିଲା ମାତ୍ରେ କଥାରେ ତାହା ପ୍ରକାଶ ନକରି ଭାବନାରୁ ଟିକିଏ ଘୁଞ୍ଚିଯାଇ ଅର୍ଥାତ୍ ଆଉଥରେ ଭାବିବା ପରେ କଥା କହିବା ଆବଶ୍ୟକ। ଏହାଦ୍ୱାରା ଅନେକ ଅସୁବିଧା ଓ ବିପଦରୁ ରକ୍ଷା ମିଳିଥାଏ। କ୍ରୋଧ ସମୟରେ ଏକଥାକୁ ଶତପ୍ରତିଶତ ପ୍ରୟୋଗ କରିବା ଉଚିତ୍। ଯେତେବେଳେ କ୍ରୋଧ ମଣିଷକୁ ଆୟତ୍ତ କରେ ସେତେବେଳେ ହିତାହିତ ଜ୍ଞାନ ରହେ ନାହିଁ, ନକହିବା କଥା ଜଣେ କହିଚାଲେ, ନକରିବା କାର୍ଯ୍ୟ ବିନା ଦ୍ୱିଧାରେ କରିଯାଏ। ଫଳତଃ ସମସ୍ୟାର ସମାଧାନ ତ ଦୂରର କଥା, ବରଂ ସମସ୍ୟା ଉପରେ ସମସ୍ୟା ମାଡ଼ିଆସେ ଯାହାକୁ ଆଉ ସମାଧାନ କରିବା ସହଜ ହୁଏନାହିଁ।

ବାତାବରଣରେ ଆଜିକାଲି ହତାଶାର ପ୍ରଭାବ ଅଧିକ ଅନୁଭବ କରିହେଉଛି। କୃଷକ ମନରେ ହତାଶା, ଛାତ୍ର ମନରେ ହତାଶା, ଶିଳ୍ପୀ ମନରେ ହତାଶା, ସର୍ବୋପରି ଯିଏ ଯେଉଁଠି ଯେପରି ଅଛି ତା'ମନରେ ହତାଶା ବେଳେ ବେଳେ ପ୍ରବଳ ଭାବରେ ଘେରିଆସୁଛି। ଏହି ହତାଶାର ପ୍ରଭାବରେ ମଣିଷ ନିଜକୁ ଧ୍ୱଂସ କରି ଦେବାକୁ ମଧ୍ୟ ପଶ୍ଚାତପଦ୍ ହେଉନାହିଁ। ହତାଶା ଏକ ବ୍ୟାଧି ରୂପେ ଦିନକୁ ଦିନ ଗ୍ରାସ କଲାଣି କହିଲେ ଅତ୍ୟୁକ୍ତି ହେବନାହିଁ। ଏହି ବ୍ୟାଧିର ମହୋଷଧି ହେଉଛି ଆଶା। ହତାଶା ରୂପକ ଅନ୍ଧାରକୁ କେବଳ ଆଶାର ଆଲୋକ ଦ୍ୱାରା ଦୂର କରିହେବ। ଆଶା ଆସିଲେ ଆଗ୍ରହ ଆସେ ଓ ଆଗ୍ରହ ଆସିଲେ ଉପାୟ ଦିଶେ- କଥାଟି ଅକ୍ଷରେ ଅକ୍ଷରେ ସତ୍ୟ। ଆଶାକୁ ଆବାହନ



Digitized by PPRACHIN, SOA

କଲେ ଆଶାର ଆଗମନ ମନରେ ଘଟେ ଏବଂ ଜୀବନର ଶୈଳୀ ଓ ଗତି ପରିବର୍ତ୍ତିତ ହୁଏ। ଆଶାବାଦର ସୂର୍ଯ୍ୟୋଦୟରେ ହତାଶା ଜର୍ଜରିତ ଅମାବାସ୍ୟାର ରାତି ପାହିଯାଏ। ହତାଶ ବ୍ୟକ୍ତିର ନବଜନ୍ମ ହୁଏ, ସାର୍ଥକ ନବଜୀବନର ସେ ହୁଏ ଅଧିକାରୀ।

ସର୍ବୋପରି ଭଲ ଭଲ କଥା ଶିଖିବା ଓ ପ୍ରୟୋଗ କରିବାର କଳା ହିଁ ବଞ୍ଚିବାର କଳା। ଏହି କଳାର ପ୍ରଭାବ ଯେତେ ବଢ଼ିବ, ଜୀବନ ସେତେ ସରସସୁନ୍ଦର ହେବ। ସରସ ସୁନ୍ଦର ଜୀବନର ପ୍ରାଣ ପ୍ରତିଷ୍ଠାରେ ପୃଥିବୀ ହେବ ମଧୁମୟ ଓ ଆନନ୍ଦମୟ।





Digitized by PPRACHIN, SOA

# ଆମ ସଂସ୍କାର- ଆମ ପରିବାର

ଅମୁକ ବାବୁ ବହୁତ ପାଠ ପଢ଼ିଛନ୍ତି, ବଡ଼ ଚାକିରି କରିଛନ୍ତି, ବଡ଼ଘର କରିଛନ୍ତି। ତାଙ୍କର ଦାମିକା ଗାଡ଼ି ଅଛି, ପୁଅ ଭଲ ଚାକିରି କରିଛି, ଝିଅଟି ଭଲ ଜାଗାରେ ବାହା ହୋଇଛି। ତାଙ୍କର ସବୁକଥା ଅଛି, ମାତ୍ର ଗୋଟିଏ କଥା ନାହିଁ। ସେଇ କଥାଟି ହେଉଛି ସଂସ୍କାର। ଏହା ଶୁଣିଲା ମାତ୍ରେ ଆମ ମନରେ ପ୍ରଶ୍ନ ଆସିବ ଯେ ସଂସ୍କାର କ'ଣ? ସେ କି ପ୍ରକାର ଜିନିଷ? ଉତ୍ତରରେ କୁହାଯାଇପାରିବ ଯେ ସଂସ୍କାର ହେଉଛି ଏକ ଉଚ୍ଚ ମାନସିକତା, ସକାରାତ୍ମକ ଅନୁଚିନ୍ତା। ସଂସ୍କାରର ସରଳ ଅର୍ଥ ହେଉଛି, ଶୃଙ୍ଖଳିତ ମନୋଭାବ, ବ୍ୟବହାରରେ ସ୍ଥାନ, କାଳ ଓ ପାତ୍ରର ବିଚାରବୋଧ, ସଂସ୍କୃତି ପ୍ରତି ଆନ୍ତରିକତା ସର୍ବୋପରି ମଣିଷ ପଣିଆ ପ୍ରତି ଅନୁରକ୍ତି।

ସଂସ୍କାର କୌଣସି ଶିକ୍ଷାଗତ ଡିଗ୍ରୀର ପାଠ୍ୟ ଖସଡ଼ା ମାଧ୍ୟମରେ ବିଶେଷ ଭାବରେ ତିଆରି କରାଯାଇପାରେ ନାହିଁ। ବିଶେଷଭାବରେ ତିଆରି କରାଯାଇପାରେ ପାରିବାରିକ ଶିକ୍ଷା ମାଧ୍ୟମରେ। ପିଲାଟିଏ ବିଶେଷକରି ପରିବାରରୁ ରୁଚି, ବ୍ୟବହାର, ଚିନ୍ତା ଓ ଚେତନା, ଦୃଷ୍ଟିଭଙ୍ଗୀ ପ୍ରଭୃତି ଶିଖିଥାଏ। ବିଶେଷତଃ ପରିବାରରେ ମାଆ ଯଦି ସଚେତନ ହୋଇଥାନ୍ତି, ଉନ୍ନତ ମାର୍ଜିତ ଶିକ୍ଷା ସଂପନ୍ନ, ଉଦାର ଓ ଦୂରଦୃଷ୍ଟି ସଂପନ୍ନ ହୋଇଥାନ୍ତି ତେବେ ପିଲାଟିଏ ତହିଁରୁ ବହୁ ଭଲ କଥା ସହଜରେ ଶିଖିପାରେ। ତେଣୁ ତ କୁହାଯାଏ ଯେ ମାଆଟିଏ ଶିକ୍ଷିତ ହେବା ଅର୍ଥ ପରିବାରଟିଏ ଶିକ୍ଷିତ ହେବା। ପରିବାରରୁ ପିଲାଟିଏ ଶିଖିଥାଏ କର୍ତ୍ତବ୍ୟ ପରାୟଣତା, ସମୟାନୁବର୍ତ୍ତିତା, ସମ୍ବେଦନଶୀଳତା, ନିୟମାନୁବର୍ତ୍ତିତା, ସହନଶୀଳତା, ଅଧ୍ୟବସାୟ, ଦେଶପ୍ରାଣତା ଏବଂ ବିପଦକୁ ସମ୍ମୁଖୀନ ହେବାର ଦୃଢ଼ତା ପରି ବହୁ ମୂଲ୍ୟବାନ କଥା। ପିଲାଟି ପାଇଁ ପରିବାର ହେଉଛି ପ୍ରଥମ ଶିକ୍ଷାୟତନ। ପିଲାବେଳେ ମାଆଙ୍କ ତୁଣ୍ଡର କଥା, କିଶୋର ବୟସରେ ମା'ଙ୍କର ଉପଦେଶ କେଇପଦ ପିଲାଟିର ଜୀବନ ଗଢ଼ି ଦେଇପାରେ, ଶିଳାଲେଖ ହୋଇ ହୃଦୟରେ ରହିଯାଇପାରେ। ଆମ ଆଗରେ ଏ କଥାର ବହୁ ଦୃଷ୍ଟାନ୍ତ ଅଛି।

ଏଇ ଯେମିତି ଜିଜାବାଈଙ୍କର ଦିଗ୍‌ଦର୍ଶନ ଶିବାଜୀଙ୍କୁ ଏତେ ବିରାଟ ବ୍ୟକ୍ତିତ୍ୱରେ ପରିଣତ କରିଦେଲା। ପୁତୁଳିବାଈଙ୍କର ସତ୍ୟ ସମ୍ବନ୍ଧରେ କେତେପଦ ଉପଦେଶ ମୋହନ ଦାସ କରମଚାନ୍ଦ ଗାନ୍ଧିଙ୍କୁ ସତ୍ୟର ପୂଜାରୀ ସଜେଇ ମହାତ୍ମା ଗାନ୍ଧିରେ ରୂପାନ୍ତରିତ କରିଦେଲା। ଏଇ ଯେମିତି ପାର୍ବତୀ ଦେଈଙ୍କ କଥା ପଦକ 'ଆଲୋ ସଖି, ଆପଣା ମହତ ଆପେ ରଖି' ମଧୁସୂଦନ ଦାସଙ୍କୁ ଉତ୍କଳ ଗୌରବରେ ରୂପାନ୍ତରିତ କରିଦେଲା।



Digitized by PPRACHIN, SOA

ଅତଏବ ପିଲାଟି ପାଇଁ ମାଆ ହେଉଛନ୍ତି ପ୍ରଥମ ଶିକ୍ଷୟିତ୍ରୀ। ପିଲାଟି ପାଇଁ ତାଙ୍କୁ ଅଧିକ ପଢ଼ିବାକୁ ପଡିବ, ଜୀବନ ଓ ଜଗତକୁ ଅଧିକ ବୁଝିବାକୁ ପଡିବ। ନିଜେ ନବୁଝିଲେ ଅନ୍ୟକୁ ବୁଝାଇ ହେବନାହିଁ କି ନିଜେ ନଜାଣିଲେ ଅନ୍ୟକୁ ଜଣାଇହେବ ନାହିଁ। କୁହାଯାଏ ଯେ ଫରାସୀ ଜାତି ଏତେ ଉନ୍ନତ ଓ ମାର୍ଜିତ ହୋଇପାରିଥିଲା, କେବଳ ସେ ଦେଶର ମାଆମାନଙ୍କର ଅବଦାନ ପାଇଁ। ଯଥାର୍ଥରେ କୁହାଯାଏ "ଜନନୀ ସମାନ ବନ୍ଧୁ ନାହିଁ ନିଜ ଘରେ।" ଏଥିରୁ ଆମେ ବୁଝିପାରିବା ଯେ ଖାଇବାକୁ ବାଢ଼ିଦେଲେ ଓ ଜଳଖିଆ ସଜାଡ଼ି ଦେଲେ ତାହା ଯଥେଷ୍ଟ ନୁହେଁ।

ପରିବାର ହେଉଛି ଯଥାର୍ଥ ପ୍ରଶିକ୍ଷଣ କେନ୍ଦ୍ର। ସେଇଠାରେ ପରସ୍ପର ପ୍ରତି ସ୍ନେହ, ସଦିଚ୍ଛା, ଶ୍ରଦ୍ଧା, ତ୍ୟାଗ, ସମଭାବ ଇତ୍ୟାଦି ଇତ୍ୟାଦି ବହୁ ଭଗବତ ସଦ୍‌ଗୁଣ ଶିଖିବାକୁ ହୋଇଥାଏ। କଥା କହିବାର କଳା, ବାଟ ଚାଲିବାର କଳା ସବୁକଥା ଶିଖିବାକୁ ହୁଏ ଏଇ ପରିବାରରୁ। ପରସ୍ପର ଭିତରେ ସ୍ନେହ ଥିଲେ ପରିବାର ବୈକୁଣ୍ଠ ପରି ହୋଇଥାଏ। ପିଲାଟିର ସର୍ବାଙ୍ଗୀନ ବିକାଶର ମୂଳଦୁଆ ପଡ଼ିଥାଏ ପରିବାରରେ। ବ୍ୟକ୍ତିଗତ ଜୀବନ, ସାମାଜିକ ଜୀବନ, ରାଷ୍ଟ୍ରୀୟ ଜୀବନର ପ୍ରକାଶ ଘଟିଥାଏ ଏଇ ପରିବାରରୁ। ତେଣୁ ତ କୁହାଯାଏ "ଚାଟଘର ପିଲା ଚାଟ", ଆମେ ଯେତେ ଯାହା କହିଲେ ମଧ ଦେଶର ବିକାଶ ପାଇଁ ପରିବାରର ଅବଦାନ ଯେ ସର୍ବାପେକ୍ଷା ଅଧିକ, ଏହା ସର୍ବବାଦୀ ସମ୍ମତ।

ପରିବାରଟିଏ ବୋଲି ତାହା ଅବହେଳାର କଥା ନୁହେଁ, ଗୋଟିଏ ଯଥାଯଥ ଶିକ୍ଷିତ ପରିବାର ହେଉଛି ଗୋଟିଏ ଦୀପଶିଖା ସଦୃଶ, ଯେଉଁ ଶିଖାରୁ ଅନେକ ଦୀପ ପ୍ରଜ୍ୱଳିତ ହୋଇପାରେ। ପାରିବାରିକ ଶିକ୍ଷା ଦୃଢ଼ ରହିଲେ କି ପୁଅ କି ଝିଅ ସମସ୍ତଙ୍କ ପାଇଁ ତାହା ସୂକ୍ଷ୍ମ ଅଙ୍କୁଶ ପରି କାମ କରେ। ଅବାଟରେ ଯିବା ପୂର୍ବରୁ ତାହା ପଛରୁ ଟାଣି ଧରେ। ସଙ୍ଗଦୋଷରେ ଅବାଟରେ ପାଦ ଦେଉ ନଦେଉଣୁ ତାହା ପଛରୁ ଭିଡ଼ି ଧରେ ଓ ବାଟରେ ପୁଣି ଚଲାଇନିଏ। ପାରିବାରିକ ଶିକ୍ଷା ଯେତେ ମାର୍ଜିତ ଓ ଋଦ୍ଧିମନ୍ତ ହେବ ସମାଜରେ ଅପରାଧ ପ୍ରବଣତା ସେତେ ହ୍ରାସ ପାଇବ, ଏଥିରେ ସନ୍ଦେହ ନାହିଁ। ଆଇନ୍‌କାନୁନ୍ ରହିବା ଦରକାର, ଏକାନ୍ତ ଦରକାର, ତେବେ ଆଇନ୍‌କାନୁନ୍ ଦ୍ୱାରା ଯେତେ ଉପକାର ହୁଏ, ପାରିବାରିକ ଶିକ୍ଷା ଦ୍ୱାରା ତହିଁରୁ ଅଧିକ ଉପକାର ହୁଏ। ଔଷଧ ଠାରୁ ପ୍ରତିଷେଧକର ମହତ୍ତ୍ୱ ଅଧିକ। କହିବାର ଅର୍ଥ ହେଉଛି ଆଇନ୍ କାନୁନ୍ ରହୁ, ମାତ୍ର ଏହା ସହିତ ପାରିବାରିକ ଶିକ୍ଷା ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯାଉ।

ବାସ୍ତବରେ ପରିବାରର ମାର୍ଗଦର୍ଶନରେ ଯୁବପିଢ଼ି ଯଥାର୍ଥ ଭାବରେ ଗଢ଼ି ଉଠିଲେ କେବଳ ଆମ ଦେଶ ନୁହେଁ ପ୍ରତ୍ୟେକ ଦେଶ ଯାଥଯଥ ଭାବେ ଗଢ଼ି ଉଠିବ। ବିଶାଳ ବିଶ୍ୱ ହେବ ଚିରମଳୟର ବିଶ୍ୱ, ଯୁଦ୍ଧ ନୁହେଁ ଶାନ୍ତି ଓ ସନ୍ତୋଷର ପୁଣ୍ୟପବିତ୍ର ତୀର୍ଥ। ପରିବାରରୁ ଆରମ୍ଭ ହେବ ବିଶ୍ୱ ପରିବାର ଗଠନର ପ୍ରଥମ ପ୍ରକ୍ରିୟା।





Digitized by PPRACHIN, SOA

# ଆଜିର ଜୀବନଧାରା

କୋଟି କୋଟି ଲୋକଙ୍କର ଜୀବନର ଲକ୍ଷ୍ୟ ଉପଭୋଗ। ଜୀବନ ଆସିଛି ଉପଭୋଗ ପାଇଁ ବୋଲି ସେମାନେ ଧରି ନେଇଥାନ୍ତି ଓ ତଦନୁସାରୀ ସବୁ କିଛିର ବ୍ୟବସ୍ଥା କରିଥାନ୍ତି। ବୁଦ୍ଧି ପ୍ରୟୋଗ କରିଥାନ୍ତି ନାନା ପ୍ରକାରେ। ଉପଭୋଗ ମୂଳରେ ଟଙ୍କା ରହିଛି ବୋଲି ସେମାନେ ଟଙ୍କା ସଂଗ୍ରହ କରିବାରେ ଲାଗିଥାନ୍ତି। ସତ ଉପାୟଠାରୁ ଅସତ ଉପାୟରେ ଟଙ୍କା ପଇସାର ପରିମାଣ ଅଧିକ ହେବାର ଜ୍ଞାନ ଦେଖି ଶୁଣି ହାସଲ କରିଥାନ୍ତି ଏବଂ ଅସତ ଉପାୟ ଅବଲମ୍ବନ କରି ଟଙ୍କା ପଇସାର ପରିମାଣ ବଢ଼ାଇବାକୁ ଦିନରାତି ଲାଗିଥାନ୍ତି। ଅନ୍ୟକୁ ବିଭିନ୍ନ ବାଗରେ ଠକିଦେବା, କଳାବଜାର କରିଦେବା ପାଇଁ ଆଗ୍ରହୀ ହୋଇଥାନ୍ତି। ବିବେକ ପଚାରିଲେ ତାକୁ ବୁଝାଇ ଦିଅନ୍ତି ଯେ ପେଟପୋଷ ନାହିଁ ଦୋଷ। ମାତ୍ର ସେମାନେ ପେଟ ପୋଷିବାକୁ ଏହା କରନ୍ତି ନାହିଁ, ଟଙ୍କା ପଇସାର ପରିମାଣ ବଢ଼ାଇ ଜୀବନକୁ ଅଧିକ ଭୋଗ କରିବାକୁ ଏପରି କରିଥାନ୍ତି। ଏପରି ଧନକୁ ଆମେ କଳାଧନ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ।

ଆଉ କିଛି ଲୋକ ଧନ ସଂପଦ, ଯଶ, ପ୍ରଶଂସା ଓ କ୍ଷମତାକୁ ତୁଚ୍ଛ କରି ଦେଇ ଆତ୍ମସନ୍ଧାନରେ ଚାଲିଯାଆନ୍ତି, ଆତ୍ମସନ୍ଧାନ ପାଇଁ ଗୁମ୍ଫା, ଜଙ୍ଗଲକୁ ସେମାନେ ଯାଆନ୍ତି, ଯୋଗ ସାଧନା କରନ୍ତି, ମୁକ୍ତି କାମନା କରିଥାନ୍ତି। 'ପୁନରପି ଜନମଂ ପୁନରପି ମରଣମ୍'ର କାମନା କରିନଥାନ୍ତି।

ଭୋଗୀମାନଙ୍କ ଦ୍ୱାରା ବିଶାଳ ଜନ ସମାଜର ବିଶେଷ କିଛି ଲାଭ ହୁଏ ନାହିଁ। ବହୁ ବସ୍ତୁର ବ୍ୟବହାର ଫଳରେ କିଛି କିଛି କଳକାରଖାନା ଚାଲେ, କାରଖାନାର ମାଲିକ ଅଧିକାରୁ ଅଧିକ ଧନୀ ହେଉଥାନ୍ତି। ମାତ୍ର ବହୁଲୋକଙ୍କୁ ଗରିବ ହୋଇ ରହିବାକୁ ବାଧ କରାଯାଏ। ମୁକ୍ତିକାମୀ ନିର୍ଜନ ନିବାସୀ ଯୋଗୀମାନଙ୍କ ଦ୍ୱାରା ମଧ୍ୟ ବିଶାଳ ଜନସମୂହର ବିଶେଷ କିଛି ଲାଭ ହୁଏନାହିଁ। ସେମାନେ କେବଳ ବ୍ୟକ୍ତିଗତ ମୁକ୍ତି ପାଇଁ ପ୍ରଯତ୍ନ କରୁଥାନ୍ତି, କିଛି ସଦିଚ୍ଛା, ଶୁଭେଚ୍ଛା ଜନସମାଜ ପାଇଁ ସେମାନେ ପୋଷଣ କରିଥାନ୍ତି ମାତ୍ର ଜନସମାଜର ସର୍ବାଙ୍ଗୀନ ବିକାଶ ନିମନ୍ତେ ତାହା ପର୍ଯ୍ୟାପ୍ତ ହୁଏ ନାହିଁ। ଜନସମାଜ ଯେଉଁ ଟିମିରେକୁ ସେଇ ଟିମିରେ ରହିଥାନ୍ତି।

ପ୍ରଥମ ପ୍ରକାରର ବ୍ୟକ୍ତିମାନଙ୍କର ପ୍ରବଳ ଅହଂକାର ଥାଏ କାରଣ ସେମାନେ ବହୁ ମୂଲ୍ୟବାନ ବସ୍ତୁର ଅଧିକାରୀ ବୋଲି। ବହୁ ଧନ, ବହୁ କ୍ଷମତା, ବାହୁବଳ, କୂଟବୁଦ୍ଧି, ଓ



Digitized by PPRACHIN, SOA

ଅନ୍ୟକୁ ନ୍ୟୂନ କରି ଦେଖିବାର ମାନସିକତା ଥିବାରୁ ସେମାନେ ନିଜକୁ ବହୁତ ବଡ଼ ମନେ କରିଥାନ୍ତି । ଅହଂକାରରେ ଗଁ ଗଁ ହେଉଥାନ୍ତି, ମୁହଁକୁ ସର୍ବଦା କୋଥଲ କରି ରଖିଥାନ୍ତି, ଭଲ କଥାଟିଏ କହିଲେ ଭୁଲ ବୁଝିଥାନ୍ତି । ଅର୍ଥକୁ କଦର୍ଥ କରିଥାନ୍ତି । ନିଜ ପ୍ରଶଂସା, ଯଶ କେବଳ ଗୋଟାନ୍ତି ନାହିଁ, ଦାବି କରନ୍ତି ଓ କଳେବଳେ କଉଶଳେ ଆଦାୟ କରିଥାନ୍ତି । ଅନ୍ୟକୁ କମ୍ ଶୁଣନ୍ତି ବା ଆଦୌ ଶୁଣନ୍ତି ନାହିଁ କେବଳ ଆତ୍ମପ୍ରଶଂସା କରୁଥାନ୍ତି । ବସ୍ତୁ ଗୁଡ଼ିଏ ଏକାଠି କରି ବସ୍ତୁବାଦର ସିଂହାସନରେ ବସି ନିଜକୁ ସମ୍ରାଟ ବୋଲି ଘୋଷଣା କରୁଥାନ୍ତି । ଉପଭୋଗକୁ ମାନଦଣ୍ଡ କରି କାହା ଜୀବନ କେତେ ସାର୍ଥକ ବା ଅସାର୍ଥକ ମାପୁଥାନ୍ତି । ମାପିମାପି ଦିନକାଳ ଚାଲିଯାଏ, ନିଜକୁ ବୁଝିବା ଅବସ୍ଥାକୁ ସେମାନେ ଆସିପାରନ୍ତି ନାହିଁ । ନିଜକୁ, ଜଗତକୁ ଓ ଅନ୍ୟମାନଙ୍କୁ ଉଚିତ୍ ମାନଦଣ୍ଡରେ ମାପିବାର ମାନସିକତା ସେମାନଙ୍କର ନଥାଏ । ଅନ୍ୟମାନେ ମପା ହେବାର ସାମର୍ଥ୍ୟ ଅର୍ଜନ କରିନାହାନ୍ତି ବୋଲି ସେମାନେ ଧରି ନେଇଥାନ୍ତି । ନିଜକୁ ବଡ଼ ଓ ଅନ୍ୟକୁ ସାନ କରି ଦେଖୁ ଦେଖୁ ତାଙ୍କର ବେଳକାଳ ସରିଯାଏ । ଆଉ କେହି ବଡ଼ କରୁ ବା ନକରୁ ନିଜକୁ ନିଜେ ବଡ଼ ବୋଲି ଘୋଷଣା କରି କରି ତାଙ୍କର ସମୟ ସରିଯାଏ । ଏପରି କୁହାଯାଇପାରେ ଯେ ସେମାନେ ହେଉଛନ୍ତି ଆତ୍ମଘୋଷିତ ବିଶିଷ୍ଟ ବ୍ୟକ୍ତି ।

ଦ୍ୱିତୀୟ ପ୍ରକାରର ବ୍ୟକ୍ତିମାନଙ୍କର ଅର୍ଥାତ୍ ତଥାକଥିତ ଯୋଗୀମାନଙ୍କର ମଧ୍ୟ ଏକ ପ୍ରକାର ଅହଂକାର ଥାଏ । ସେମାନେ ଘୋଷଣା କରନ୍ତୁ କି ନକରନ୍ତୁ ନିଜକୁ ଅନ୍ୟମାନଙ୍କଠାରୁ ବଡ଼ ମନେ କରୁଥାନ୍ତି । ସଂସାରୀ ଲୋକଠାରୁ ନିଜକୁ ଅଧିକ ମହାନ୍ ବୋଲି ବିଚାର କରିଥାନ୍ତି । ସଂସାରୀ ଲୋକ ଯେ ଖାଦ୍ୟ ଲୋଭରେ ଜାଲରେ ପଡ଼ିଛି, ଏକଥା ସେମାନେ ଭାବି ନିଜକୁ ବାଃ... ବାଃ... ଦେଇଥାନ୍ତି । ସଂସାର ଜଞ୍ଜାଳରେ ପଶିନାହାନ୍ତି ବୋଲି ନିଜକୁ ମହାନ ବୋଲି ବିଚାରିଥାନ୍ତି । ସଂସାରୀ ବ୍ୟକ୍ତିର ଦୁଃଖକଷ୍ଟ ଶୁଣି ଓ ଭାବି ଦୁଃଖ କରନ୍ତି, ସମବେଦନା ଜଣାନ୍ତି ମାତ୍ର ତାଙ୍କ ସହ ଏକାତ୍ମ ହୋଇପାରନ୍ତି ନାହିଁ । ଅଧିକ ଉଚ୍ଚତାରେ ରହିଛନ୍ତି ବୋଲି ଭାବିଥାନ୍ତି । ସଂସାରୀ ଲୋକମାନେ ଦୟାର ପାତ୍ର ଭାବରେ ତାଙ୍କ ଆଖିକୁ ଦେଖାଯାନ୍ତି ।

ଉପରୋକ୍ତ ଦୁଇପ୍ରକାରର ବ୍ୟକ୍ତିଙ୍କ ଅପେକ୍ଷା ଆଉ ଏକ ପ୍ରକାରର ବ୍ୟକ୍ତି ବିଶ୍ୱର ସାମଗ୍ରିକ ବିକାଶ ନିମନ୍ତେ ଆବଶ୍ୟକ । ଏଇ ତୃତୀୟ ପ୍ରକାରର ବ୍ୟକ୍ତି ବସ୍ତୁର ଅଧିକାରୀ ହୋଇଥିବେ ମାତ୍ର ବସ୍ତୁବାଦୀ ହୋଇନଥିବେ । ବିଶ୍ୱକଲ୍ୟାଣ ହୋଇଥିବ ତାଙ୍କର ଲକ୍ଷ୍ୟ । ବିଶ୍ୱକଲ୍ୟାଣ ନିମନ୍ତେ ବସ୍ତୁ ସେମାନଙ୍କୁ ସହାୟତା କରୁଥିବ । ବସ୍ତୁର ଶିଢ଼ିବାଟ ଦେଇ ସେମାନେ ବିଶ୍ୱ ବିକାଶର ଛାତକୁ ଯିବାର ଲକ୍ଷ୍ୟ ରଖିଥିବେ । ନିର୍ଜନ ନିବାସ ନୁହେଁ ଜନମାନଙ୍କ ଭିତରେ ବାସ କରୁଥିବେ । ସାଧୁତା, ଉଦାରତା, ରୁଚିସଂପନ୍ନତା, ଶ୍ରଦ୍ଧାଶୀଳତା



Digitized by PPRACHIN, SOA

ସର୍ବୋପରି ଜୀବନ, ଜଗତ ପ୍ରତି ସଚେତନତା ସେମାନଙ୍କର ଭୂଷଣ ସ୍ୱରୂପ ନହୋଇ ମଜ୍ଜାଗତ ହୋଇଥିବ। ଅନ୍ୟଠାରୁ ଶ୍ରଦ୍ଧା ଦାବି ନକରି ଅନ୍ୟକୁ ଶ୍ରଦ୍ଧା କରୁଥିବେ। ନିଜର ସୁବିଧା କଥା ଚିନ୍ତା କରିବା ସହିତ ଅନ୍ୟର ସୁବିଧା କଥା ମଧ୍ୟ ଚିନ୍ତା କରୁଥିବେ। ନିଜେ ସ୍ୱାର୍ଥପର ବୋଲି ଚିହ୍ନା ପଡ଼ିଯାଉନଥିବେ, ଅନ୍ୟ ପାଖରେ କିଛି ଭଲ କଥା ଦେଖିଲେ ତାହାର ଅନୁମୋଦନ କରୁଥିବେ। ଧର୍ମ, ଜାତି, ଚଳଣିକୁ ଘର ଭିତରେ ରଖି ବାହାରକୁ ସମଗ୍ର ବିଶ୍ୱର ସମୁଦାୟ ଜନସମାଜର ଏକ ଏକକ ବୋଲି ବିଚାରୁଥିବେ। ଧନ ସଂପଦ ସେମାନଙ୍କର ଥିବ, ଯଶ, ପ୍ରଶଂସା, ପ୍ରତିଷ୍ଠା ସବୁକିଛି ଥିବ ମାତ୍ର ଏସବୁ ଜନିତ ଗର୍ବ ନଥିବ, ଅନ୍ୟକୁ ହୀନଦୃଷ୍ଟିରେ ଦେଖିବାର ମନୋଭାବ ନଥିବ। ଅନ୍ୟର କ୍ଷତି ଚିନ୍ତା ନଥିବ, ନଥିବ ମନରେ ଈର୍ଷା। ଅନ୍ୟର ଉପକାର କରିବାର ସୁବିଧା ସୁଯୋଗ ନଥିଲେ ହେଁ ଅପକାର କରିବାର ପ୍ରବୃତ୍ତି ନଥିବ। କାୟ ମନୋବାକ୍ୟରେ ଅନ୍ୟକୁ କଷ୍ଟ ଦେବାର ମନୋବୃତ୍ତି ନଥିବ।

ସେମାନେ ନିଜକୁ ଚିହ୍ନୁଥିବେ ଓ ଅନ୍ୟମାନଙ୍କୁ ମଧ୍ୟ ଗୁରୁତ୍ୱ ଦେଉଥିବେ। 'ତୃଣାଦପି ସୁନୀଚେନ' ନହେଲେ ନାହିଁ ନିଜକୁ ସବୁଠାରୁ ବିରାଟ ବୃକ୍ଷ ବୋଲି ଭାବୁନଥିବେ। ନିଜେ ଯାହା ନିଜକୁ ସେଇଆ ବୋଲି ଭାବୁଥିବେ। ନିଜକୁ ଅନ୍ୟ ମାପରେ ମାପୁନଥିବେ କି ଅନ୍ୟକୁ ନିଜ ମାପରେ ମାପୁନଥିବେ। ନିଜକୁ ନିଜ ମାପରେ ଓ ଅନ୍ୟକୁ ଅନ୍ୟ ମାପରେ ମାପୁଥିବେ। ଅନ୍ୟକୁ ନିଜ ଛାଞ୍ଚରେ ପକାଇବାକୁ ଚାହୁଁନଥିବେ ଅଥବା ଅନ୍ୟ ଛାଞ୍ଚରେ ନିଜେ ପଡ଼ିବାକୁ ଚାହୁଁନଥିବେ। ବାହାର ଭିନ୍ନତା ଥିବ ମାତ୍ର ଭିତରେ ଏକାତ୍ମତା ଥିବ। ସବୁପାଠର ମର୍ଯ୍ୟାଦା ଥିବ, ସବୁ ବାଟର ମର୍ଯ୍ୟାଦା ଥିବ, ସବୁ ଘଟର ମର୍ଯ୍ୟାଦା ଥିବ। ତେବେ ବାତାବରଣରେ ବାରୁଦ ଗନ୍ଧ ନଆସି ଫୁଲ ସୁବାସ ଆସିବ। ରକ୍ତ ଟୋପା ଟୋପା ହୋଇ ଭୂମିରେ ଝରିବ ନାହିଁ ବରଂ ପରିବେଶରେ ଆନନ୍ଦର ରଙ୍ଗକମଳ ଫୁଟିବ। ବିଶ୍ୱ ଗ୍ରାମ ଗଠନର ସ୍ୱପ୍ନ ସାକାର ହେବ। ମାନବ ଏକତାର ପରିପୂର୍ଣ୍ଣ ପ୍ରତିଷ୍ଠା ସେଦିନ ସମ୍ଭବ ହେବ।





Digitized by PPRACHIN, SOA

# ଆମେ ଖୁସିରେ ରହିବା କିପରି ?

ଆମ ପୂର୍ବ ପୁରୁଷ ଯେତିକି ସୁବିଧାରେ ଥିଲେ, ଆମେ ତା'ଠାରୁ ଅଧିକ ସୁବିଧାରେ ଅଛୁ। ବିଜ୍ଞାନର ଅବଦାନ ଯୋଗୁଁ ସାରା ପୃଥିବୀ ଆମ ହାତ ମୁଠାକୁ ଗୋଟାଇ ହୋଇ ଆସିଛି। ସକାଳେ ପ୍ରାଚ୍ୟ ଭୂଖଣ୍ଡରେ ଥାଇ ଉପର ବେଳକୁ ପାଶ୍ଚାତ୍ୟ ଭୂଖଣ୍ଡରେ ପହଞ୍ଚି ପାରୁଛୁ। ପୃଥିବୀର ଗୋଟିଏ କଣର ଖବର ଅନ୍ୟ ଗୋଟିଏ କଣରେ ବିଜୁଳି ବେଗରେ ପହଞ୍ଚିପାରୁଛି। ଦୂରତମ ଦୂରତାରେ ଥିବା ଆତ୍ମୀୟ ସ୍ୱଜନଙ୍କୁ ନିଜ ଘର ଭିତରେ ବସି ଦେଖି ହେଉଛି ଓ ତାଙ୍କ ସହ କଥାବାର୍ତ୍ତା କରିହେଉଛି। ଏସବୁ ସତ୍ତ୍ୱେ ଆମେ ଯେତେ ଖୁସିରେ ରହିବା କଥା ରହିପାରୁନୁ। ଏହାର କେତେ କାରଣ ଅଛି, କାରଣଗୁଡିକ ବାହାର ଅପେକ୍ଷା ଆମ ଭିତରେ ଅଧିକ ରହିଛି।

ଭିତର କାରଣଗୁଡିକ ମଧ୍ୟରୁ ଗୋଟିଏ କାରଣ ହେଉଛି ଅସଂହତି। ଅସଂହତିର ସରଳ ଅର୍ଥ ହେଉଛି ମେଳ ନଖାଇବା। ଆମ ଭିତରେ ଥିବା ଚିନ୍ତାରାଜି ଭିତରେ ମେଳ ରହୁନାହିଁ, କଥା ଓ କାମ ଭିତରେ ମେଳ ରହୁନାହିଁ। ପୁଣି ଅନ୍ୟମାନଙ୍କ ଚିନ୍ତା ଓ ଚେତନା ସହ ଆମର ଚିନ୍ତା ଓ ଚେତନାର ମେଳ ରହୁନାହିଁ। ଏକଥା ବ୍ୟକ୍ତି କ୍ଷେତ୍ରରେ ଯେପରି ଘଟୁଛି ସଂସ୍କୃତି ସଂସ୍କୃତି ଭିତରେ, ଦେଶ ଦେଶ ଭିତରେ ମଧ୍ୟ ସେପରି ଘଟୁଛି। ବ୍ୟକ୍ତିଟିଏ ନିଜକୁ ଅନ୍ୟଠାରୁ ପ୍ରାୟତଃ ବଡ଼ ବୋଲି ଭାବୁଛି, ତେଣୁ ଅନ୍ୟକୁ ନିଜଠାରୁ ପ୍ରାୟତଃ ସାନ ବୋଲି ଭାବୁଛି। ନିଜକୁ ବଡ଼ ଭାବିବା ହେତୁ ଅନ୍ୟକୁ ସାନ ବୋଲି ଭାବିବାକୁ ଆମେ ବାଧ୍ୟ ହେଉଛୁ। ଫଳତଃ ପାରସ୍ପରିକ ଶ୍ରଦ୍ଧା ଓ ସମ୍ମାନ କମିଯାଉଛି ଏବଂ ତାହା ଅଶାନ୍ତିର ଅନ୍ୟ ଏକ କାରଣ ହୋଇ ଆମ ଭିତରେ ଠିଆ ହେଉଛି। ନିଜକୁ ନିଜ ମାପରେ ମାପିବା ଓ ଅନ୍ୟକୁ ଅନ୍ୟ ମାପରେ ମାପିବା ହିଁ ଏହି ସମସ୍ୟାର ସମାଧାନର ମୂଳକଥା ଏବଂ ଶାନ୍ତିରେ ରହିବାର ମନୋବୃତ୍ତିର ମୌଳିକତା। ଅନ୍ୟର କଥାକୁ ଶୁଣିବା ଏବଂ ଅନ୍ୟର ମତାମତକୁ ସମ୍ମାନ ଜଣାଇବା ଦ୍ୱାରା ଆମେ ଖୁସି ରହିପାରିବା।

ଆମେ ଖୁସି ରହିବାର ଅନ୍ୟ ଏକ ଉପାଦାନ ହେଉଛି ପାରସ୍ପରିକ ଅନୁମୋଦନ। ଅନ୍ୟର ଭଲଗୁଣ, ଭଲ କଥା ଓ ଭଲ କାର୍ଯ୍ୟକୁ ପ୍ରଶଂସା କେବଳ ନୁହେଁ ଅନ୍ତରର ସହିତ ଅନୁମୋଦନ କରିବା ଦ୍ୱାରା ମନ ପ୍ରଶସ୍ତ ହୁଏ, ଉଦାର ହୁଏ। ମନର ପ୍ରଶସ୍ତତା ଓ ଉଦାରତା ହିଁ ମାନସିକ ଶାନ୍ତିର ମାର୍ଗକୁ ପ୍ରଶସ୍ତ କରିଥାଏ।



Digitized by PPRACHIN, SOA

ଆଶାବାଦୀ ହେବା ଖୁସିରେ ରହିବାର ଅନ୍ୟ ଏକ ମାର୍ଗ। ଆଶାବାଦୀ ଭାବନାର ଏକ ଶକ୍ତି ରହିଛି ଯାହାକୁ ସାଧାରଣତଃ ଆଲୋକ ସହିତ ତୁଳନା କରାଯାଏ। ହତାଶାର ଏକ ଶକ୍ତି ରହିଛି ଯାହାକୁ ଅନ୍ଧକାର ସହିତ ତୁଳନା କରାଯାଏ। ହତାଶା ଆସିଲେ ମନ ଦୁର୍ବଳ ହୁଏ, ପ୍ରାଣର ଉତ୍ସାହ କମିଯାଏ ଶରୀରରେ ଆଳସ୍ୟ ଓ ଜଡ଼ତା ଭରିଯାଏ। ଆଗକୁ ଚାଲିବାର ପ୍ରେରଣା ହ୍ରାସ ପାଏ। ଏହି ପ୍ରସଂଗରେ ସ୍ମରଣକୁ ଆସେ ସ୍ୱାମୀ ବିବେକାନନ୍ଦଙ୍କ ଦିଗ୍‌ଦର୍ଶନ। ସେ କହିଛନ୍ତି, "କୁହ ଅସ୍ତି, ଅସ୍ତି, ନାସ୍ତି, ନାସ୍ତି କହି କହି ଦେଶଟା ଗଲା।" ମନେ ପଡେ ଶ୍ରୀମାଙ୍କ ବାର୍ତ୍ତା। ସେ କହିଛନ୍ତି, "ଆଶା କେବେ ବି ଛାଡ଼ିବ ନାହିଁ, ଆଶା ଗୋଟିଏ ଭଗବତ ସଦ୍‌ଗୁଣ। ଇଚ୍ଛା କରି ଆଶାବାଦୀ ହେବ।" ସମସ୍ତ ଆଶା ରଖିବା ସତ୍ତ୍ୱେ ଯଦି ବିଫଳତା ଆସେ, ତେବେ ତାକୁ ସଫଳତାର ପାହାଚ ବୋଲି ବୁଝିବାକୁ ହେବ ଓ ଗ୍ରହଣ କରିବାକୁ ହେବ। ବାରମ୍ବାର ବିଫଳ ହୋଇ ଆଶା ବଳରେ ଥମାସ୍ ଏଡିସନ୍ ଶେଷରେ ଗ୍ରାମ୍‌ଫୋନ୍ ଉଦ୍‌ଭାବନରେ ସଫଳ ହେଲେ। ବାରମ୍ବାର ବିଫଳ ହୋଇ ଗଭୀର ଆଶା ଓ ବିଶ୍ୱାସରେ ଜନ୍ ବୟେଡ୍ ଦୂରଦର୍ଶନର ଉଦ୍ଭାବନ କରିପାରିଲେ।

ଚିନ୍ତା ଓ ଚେତନାରେ ଅନ୍ୟର କଲ୍ୟାଣ କାମନା ଖୁସିରେ ରହିବାର ଅନ୍ୟତମ ମାର୍ଗ। ସମସ୍ତେ ସୁଖରେ ରହନ୍ତୁ- ଏଇ ଅନୁଚିନ୍ତାର ପବିତ୍ରତା ଓ ସାମର୍ଥ୍ୟ ଅନନ୍ୟ ଓ ଅସାଧାରଣ। ଏହା ଅନ୍ତରକୁ ନିର୍ମଳ ଓ ଶୁଦ୍ଧ ରଖେ, ପ୍ରାଣରେ ଉଦ୍ଦାମତା ଓ ମନରେ ଆନନ୍ଦ ଆଣେ। ଏହାର ପ୍ରଭାବରେ ବିଶ୍ୱ ପରିବାର ଗଠନର ମାର୍ଗ କୁସୁମିତ ହୁଏ। ନିଜକୁ ଯଥାର୍ଥରେ ସମ୍ଭାରି ରଖି ଅନ୍ୟକୁ ସହଯୋଗ କରିବାର ମନୋଭାବ ଆମପାଇଁ ଖୁସିରେ ରହିବାର ପଥ ପ୍ରସ୍ତୁତ କରିଥାଏ।

ହଠାତ୍ କିଛି କଥା ଓ କିଛି ନିଷ୍ପତ୍ତି ସହ କାର୍ଯ୍ୟ କରିବା ଅପେକ୍ଷା ଆଉଥରେ ଭାବିଚିନ୍ତି କଥା କହିବା ଓ କାର୍ଯ୍ୟ କରିବା ବହୁଗୁଣରେ ଗୁରୁତ୍ୱପୂର୍ଣ୍ଣ। ଏହା ଆମକୁ ବହୁ ଅସୁବିଧାରୁ ରକ୍ଷା କରେ। ଆଜିକାଲି ମନସ୍ତତ୍ତ୍ୱବିତ୍‌ମାନେ ଏହା ଉପରେ ଅଧିକ ଗୁରୁତ୍ୱ ଦେଉଛନ୍ତି।

ଅନ୍ୟର ସମାଲୋଚନାରେ ଉତ୍ପୀଡ଼ିତ ନହେବା ଖୁସିରେ ରହିବାର ଅନ୍ୟତମ ପନ୍ଥା। ଏ ସଂସାର ଏକ ବିଚିତ୍ର ଯାଦୁଘର। ଏଠାରେ ସମାଲୋଚନାମୂଳକ କଥା କହିବାକୁ ବହୁ ଲୋକ ଅଛନ୍ତି। ସେମାନଙ୍କ କଥା ଶୁଣିଲେ ଅଟକିଯିବାକୁ ହେବ ଚଲାପଥରେ, ଆଗକୁ ଯାଇ ହେବନାହିଁ। ଆଗକୁ ଯିବାକୁ ଆମେ ଆସିଛୁ, ବାଟରେ ଅଟକିଯିବାକୁ ଆମେ ଆସିନାହୁଁ। ଅନ୍ୟର କଥାକୁ ଶୁଣି ବୁଝି ଯଦି ସତରେ କିଛି ସଂଶୋଧନର ଆବଶ୍ୟକତା ଆମ ପ୍ରକୃତିରେ କରିବାର ଥାଏ, ତେବେ ଆମେ ତାହା କରିବା। ଆଉ ଯଦି ନଥାଏ, ତେବେ ଆଦୌ ବିଚଳିତ ହେବା ନାହିଁ, ମନର ବଳକୁ ହ୍ରାସ କରିବା ନହିଁ।



Digitized by PPRACHIN, SOA

ଖୁସି ରହିବାର ଅନ୍ୟତମ ବାଟ ହେଉଛି ଅନ୍ୟକୁ ଶ୍ରଦ୍ଧା କରିବା ଛଳନା, ଈର୍ଷା, ସ୍ୱାର୍ଥପରତା ପରିବର୍ତ୍ତେ ନିର୍ମଳ ଚିତ୍ତରେ ଅନ୍ୟକୁ ଆଦର କରିବାର ଆଗ୍ରହ ହିଁ ଆମକୁ ଖୁସି ରହିବାରେ ସାହାଯ୍ୟ କରିବ। ଆମେ ଅନ୍ୟକୁ ଯେତିକି ଶ୍ରଦ୍ଧା କରୁ ଅନ୍ୟଠାରୁ ତାହାଠାରୁ ଅଧିକ ଶ୍ରଦ୍ଧା ଆଶା କରୁଥିବାରୁ ଆମ ମନରେ ଦୁଃଖ ହୁଏ। ପ୍ରତିଦାନର ଆଶା ନରଖି ଅନ୍ୟକୁ ଶ୍ରଦ୍ଧା କରିପାରିଲେ ହିଁ ଆମେ ପ୍ରକୃତରେ ଖୁସିରେ ରହିପାରିବା।

ଏକ ମହତ୍ତର ଓ ବୃହତ୍ତର ଶକ୍ତି ଉପରେ ବିଶ୍ୱାସର ଅନ୍ୟ ନାମ ଭଗବତ ବିଶ୍ୱାସ। ଏହି ଭଗବତ ବିଶ୍ୱାସ ହିଁ ଖୁସି ରହିବାର ଅନ୍ୟତମ ଶ୍ୟାମଳ ସାରାଂଶ। ନାମ ଭିନ୍ନ ଭିନ୍ନ ହେଲେ ହିଁ ଭଗବାନ ଯେ ଏକ ଓ ଅଭିନ୍ନ, ଏଥିରେ ଦ୍ୱିମତ ନାହିଁ। ଏହି ଭଗବତ ବିଶ୍ୱାସ ଆସିଲେ ଆତ୍ମବିଶ୍ୱାସ କମିଯାଏ ବୋଲି ଏକ ଭ୍ରାନ୍ତଧାରଣା ଆମର ରହିଛି। ପ୍ରକୃତରେ ଭଗବତ ବିଶ୍ୱାସ ଓ ଆତ୍ମ ବିଶ୍ୱାସ ପରସ୍ପରର ପରିପୂରକ। ଆତ୍ମବିଶ୍ୱାସ ଓ ଭଗବତ ବିଶ୍ୱାସର ଆନୁପାତିକତା ପରିସ୍ପର ନିର୍ଭରଶୀଳ। ଅର୍ଥାତ୍ ଆତ୍ମବିଶ୍ୱାସ ବଢ଼ିଲେ ଭଗବତ ବିଶ୍ୱାସ ବଢ଼େ ଏବଂ ଭଗବତ ବିଶ୍ୱାସ ବଢ଼ିଲେ ଆତ୍ମବିଶ୍ୱାସ ବଢ଼େ। ଏହି ଭଗବତ ବିଶ୍ୱାସ ଏବଂ ଆତ୍ମବିଶ୍ୱାସ ବଢ଼ିଲେ ଆମ ମନରେ ଖୁସିଭାବ ବଢ଼େ। ଭଗବତ ବିଶ୍ୱାସ ବଢ଼ିଲେ କର୍ମରେ କର୍ତ୍ତାପଣ ଜନିତ ଅହଂକାର କମିଯାଏ। କର୍ତ୍ତାଭାବ କମିଯାଇ ନିମିତ୍ତ ଭାବ ଆସେ। ନିମିତ୍ତ ଭାବ ଆସିଲେ କର୍ମରେ ଉତ୍ସାହ ବହୁଗୁଣିତ ହୁଏ ଏବଂ ମନରେ ଖୁସିଭାବ ସୃଷ୍ଟି ହୁଏ।

ଆମ ଆଗରେ ପ୍ରତିକ୍ଷଣରେ ଦୁଇଟି ମାର୍ଗ ଥାଏ। ଗୋଟିଏ ହେଉଛି ଶ୍ରେୟ ମାର୍ଗ ଓ ଅନ୍ୟଟି ହେଉଛି ପ୍ରେୟ ମାର୍ଗ। ଆମକୁ ନିର୍ବାଚନ କରିବାକୁ ହେବ ମାର୍ଗ। ଆମ ପାଇଁ ଆଉ କେହି ତାହା କରିଦେବେ ନାହିଁ। ଅତଏବ ଖୁବ୍ ସତର୍କତାର ସହିତ ନିର୍ବାଚିତ ମାର୍ଗରେ ବାଟ ଚାଲିବାକୁ ପଡିବ। ଶ୍ରେୟ ମାର୍ଗର ପଥିକ ହେଲେ ମନରେ ଶକ୍ତି ଓ ଆନନ୍ଦ ଆସିବ।

ଅତଏବ ଆମ ଖୁସିର ବହୁ ଅଂଶ ଆମ ଅବବୋଧ, ଆମ କ୍ରିୟା ପ୍ରତିକ୍ରିୟା ଭିତରେ ରହିଛି। ଆମେ ଚାହିଁଲେ ଆମେ ଆମର ଶତ୍ରୁ ହୋଇପାରିବା ଓ ଚାହିଁଲେ ଆମେ ଆମର ମିତ୍ର ହୋଇପାରିବା।





Digitized by PPRACHIN, SOA

# ଆବଶ୍ୟକତା ଓ କାମନା

ମଣିଷ ଜୀବନର ପ୍ରତି ଘଟଣା ପଛରେ କିଛି ସୁଖ ଏବଂ କିଛି ଦୁଃଖ ମିଶିକରି ଅଛି। ଅନ୍ୟ ପ୍ରକାରେ କୁହାଯାଇପାରେ ଯେ ମଣିଷ ଜୀବନ ସୁଖ ଦୁଃଖରେ ଗଢ଼ା। ଜୀବନରୁ ଦୁଃଖକୁ ଦୂର କରିବାକୁ ସାଧୁସନ୍ଥ ଯୋଗୀ, ଋଷି, ମହାତ୍ମା, ମହାପୁରୁଷ ପୁଣି ଅବତାରମାନେ କଠୋର ସାଧନା କରିଛନ୍ତି। ସାଧନାର ସିଦ୍ଧିରୁ ଦୁଃଖରୁ ରକ୍ଷା ପାଇବାରବାଟ ବତାଇ ଯାଇଛନ୍ତି। କେତେ ଉପଦେଶ, ଉଦାହରଣ ଦେଇଯାଇଛନ୍ତି।

ଉଦାହରଣ ସ୍ୱରୂପ ଆମେ ବୁଦ୍ଧଦେବଙ୍କୁ ବିଚାରକୁ ନେବା। ରଜାପୁଅ ରାଜ ଉଆସର ସୁଖ ଛାଡ଼ି ଜଙ୍ଗଲକୁ ଯାଇ ତପସ୍ୟା କଲେ। ଲକ୍ଷ୍ୟ ଥିଲା ଜୀବନରେ ଦୁଃଖର କାରଣକୁ ଜାଣିବା ଓ ତାହାର ନିରାକରଣ କରିବା। ଦୀର୍ଘଦିନର କଠୋର ସାଧନା ଫଳରେ ସେ ଜାଣିପାରିଲେ ଯେ ଦୁଃଖର କାରଣ ହେଉଛି କାମନା ଏବଂ ଏହି କାମନାର ବିନାଶରେ ଦୁଃଖର ବିନାଶ ଘଟିବ। ଅଷ୍ଟାଙ୍ଗ ମାର୍ଗକୁ ସେ ଏହି କାମନା ବିନାଶ ପାଇଁ ଆଚରଣର ମାର୍ଗ ବୋଲି ଘୋଷଣା କଲେ। କଥାଟି ଆଜି ଆମକୁ ଶୁଣି ଶୁଣି ସାଧାରଣ କଥା ପରି ଲାଗୁଛି, ମାତ୍ର ଏହା ଏତେ ସାଧାରଣ କଥାନୁହେଁ। ଦୁଃଖର ମୂଳରେ କାମନା ରହିଛି, ଏହା ସତ୍ୟ। କାମନାର ପୂରଣରେ ସୁଖ ମିଳୁଛି, ଆଉ କାମନା ପୂରଣ ନ ହେଲେ କ୍ରୋଧ, ବିରକ୍ତି, ଅବସାଦ ଆସୁଛି ଏବଂ ତାହା ହେଉଛି ଦୁଃଖର କାରଣ। ଦୁଃଖରେ ମଣିଷ ମନ ଭାଙ୍ଗିଯାଉଛି, ହତାଶାରେ ଜର୍ଜରିତ ହୋଇ ଖଣ୍ଡ ଖଣ୍ଡ ହୋଇଯାଉଛି। ଜୀବନ ହୋଇଯାଉଛି ଏକ ପ୍ରକାର ଦୁର୍ବିସହ ଯନ୍ତ୍ରଣାରେ ଜର୍ଜରିତ। କାହାକୁ କହି ହେଉନି, ସହି ମଧ୍ୟ ହେଉନି। 'ନ ଯଯୌ ନ ତସ୍ଥୌ' ଅବସ୍ଥାରେ ରହିବାକୁ ହେଉଛି। ମୂଳ କାମନା କେତେ ଡାଳପତ୍ର ମେଲି ଫୁଲଫଳ ଧରି ଆମର ସର୍ବନାଶର କାରଣ ହେଉଛି। ଏହି କଥାଟିର ମର୍ମ କେତେ ଗଭୀର, ତାହା ବିଚାର କରିବାର କଥା। କାମନା ଯେତେ ହ୍ରାସ ପାଇବ, ଦୁଃଖର ପରିମାଣ ଓ ଚାପ ସେତେ ହ୍ରାସ ପାଇବ, ଏହା ଦେଶ, କାଳ, ନିର୍ବିଶେଷରେ ସର୍ବବାଦୀ ସମ୍ମତ।

ଅବଶ୍ୟ ଏଠାରେ କାମନାର କଥା କୁହାଯାଉଛି, ଆବଶ୍ୟକତାର କଥା ନୁହେଁ। ଆମର ଆବଶ୍ୟକତା କାମନା ନୁହେଁ। ଏଇ ଯେପରି ଖାଦ୍ୟ ଆମର ଆବଶ୍ୟକତା, ବସ୍ତ୍ର ଆମର ଆବଶ୍ୟକତା, ବାସଗୃହ ଆମର ଆବଶ୍ୟକତା, ଶିକ୍ଷା ଆମର ଆବଶ୍ୟକତା,



Digitized by PPRACHIN, SOA

ସ୍ୱାସ୍ଥ୍ୟରକ୍ଷା ଆମର ଆବଶ୍ୟକତା, ପୁଣି କିଛି କିଛି ମନୋରଞ୍ଜନ ଆମର ଆବଶ୍ୟକତା ଏବଂ ସର୍ବୋପରି ନିରାପତ୍ତା ଆମର ଆବଶ୍ୟକତା। ଆବଶ୍ୟକତାର ଏକ ସୀମାରେଖା ଅଛି। ସେହି ସୀମାରେଖା ଟପିଗଲେ ଯେଉଁ ରାଜ୍ୟ ପଡ଼େ ତାହା ହେଉଛି କାମନାର ରାଜ୍ୟ। କାମନା ଓ ଆବଶ୍ୟକତାର ସୀମା ରେଖା ଏତେ ସୂକ୍ଷ୍ମ ଯେ ସହଜରେ ତାକୁ ଜାଣିହୁଏ ନାହିଁ। ଜାଣିଲା ବେଳକୁ ଆବଶ୍ୟକତାର ସୀମା ପାର ହୋଇ ମଣିଷ ମନ କାମନାର ରାଜ୍ୟରେ ପାଦ ପକାଇ ସାରିଥାଏ। ପ୍ରଥମରୁ ଜାଣିପାରି ଫେରି ଆସିଲେ ତ ଭଲ, ନହେଲେ ପାଦ ବଳେ ବଳେ ଆଗକୁ ପଡ଼ି ପଡ଼ି ଯାଏ। ସେ ରାଜ୍ୟରେ ଅଳ୍ପ ପରିଶ୍ରମରେ ବେଶୀ ବାଟ ଚାଲି ହୁଏ, ଆଉ ଏକ ସମ୍ମୋହିନୀ ଶକ୍ତି ହାତ ଧରିନିଏ, ବାଟ ଭୁଲାଇ ଦିଏ, ତା'ର ନିଜ ଜାଲରେ ଆସ୍ତେ ଆସ୍ତେ ଛନ୍ଦିଦିଏ। ଥରେ ଛନ୍ଦି ହୋଇଗଲେ ଆଉ **ସେ ବନ୍ଧନ ଛିଣ୍ଡାଇ** ହୁଏ ନାହିଁ, ଦେହ, ପ୍ରାଣ, ମନ ଓ ଚେତନା ତହିଁରେ ବାନ୍ଧିହୋଇ ବନ୍ଦୀ **ହୋଇଯାଏ**। ଶେଷରେ ଫଳ ମିଳେ ଅଶାନ୍ତି, ଦୁଃଖ, ବିଫଳତା, ହା ହୁତାଶ ଭାବ।

ଆମର ଧନ ଦରକାର। ଘର ପାଇଁ, ଖାଦ୍ୟ ପାଇଁ, ବାସଗୃହ ପାଇଁ ତଥା ପ୍ରତ୍ୟେକ ଆବଶ୍ୟକତାର ପୂରଣ ପାଇଁ। ଧନ ଅର୍ଜନକୁ କାମନା କହି ଉଡ଼ାଇଦେଲେ ଚଳିବ ନାହିଁ। କିନ୍ତୁ କେତେ ଧନ ଆମର ଦରକାର ତାହା ଆମର ଜାଣିବା ଦରକାର। ସେହି ସୀମାଟି ଜାଣିଲେ କାମନା ପଶି ପାରିବ ନାହିଁ କି ଦୁଃଖର କାରଣ ହୋଇପାରିବ ନାହିଁ। ସମ୍ମାନ ଆମର ଆବଶ୍ୟକ। କେତେ ସମ୍ମାନର ଆବଶ୍ୟକତା ରହିଛି ତାହା ମଧ୍ୟ ଜାଣିବା ଦରକାର। ଅନେକ ତାହା ଜାଣି ନପାରି ସମ୍ମାନ ପଛରେ ଧାଇଁ ଧାଇଁ ଆଣ୍ଠୁଗଣ୍ଠି ଖଣ୍ଡିଆ କରନ୍ତି। ଯଶ ଆମର ଆବେଶ୍ୟକ, ମାତ୍ର କେତେ ପରିମାଣରେ ଆବଶ୍ୟକ ଆମେ ସେଇ ସୀମାକୁ ଜାଣିଲେ ଯଶ ପଛରେ ଆଉ ଧାଇଁବାକୁ ପଡ଼ିବ ନାହିଁ କି କ୍ଷତାକ୍ତ ହେବାକୁ ପଡ଼ିବ ନାହିଁ।

ଆବଶ୍ୟକତା ପୂରଣରେ ଆତ୍ମସନ୍ତୋଷ ଆସିବ, ଦେହ, ପ୍ରାଣ ଓ ମନରେ ସୁସ୍ଥତା ଆସିବ। ଅଭାବବୋଧର ଏକ ପ୍ରକାର ଅଭାବ ଘଟିବ। ଫଳରେ ଜଣେ ଚେତନାରେ ଅଗ୍ରଗତି କରିବାକୁ ସମୟ ସୁଯୋଗ, ଅବକାଶ ଓ ମାନସିକତା ଲାଭ କରିବ।

ବର୍ତ୍ତମାନ ଆଉ ଗୋଟିଏ କଥା ବିଚାର କରିବା। କଥାଟି ହେଉଛି ଆମେ ଆବଶ୍ୟକତା ଓ କାମନାକୁ ଚିହ୍ନିବା କିପରି ଏବଂ ସେ ଦୁହିଁଙ୍କ ମଝିରେ ଥିବା ସୀମାରେଖାକୁ ଦେଖିବା କିପରି ? ଏ ପରିପ୍ରେକ୍ଷୀରେ ଶ୍ରୀମାଙ୍କର ଶକ୍ତିପୂର୍ଣ୍ଣ ବାଣୀ ସ୍ମରଣୀୟ। ସେ କହନ୍ତି ଯେ ଯେଉଁ ଜିନିଷ ପାଇବା ପାଇଁ ଅଧିକ ଉତ୍କଣ୍ଠା, ଆବେଗ ଥାଏ ତାହାହିଁ କାମନାର ଜିନିଷ। ନ ପାଇଲେ ମନ ବିବ୍ରତ ହୁଏ ତାହାହିଁ କାମନା। ମନ ଝୁରେ, ମନ ଘାରି ହୁଏ, ଚାରିଆଡ଼ ଖାଲି ଖାଲି ଲାଗେ, ଅସ୍ଥିର ଲାଗେ, ଆଉ ସବୁ କଥା ଚିଡ଼ଚିଡ଼ ଲାଗେ, ତାହାହିଁ କାମନା।



Digitized by PPRACHIN, SOA

ବାସ୍ତବରେ ଆଜି ଆବଶ୍ୟକତା ପୂରଣ ହେଲେ ମଧ୍ୟ ମଣିଷ ସନ୍ତୁଷ୍ଟ ହୋଇ ରହିପାରୁ ନାହିଁ। କାମନା ଅଧିକରୁ ଅଧିକ ଘାରୁଛି। କାହା ମନରେ ଧନର କାମନା, କାହା ମନରେ କ୍ଷମତାର କାମନା, କାହା ମନରେ ଯଶ, ପ୍ରଶଂସା ଓ ପୁରସ୍କାରର କାମନା, କାହା ମନରେ ବହୁ ବସ୍ତୁ ପ୍ରାପ୍ତିର କାମନା ପ୍ରବଳ ମାତ୍ରାରେ ରହିଛି। ଏହି କାମନାମାନେ ବହୁ କଲବଲ କରୁଛନ୍ତି ମଣିଷମାନଙ୍କୁ, ତାହା ଜାଣିହେଉ ନାହିଁ। ଶ୍ୱାନ ଶୁଖିଲାହାଡ଼ ଚୋବାଇଲା ନ୍ୟାୟରେ କଥାଟିକୁ କାମନା ଥିବା ମଣିଷମାନେ ଗ୍ରହଣ କରୁଛନ୍ତି। ଶ୍ୱାନ ହାଡ଼ ଚୋବାଇଲା ବେଳେ ସେହି ହାଡ଼ରେ ତା'ର ମାଢ଼ି ଖଣ୍ଡିଆ ହୋଇ ତହିଁରୁ ରକ୍ତ ଝରେ, ସେହି ରକ୍ତକୁ ସେ ଖାଏ ଓ ଭାବୁଥାଏ ଯେ ହାଡ଼ରୁ ରସ ଝରୁଛି। ଶେଷରେ ସେ ଯନ୍ତ୍ରଣା ପାଏ, କ୍ଷତାକ୍ତ ହୁଏ।

ଅତଏବ ସବୁକଥାକୁ ବୁଝିବା ଦରକାର। ପାଦଟିଏ ପଛକୁ ଫେରି ସବୁକଥାକୁ ବିଚାର କରିବା ଜରୁରୀ। ପାଦଟିଏ ପଛକୁ ଫେରିବା ଅର୍ଥ ଥରେ ଭାବି କରି ନୁହେଁ ଆଉ ଥରେ ଭାବିକରି କାମ କରିବା। ଭାଗବତ ଗ୍ରନ୍ଥରେ ତେଣୁ ମଣିଷମାନଙ୍କୁ ସାବଧାନ କରିବା ପାଇଁ କୁହାଯାଇଛି –

"ବୁଝିବିଚାରି କର୍ମ କଲେ। ପ୍ରମାଦ ନ ପଡ଼ଇ ହେଲେ।"





Digitized by PPRACHIN, SOA

# କଥା କହିବାର କଳା

ଆମେ ଜାଣୁ ଯେ କହି ଜାଣିଲେ କଥା ସୁନ୍ଦର ଆଉ ବାନ୍ଧି ଜାଣିଲେ ମଥା ସୁନ୍ଦର। ମଥା ବାନ୍ଧି ଦେବା ପାଇଁ ସଂସ୍ଥା ଅଛନ୍ତି ମାତ୍ର କଥା ଶିଖାଇବା ପାଇଁ ପ୍ରାୟତଃ ସଂସ୍ଥା ନାହାନ୍ତି। ଗୁରୁ ମିଳିଲେ ତ ଭଲ ନହେଲେ ନିଜର ଅନୁଭବ, ଅଭିଜ୍ଞତାକୁ ଗୁରୁକରି କଥା ଶିଖିବାକୁ ହେବ। ଗୁରୁ, ଗୁରୁଜନ, ଶାସ୍ତ୍ର ପୁଣି ମହାଜନମାନଙ୍କ ଠାରୁ କଥା କହିବାର କଳା ମଧ୍ୟ ଶିଖିବାକୁ ପଡ଼ିବ। ଏହି କଳାଟି ଏକ ଅତ୍ୟାବଶ୍ୟକୀୟ ବ୍ୟାବହାରିକ କଳା। ଏହାକୁ ଜାଣିବା, ବୁଝିବା ଓ ପ୍ରୟୋଗ କରିବା ପାଇଁ ଆଗ୍ରହ ଓ ଆନ୍ତରିକତା ଦରକାର।

ସତରେ କଥା କହିବାର କଳା ଏକ ବିଶିଷ୍ଟ କଳା। କଥାରେ ଶ୍ରାବଣ ହୁଏ ଫଗୁଣ ଆଉ ଫଗୁଣ ବି ଶ୍ରାବଣ ହୋଇଯାଏ। ମରୁଭୂମିରେ ମରୁଦ୍ୟାନ ସୃଷ୍ଟି ହୁଏ। ମିଠା କଥାରେ ଅଦିନ ବସନ୍ତ ଆସେ, ଲତାକୁଞ୍ଜରେ କେରିକେରି କିଶଳୟ ଭରିଯାଏ, ଝିରିଝିରି ଫୁଟା ଫୁଲରେ ଦିଗ ମହକି ଉଠେ। ଆଉ ଆଉ ମଣିଷ ମନର କ୍ଷତ ଘଡ଼ିକରେ ଶୁଖିଯାଏ, କାଉଁରୀ ସ୍ପର୍ଶରେ ଯନ୍ତ୍ରଣା କେଉଁ ଆଡ଼େ ଚାଲିଯାଏ। କଥା କହି ନ ଜାଣିଲେ ଫୁଲବନରେ ବଜ୍ରପଡ଼େ, ସୁଷମା ସୁରଭି ସବୁ ଜଳିପୋଡ଼ିଯାଏ, ପୋଡ଼ାଗନ୍ଧ ସହଜରେ ଯାଏ ନାହିଁ, ରହି ରହି ପରିବେଶରେ କ୍ଷତ ସୃଷ୍ଟି କରେ, ସେ କ୍ଷତ ଶୁଖିବା ସହଜ ହୁଏ ନାହିଁ। ଯେକୌଣସି ଶକ୍ତିଠାରୁ ଯେପରି ମିଠାକଥାର ଶକ୍ତି ଅଧିକ, ଯେକୌଣସି ମାରଣାସ୍ତ୍ରଠାରୁ ସେପରି ଅବାଗ କଥାର ଶକ୍ତି ଅଧିକ। ତେଣୁ ତ କୁହାଯାଇଛି- "ମଧୁର ବିନୟ ବଚନ। କହି ତୋଷିବ ପ୍ରାଣୀମନ।" ମଣିଷ ତ ମଣିଷ, ଏପରିକି ପ୍ରାଣୀ ମଧ୍ୟ ମିଠା କଥାର ପ୍ରଭାବକୁ ଅନୁଭବ କରିପାରେ। ଅତଏବ ବାକ୍ ଶକ୍ତିରୁ ଶକ୍ତି ନାହିଁ, ଏହା ଅକ୍ଷରେ ଅକ୍ଷରେ ସତ୍ୟ। ତେଣୁ ତ କୁହାଯାଏ 'Word rules the world'.

ରୁକ୍ଷ, କର୍କଶ ଓ ଅବାଗ କଥାର ମୂଳରେ ଥିବା ମାନସିକତା ପାଇଁ କେତେଗୋଟି କଥା ଦାୟୀ ବୋଲି କୁହାଯାଇପାରେ। ତହିଁରୁ ଗୋଟିଏ ହେଉଛି ମନୁଷ୍ୟକୁ ଭଗବାନଙ୍କର ଶ୍ରେଷ୍ଠ ଦାନ ରୂପେ ଗୃହୀତ ବାକ୍ ଶକ୍ତିର ଅପବ୍ୟବହାର ଅର୍ଥାତ୍ ନ ବୁଝି ନିବଚାରି କହିବାପାଇଁ କହିବାର ପ୍ରବଣତା। ଭାବିଲା ପରେ କହିବା ଓ କହିଲା ପରେ ଭାବିବା ଦୁଇଟି ଭିତରେ ଆକାଶ ପାତାଳ ପ୍ରଭେଦ ନ ଭାବିକରି କଥା କହିଲେ ପରିସ୍ଥିତି ଆଉ ନିୟନ୍ତ୍ରଣରେ ନ ଥାଏ। ଆଉ ଏକ କାରଣ ହେଉଛି ନିଜକୁ ସବ୍‌ଜାନତା ମନେ କରିବା ଓ



Digitized by PPRACHIN, SOA

ଅନ୍ୟକୁ ନିଜଠାରୁ କମ୍ ବୋଲି ବିଚାର କରିବା। ପ୍ରଗଲ୍‌ଭତା ଏହାର ଅନ୍ୟ ଏକ କାରଣ। ପ୍ରଗଲ୍‌ଭତାରୁ ଅତିରଞ୍ଜନ, ମିଥ୍ୟା ଭାଷଣ, ଆତ୍ମ ବିଜ୍ଞାପନର ସୃଷ୍ଟି। ଯେତିକି ଦରକାର କେବଳ ସେତିକି କଥା କହିବା ହିଁ ବାକ୍‌ସଂଯମ, ବାକ୍ ସ୍ୱାଧୀନତାର ଅନ୍ୟନାମ। ଅଯଥା ବହୁ କଥା କହିବା ଦ୍ୱାରା ବହୁତ ଭୁଲ ହୁଏ, ଆଉ ସେହି ଭୁଲ ଦ୍ୱାରା ପରିବେଶ ସଂକ୍ରମିତ ହୋଇଯାଏ।

ଆତ୍ମବିଜ୍ଞାପନ ଆଜିର ସାଧାରଣ କଥା ହୋଇଗଲାଣି। ଏଥିରେ ନିର୍ମଳ ଶ୍ରୋତା ନ ଥାନ୍ତି, ବିଜ୍ଞାପନକାରୀଟି ନିଜେ ବକ୍ତା ଓ ଶ୍ରୋତା ମଧ୍ୟ ହୋଇଥାଏ, ଏକଥା ସେ କିନ୍ତୁ ଜାଣିପାରେ ନାହିଁ। ଭାବେ ବହୁ ଲୋକ ମୋ ବିଷୟରେ ମୋଠାରୁ ଶୁଣି ମତେ ବୁଝିଗଲେ, ମୋର ଆଜି ଜୟ ହେଲା। ପ୍ରକୃତରେ ଏହାଦ୍ୱାରା କାହା ମନକୁ ଜୟ କରି ହୁଏ ନାହିଁ, ଜୟ ପରିବର୍ତ୍ତେ ନିଜର ପରାଜୟ ହିଁ ହୁଏ। ଏହି ପରିପ୍ରେକ୍ଷୀରେ ଶ୍ରୀଅରବିନ୍ଦଙ୍କ କଥା ସ୍ମରଣୀୟ। ତାଙ୍କ ମତରେ – "ତୁମେ ନିଜ ପାଇଁ କୁହନାହିଁ, ତୁମ କାମ ତୁମ ପାଇଁ କହୁ।"

ବହୁଲୋକ ଅଛନ୍ତି ଯେଉଁମାନେ ବଡ଼ପାଟିରେ ନିଜକୁ ଜାହିର କରି କଥା କହିବାକୁ ଶ୍ରେୟ ମଣନ୍ତି। ସେମାନେ ଜାଣନ୍ତି ନାହିଁ ଯେ ଏହା ଏକ ଦୁର୍ବଳ ମାନସିକତା। ମନସ୍ତତ୍ତ୍ୱବିତ୍ ମାନେ କହନ୍ତି ଯେ ଯିଏ ଯେତେ ଦୁର୍ବଳ ସେ ବଡ଼ ପାଟିରେ କଥା କହି ତା'ର ଦୁର୍ବଳତାର ଖାଲକୁ ସମାନ କରିବାକୁ ଚାହେଁ। ଆମର ମଧ୍ୟ କଥାରେ କଥାରେ କୁହାଯାଏ– 'ଫମ୍ପା ମାଠିଆର ଶବ୍ଦ ବେଶୀ'।

ପରଚର୍ଚ୍ଚା ଓ ପରନିନ୍ଦା ଶୁଣିଲେ ମନ ସଂକ୍ରମିତ, ଦୂଷିତ ହୋଇଯାଏ। ମନର ନିର୍ମଳତା, ପ୍ରସନ୍ନତା ଓ ମଧୁରତା ରହେ ନାହିଁ। ଏକଥା ତତ୍‌କ୍ଷଣାତ୍ ଜାଣିହୁଏ ନାହିଁ। ଏସବୁ ଶୁଣିବାକୁ ଭଲ ଲାଗେ, ତହିଁରେ ଆଉ ଦୁଇ ପଦ ମିଶାଇ ଦେବାକୁ ହୁଏ, ମାତ୍ର ସେଠାରୁ ଆସିଲା ବେଳକୁ ଅବଚେତନ ମନ ବିଷାକ୍ତ ହୋଇଯାଇଥାଏ ଯାହାର ପ୍ରକୋପ ନିଜକୁ ସୂକ୍ଷ୍ମ ଭାବରେ ଶୀଘ୍ର ହେଉ ବା ବିଳମ୍ବରେ ହେଉ ଭୋଗିବାକୁ ପଡ଼େ।

ତୃତୀୟ ଲୋକଠାରୁ ନିଜ ବିରୁଦ୍ଧରେ ଶୁଣି ପ୍ରତିକ୍ରିୟାଶୀଳ ହୋଇ ଏଆଡୁ ସେଆଡୁ କହିଯିବା ଦୁର୍ବଳତାର ଚିହ୍ନ। ମୁକାବିଲା କରିବାକୁ ବାହାରିପଡ଼ିବା ଆହୁରି ଦୁର୍ବଳତାର ଚିହ୍ନ। ନିଜେ ଠିକ୍ ବାଟରେ ଥାଇ ଅନ୍ୟର କଥାରେ ନିଜକୁ ଉତ୍ପୀଡ଼ନ କରିବା ଆହୁରି ଆହୁରି ଦୁର୍ବଳତାର ଚିହ୍ନ। ଜଣେ ଅନ୍ୟକୁ ସାନ କରିବା ନିଜକୁ ବଡ଼ ବୋଲାଇବା ପାଇଁ ଅନ୍ୟକୁ ସମାଲୋଚନା କରି ଅନ୍ୟର ବିରୁଦ୍ଧରେ କହେ। ଅନ୍ୟ ଲୋକଟି ଏହାଦ୍ୱାରା ଆକ୍ରମିତ ହୋଇ ଆକ୍ରାନ୍ତ ହେଲେ କହୁଥିବା ଲୋକଟିର ଲକ୍ଷ୍ୟ ଏକ ପ୍ରକାର ସିଦ୍ଧ ହୁଏ। ପ୍ରତିକ୍ରିୟା ପ୍ରକାଶ କରୁଥିବା ଲୋକଟି ବହୁ ଭାବରେ କ୍ଷତିଗ୍ରସ୍ତ ହୁଏ। ବାସ୍ତବରେ ପ୍ରତିକ୍ରିୟା ପ୍ରକାଶ ନକରି ଯଦି କିଛି ଭୁଲ ଥାଏ, ତେବେ ଆତ୍ମସମୀକ୍ଷା ପୂର୍ବକ ନିଜକୁ ସଂଶୋଧନ



Digitized by PPRACHIN, SOA

କରିନେବା ଦରକାର। ଭୁଲ ନ ଥିଲେ ଆକ୍ରାନ୍ତ ହେବା ଅଥବା ପ୍ରତିକ୍ରିୟା ପ୍ରକାଶ କରିବା ଆଦୌ ଉଚିତ ନୁହେଁ।

ପରସ୍ପର ଭିତରେ କଥାବାର୍ତ୍ତା ବେଳେ ଅଯଥା ଯୁକ୍ତିତର୍କ ଗ୍ରହଣୀୟ ନୁହେଁ। ଯୁକ୍ତିରେ କୌଣସି ସମସ୍ୟାର ସମାଧାନ ହୁଏନାହିଁ। କୌଣସି ପକ୍ଷ କଥାରେ ନିଜକୁ ଠିକ୍ ବୋଲି ଜାହିର କରିବାରୁ ବେଳେ ବେଳେ କଥା କଟାକଟି ହୋଇ କଳିର ଆରମ୍ଭ ହୁଏ। କଥାବାର୍ତ୍ତା ମାଧ୍ୟମରେ ସହଜରେ ସମସ୍ୟାର ସମାଧାନ ହୋଇପାରେ। ଏକଥାଟି ବ୍ୟକ୍ତି ପାଇଁ ଯେପରି ସତ୍ୟ ଦେଶ ପାଇଁ ମଧ୍ୟ ସେପରି ସତ୍ୟ। ଜାତି ଜାତି ଭିତରେ, ସଂସ୍କୃତି ସଂସ୍କୃତି ଭିତରେ ଭାବ ସାମ୍ୟ ତଥା ଭାର୍‌ସାମ୍ୟ ରଖିବା ଦିଗରେ ଏହା ସମର୍ଥ। ଅସ୍ତ୍ରଶସ୍ତ୍ର ଦ୍ୱାରା ନୁହେଁ, ପାରସ୍ପରିକ ଆଲୋଚନା ଦ୍ୱାରା ଦେଶ ଦେଶ ଭିତରେ ଉତ୍ତମ ସମ୍ପର୍କ ରହିପାରେ।

ଆଜି ବ୍ୟକ୍ତି ଜୀବନ ତଥା ବିଶ୍ୱଜୀବନରେ କଥା କହିବାର କଳାର ଅଭାବ ରହିଛି। ଏହି ଅଭାବ ପୂରଣ ଏକ ଅପରିହାର୍ଯ୍ୟ ଆବଶ୍ୟକତା। ଏହି ଅଭାବ ପୂରଣରେ ଆମେ ସାମିଲ ହେବା ନାହିଁକି ?





Digitized by PPRACHIN, SOA

# ପାରିବାରିକ ଶିକ୍ଷା ଓ ବିଶ୍ୱ ଜୀବନ

ଶିକ୍ଷା କହିଲେ କେବଳ ଡିଗ୍ରୀକୁ ବୁଝାଏ ନାହିଁ । ଡିଗ୍ରୀଥାଇ ମଧ୍ୟ ବ୍ୟକ୍ତିଟିଏ ଅଶିକ୍ଷିତ ତାଲିକାର ଅନ୍ତର୍ଭୁକ୍ତ ହୋଇପାରେ ଏବଂ ଡିଗ୍ରୀ ନଥାଇ ମଧ୍ୟ ବ୍ୟକ୍ତିଟିଏ ଶିକ୍ଷିତ ପର୍ଯ୍ୟାୟଭୁକ୍ତ ହୋଇପାରେ । ଅତଏବ ଡିଗ୍ରୀ ବା ପଦ ପଦବୀ ଶିକ୍ଷାର ମାନଦଣ୍ଡ ବା ମାପକାଠି ନୁହେଁ । ଶିକ୍ଷା ପ୍ରକୃତ ପକ୍ଷେ ଏକ ମହନୀୟ ଶକ୍ତି ଯାହା ବ୍ୟକ୍ତିକୁ ସଚେତନ କରିଥାଏ । ନିଜ ଉପରେ ଦୃଷ୍ଟିପାତ କରିବାପାଇଁ ତାହା ଦିଗଦର୍ଶନ ଦେଇଥାଏ । ନିଜର କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟକୁ ବୁଝିବାକୁ ଆବଶ୍ୟକୀୟ ଚେତନା ଆଣିଦିଏ । ଶିକ୍ଷାର ମାଧ୍ୟମ ଯେପରି ଭିନ୍ନ ଭିନ୍ନ ହୋଇଥାଏ ଶିକ୍ଷାର ପରିବେଶ ମଧ୍ୟ ସେପରି ଭିନ୍ନ ଭିନ୍ନ ହୋଇଥାଏ । ଏହି ପରିବେଶମାନଙ୍କ ମଧ୍ୟରୁ ପାରିବାରିକ ପରିବେଶ ଅନ୍ୟତମ ଯାହାର ମହତ୍ତ୍ୱ ଅତୁଳନୀୟ । ବ୍ୟକ୍ତି ଚରିତ୍ର ଗଠନର ମୂଳଭିତ୍ତି ଏହି ପରିବେଶରେ ପଡ଼ିଥାଏ । ଏହାକୁ ଆଧାରକରି ଜୀବନ ପରିଚାଳିତ ହୋଇଥାଏ । ଯେଉଁ ବ୍ୟକ୍ତିର ପାରିବାରିକ ଶିକ୍ଷା ନାହିଁ, ସେ ବ୍ୟକ୍ତି ଯେତେ ବାହ୍ୟ ଶିକ୍ଷା ତଥା ଅନୁଷ୍ଠାନିକ ଶିକ୍ଷା ପାଇଲେ ମଧ୍ୟ ପ୍ରକୃତ ଅର୍ଥରେ ଶିକ୍ଷିତ ହୋଇପାରେ ନାହିଁ, ସେ ହୁଏ ଅହଂଗ୍ରସ୍ତ ଏକ ବିଚିତ୍ର ସତ୍ତା । ଜୀବନ ଅଙ୍କକୁ ଭୁଲଧାରାରେ କଷି କଷି ଶେଷରେ ହୁଏ କ୍ଳାନ୍ତ ଓ ବିବ୍ରତ । ଅନ୍ୟମାନଙ୍କ ଉପରେ ବିରକ୍ତ ହୋଇ ହୋଇ ଶେଷରେ ସେ ଭୁଲ୍ ମାର୍ଗରେ ପଥିକ ହୋଇ ତା' ପାଦରେ କଣ୍ଟା କେତେ ଫୁଟି ଯାଏ । ଖାଣ୍ଟି ଓଡ଼ିଆରେ କହିଲେ ନେଡ଼ିଗୁଡ଼ କହୁଣିକୁ ବୋହିଯାଏ । ପ୍ରକୃତ ଦୋଷଟି କେଉଁଠାରେ ରହିଗଲା ସେ ବୁଝିପାରେ ନାହିଁ । ଜୀବନ ସେତେବେଳେ ହୁଏ ଦୁର୍ବହ ଓ ଦୁଃସହ ।

ସୁତରାଂ ପିଲାଟିପାଇଁ ତା'ର ପରିବାରର ଶିକ୍ଷା ସବୁଠାରୁ ମୂଲ୍ୟବାନ । ସେଥିପ୍ରତି ପରିବାରରେ ଥିବା ଅଭିଭାବକମାନେ ସଚେତନ ହେବା ଅପରିହାର୍ଯ୍ୟ । ପିଲାଟିଏ ଅତ୍ୟନ୍ତ ଅନୁକରଣପ୍ରିୟ ଓ ସଚେତନ । ତାର ଅଭିବ୍ୟକ୍ତି ସାମର୍ଥ୍ୟ କମ୍‌ଥିଲେ ହେଁ ଅନୁଭବ ଶକ୍ତି ପ୍ରବଳ ଥାଏ । ଘରେ ଯେପରି ଚଳିଣି ସେ ଦେଖେ ସେପରି ଚଳଣି ସେ ଶିଖେ । ଘରେ ଯେପରି କଥାବାର୍ତ୍ତା ସେ ଶୁଣେ ସେ ସେପରି କଥାବାର୍ତ୍ତା କରିବାକୁ ଶିଖେ । ଅତଏବ ପିଲାଟିକୁ ଗଢ଼ିବାର ଗୁରୁ ଦାୟିତ୍ୱ ଅଭିଭାବକମାନଙ୍କ ଉପରେ । ସେମାନେ ହେଳାକଲେ ପିଲା ହୁଏ ଉଦ୍‌ଭ୍ରାନ୍ତ । ପିଲାଟିଏ ଭୂମିଷ୍ଠ ହେବାପରେ ପରିବାରରେ ପିତା-ମାତା ତଥା ଅନ୍ୟାନ୍ୟ ଗୁରୁଜନଙ୍କର ଦାୟିତ୍ୱ ବଢ଼ିଯାଏ ଓ ଭୂମିକା ବହୁଳଭାବରେ ଗୁରୁତ୍ୱପୂର୍ଣ୍ଣ



Digitized by PPRACHIN, SOA

ହୋଇଯାଏ । ଖାଲି ଉପଦେଶ ଦେଲେ ଚଳେ ନାହିଁ । କାର୍ଯ୍ୟରେ ପ୍ରତିପାଦନ କରିବାକୁ ପଡ଼ିଥାଏ । ନିଜେ ଅସତ ପଥରେ ଯାଇ ପିଲାମାନଙ୍କୁ ସତପଥରେ ଯାଅ ବୋଲି କହିବାର ବିଶେଷ କିଛି ଅର୍ଥ ନାହିଁ । ଚଳଣିରେ ଭଲକଥାକୁ ପ୍ରତିଫଳିତ କରିବାର ଆବଶ୍ୟକତା ଅଛି ନ ହେଲେ ତା'ର କୌଣସି ବିଶେଷ ପ୍ରଭାବ ପିଲା ଉପରେ ପଡ଼େନାହିଁ । ପିଲାଟିଏ ଲକ୍ଷ୍ୟକରେ ଘରେ ଅନ୍ୟମାନେ ପରସ୍ପରପ୍ରତି କିପରି ବ୍ୟବହାର କରୁଛନ୍ତି । ପରସ୍ପର ପ୍ରତି ଥିବା ସ୍ନେହ, ମମତା ତଥା ଆନ୍ତରିକତାକୁ ସେ ଅକ୍ଳେଶରେ ବୁଝିଯାଏ ଓ ନିଜକୁ ସେପରି ଧାରାରେ ଚଳାଇବାକୁ ଅଭ୍ୟସ୍ତ କରିଥାଏ । ସେ ସବୁଠାରୁ ବେଶୀ କଥା ଶିଖେ ତା'ର ମା'ଠାରୁ । ମା' ଯଦି ଭଲକଥା କହିବା ସହିତ ଅନ୍ୟମାନଙ୍କୁ ଭଲ ବ୍ୟବହାର କରୁଥାଏ ତେବେ ପିଲାଟିଏ ତାହାହିଁ ଶିଖେ । ମା' ହେଉଛି ପିଲାଟିର ପ୍ରଥମ ଶିକ୍ଷୟିତ୍ରୀ । ମା'ର ଶିକ୍ଷା ପିଲା ଜୀବନରେ ସବୁଠାରୁ ଅଧିକ ପ୍ରଭାବ ପକାଇଥାଏ । ମା' ଯେତେ ସ୍ନେହୀ, ସଙ୍କୋଚ, ନମ୍ର, ତ୍ୟାଗଶୀଳା, ସଦିଚ୍ଛା-ସମ୍ପନ୍ନ, ମାର୍ଜିତରୁଚି ସମ୍ପନ୍ନା ତଥା ବ୍ୟକ୍ତିତ୍ୱର ଅଧିକାରିଣୀ ହୁଏ ପିଲାଟି ତା'ଠାରୁ ସେସବୁ କଥା ଶିଖିଯାଏ ।

ମା'ଯଦି ସଂସ୍କୃତି ପ୍ରତି ସଚେତନ ହୁଏ, ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇଥାଏ, ସୁନୀତି ପରାୟଣା ହୋଇଥାଏ ତେବେ ପିଲାଟି ଉପରେ ଏହାର ସୁପ୍ରଭାବ ପଡ଼ିଥାଏ । ମା' ଯଦି ହୁଏ ସ୍ୱାର୍ଥପର, କଟୁଭାଷିଣୀ, ଅଶାନ୍ତ, ଈର୍ଷାପରାୟଣ, ସଂକୀର୍ଣ୍ଣମନା ତେବେ ପିଲାଟି ତାହାହିଁ ଶିଖିଯାଏ । ସେହି ବିକୃତ ଚିନ୍ତାର ଛାପ ତା'ର ଅବଚେତନାରେ ରହିଯାଏ । ପରେ ଯେତେ ଭଲ କଥା କୁହାଗଲେ, ତା'ର ବିଶେଷ କିଛି ପ୍ରଭାବ ପଡ଼େନାହିଁ । ମା' ଯଦି ତୋର ମୋର ବିଚାରରଖି ପରିବାରରେ ଅନ୍ୟମାନଙ୍କ ସହିତ ଭଲରେ ଚଳୁନଥାଏ ତେବେ ପିଲାଟି ସେହିପରି ଭାବରେ ଭାବିତ ହୋଇଯାଏ । ସେ ଭବିଷ୍ୟତରେ ହୁଏ ଚରମ ସ୍ୱାର୍ଥପର, ହିଂସ୍ର ଓ କୁଚକ୍ରୀ । ଉଦାହରଣ ସ୍ୱରୂପ ଯଦି ପିଲାଟିଏ ଦେଖେ ଯେ ତା'ର ମା' ଘରେ ତା'ର ଜେଜେବାପା ଓ ଜେଜେମା'ଙ୍କୁ ଭଲ ବ୍ୟବହାର ନ କରେ, ଭଲ କଥା ନ କହେ, ଆଦର ଯତ୍ନ ନ କରେ, ସେମାନଙ୍କ ସହ କଳି ଲଗାଉଥାଏ ତେବେ ପିଲାଟିଏ ଭବିଷ୍ୟତରେ ନିଜ ମା'ଙ୍କୁ ସେପରି ବ୍ୟବହାର କରିବାକୁ ଅବଚେତନ ମନରେ ଶିଖିଯାଏ । ଏହାକୁ ଲୋକ କଥାରେ କହନ୍ତି ଉଧାର ମାଣକ ପାଞ୍ଚପା । ଏ କଥାର ତାତ୍ପର୍ଯ୍ୟ ବୁଝିନପାରି ଲୋକ କହନ୍ତି ଭାଗ୍ୟରେ ଥିଲା, କିନ୍ତୁ ସେମାନେ ଯେ ପିଲାମାନଙ୍କୁ ଭଲକଥା ଶିଖାଇ ନାହାନ୍ତି, ସେ କଥା ବୁଝନ୍ତି ନାହିଁ । ମହାଯୋଗୀ ଶ୍ରୀଅରବିନ୍ଦ କହନ୍ତି ଯେ, "ପିଲାଟିଏ ହେଲାପରେ ପିତା-ମାତା ଅଧିକ ସଂଯତ ଓ ସଚେତନ ରହିବା ଏକାନ୍ତ ଆବଶ୍ୟକ ।" ଏହା ପ୍ରକୃତରେ ଅକ୍ଷରେ ଅକ୍ଷରେ ସତ୍ୟ । ନିଜେ ସଚେତନ ନହେଲେ ପିଲାଟିର ଭବିଷ୍ୟତ ଧ୍ୱଂସ ହୋଇଯାଏ ଏବଂ ପିଲାଟି ଜୀବନରେ ସୁଖୀ



Digitized by PPRACHIN, SOA

ହୋଇପାରେ ନାହିଁ । ସୁଖ ପ୍ରକୃତରେ ବସ୍ତୁଭିତରେ ନଥାଏ ବହୁ ଅର୍ଥ ଉପାର୍ଜନରେ ନ ଥାଏ, ବଡ଼ ପଦବୀରେ ବସିବାରେ ନଥାଏ, ସୁଖ ଥାଏ ନିଜ ମନ ଭିତରେ, ମନ ଯଦି ଠିକ୍ ଭାବରେ ଗଠିତ ହୋଇନଥାଏ ତେବେ ସେ କସ୍ତୁରୀ ମୃଗପରି ଏଆଡ଼େ ସେଆଡ଼େ ଧାଇଁ ଧାଇଁ ଶେଷରେ କ୍ଳାନ୍ତ ଓ ହତାଶ ହୋଇପଡ଼େ । ଅତଏବ ନିରପେକ୍ଷ ଭାବରେ କହିଲେ ପିଲାଟିର ଜୀବନ ନଷ୍ଟ କରିଦେବା ପାଇଁ ପିତା-ମାତା ତଥା ଅନ୍ୟାନ୍ୟ ଗୁରୁଜନଙ୍କର ଅସାବଧାନତା ବହୁଭାବରେ ଦାୟୀ ହୁଏ । ମା' ସହିତ ଅନ୍ୟମାନଙ୍କର ସହଯୋଗ ରହିଲେ ଏବଂ ସମସ୍ତେ ମିଶି ପିଲାମାନଙ୍କୁ ଭଲ ବାଟରେ ନେବାପାଇଁ ପ୍ରୟାସ କଲେ ପିଲାମାନେ ସୁସ୍ଥ ନାଗରିକ ହୋଇ ବାହାରନ୍ତି । ସେମାନେ କେବଳ ନିଜର ନୁହେଁ, ନିଜ ଜାତିର, ଦେଶର ତଥା ସାରା ବିଶ୍ୱର କଲ୍ୟାଣ ସାଧନ କରିଥାନ୍ତି ।

ବ୍ୟକ୍ତିଟିଏ ମାନେ ସାମାନ୍ୟ କଥା ନୁହେଁ । ଗୋଟିଏ ବ୍ୟକ୍ତି ହେଉଛି ଗୋଟିଏ ଦୀପ, ଯିଏ କେତେ ଦୀପରେ ଆଲୋକ ସଂଯୋଗ କରିପାରେ । ଅନ୍ୟ କେତେ ଲୋକଙ୍କୁ ଆଲୋକ ଦେଖାଇପାରେ । ବ୍ୟକ୍ତି ଜୀବନ ହେଉଛି ବିଶ୍ୱ ଜୀବନର ଏକକ । ବିଶ୍ୱଜୀବନର ବିକାଶ ନିମନ୍ତେ ବ୍ୟକ୍ତି ଜୀବନର ବିକାଶ ଏକାନ୍ତ ଜରୁରୀ । ବ୍ୟକ୍ତିକୁ ଠିକ୍ ନଗଢ଼ି କେବଳ ବିଶ୍ୱଜୀବନର ବିକାଶ ହେଉ କହିବା ଅରଣ୍ୟ ରୋଦନ ପରି ଅର୍ଥହୀନ ଓ ଅକାଶକୁସୁମପରି ସ୍ଥିତିହୀନ । ଆଜି ସାରା ବିଶ୍ୱ ଚାହିଁ ବସିଛି ମଣିଷ ପଣିଆ ଥିବା ମଣିଷକୁ, ସେପରି ମଣିଷ ଆସିଲେ ପୃଥିବୀ ହେବ ସ୍ୱର୍ଗପରି ଲଳିତ କଳାମଞ୍ଜୁଳ ଓ ମଧୁମୟ । ପାର୍ଥିବ ଜୀବନ ହେବ ଅପାର୍ଥିବ ଆନନ୍ଦର ଏକ ଛନ୍ଦମୟ କାବ୍ୟ । ଦିଗ ବିଦିଗ ସୁଧା ସଂଜୀବନୀ ଧାରାରେ ସିକ୍ତ ହେବ ଓ ସୀମାହୀନ ମୂଲ୍ୟବୋଧରେ ଅଭିଷିକ୍ତ ହେବ । ବିଶ୍ୱ ଆଜି ମଣିଷ ପରି ମଣିଷମାନଙ୍କ ଆସିବା ବାଟକୁ ଚାହିଁ ବସିଛି । ସମୟକୁ ଅଳିକରୁଛି ଭଲ ମଣିଷ କିଛି ତାକୁ ଦେବାପାଇଁ । ସମୟର ଆହ୍ୱାନ ଭଲ ମଣିଷ ପାଇଁ ଅତ୍ୟନ୍ତ ଶାଣିତ ଓ ଅନୁଭବ୍ୟ । ଆଜି ପିଲାଟିକୁ ଭଲ କରି ଗଢ଼ିବାର ଅର୍ଥ ବିଶ୍ୱ ବିକାଶରେ ସହଯୋଗ କରିବା । ଏହି ସହଯୋଗ ଫଳରେ ମାନବ ଜାତିର ପ୍ରକୃତ ଅର୍ଥରେ ଐକ୍ୟ ଯାହା ଏଯାବତ୍ ପ୍ରତିଷ୍ଠିତ ହୋଇନାହିଁ ତାହା ପ୍ରତିଷ୍ଠିତ ହେବ । ଯେଉଁ ଯେଉଁ କଥା ଏହି ମାନବ ଏକତାକୁ କ୍ଷୁଣ୍ଣ କରୁଛି ତାହା ମଣିଷ ମନରୁ ଦୂରୀଭୂତ ହେଲେ ଏକତାର ସୌରରଶ୍ମି ବିଚ୍ଛୁରିତ ହେବ ।

ଆଜି ପୃଥିବୀର ରାଜନୈତିକ, ସାମାଜିକ, ଅର୍ଥନୈତିକ ଜୀବନର ପ୍ରଗତି ହୋଇଛି ଏଥିରେ ସନ୍ଦେହ ନାହିଁ । ସ୍ଥାନର ଦୂରତ୍ୱକୁ ଆଜି ଗମନାଗମନର ସୁବିଧା ହେତୁ ସହଜରେ ଓ ଅଳ୍ପ ସମୟ ମଧ୍ୟରେ ଅତିକ୍ରମ କରିହେଉଛି । ଗୋଟିଏ ଦେଶରେ ଯେଉଁ ଘଟଣା ଘଟୁଛି, ତା' ପର ମୁହୂର୍ତ୍ତରେ ଅନ୍ୟ ଦେଶରେ ତା'ର ପ୍ରତିକ୍ରିୟା ପ୍ରକାଶ ପାଉଛି । ଏସବୁ ସତ୍ତ୍ୱେ ମାନବ ଏକତା ଆସିନାହିଁ ବୋଲି ମୁକ୍ତ କଣ୍ଠରେ କହିବାକୁ ହେବ । ମଣିଷ ମନରୁ



Digitized by PPRACHIN, SOA

ହିଂସା, ଅଜ୍ଞାନତା, ମତାନ୍ତରରୁ ମନାନ୍ତର ତଥା ଅହଂକାର ଦୂର ନ ହେଲେ ସଚେତନତା ଆସିବ ନାହିଁ କି ପ୍ରକୃତ ଆଧ୍ୟାତ୍ମିକତା ଆସିବ ନାହିଁ । ଧାର୍ମିକତାରେ ନୁହେଁ ଆଧ୍ୟାତ୍ମିକତାରେ ହିଁ ମାନବ ଐକ୍ୟ ପ୍ରତିଷ୍ଠିତ ହେବ । ଆଧ୍ୟାତ୍ମିକତାରେ ମନ ପ୍ରଶସ୍ତ ହୁଏ, ଅନ୍ୟକୁ ସମ୍ମାନ-ଦେବା ଓ ବୁଝିବାର ମାର୍ଗ ସହଜ ହୁଏ । ଏଯାବତ୍ ଅପ୍ରଚଳିତ ଓ ଆଗାମୀ କାଲି ପ୍ରଚଳିତ ହେବାକୁ ଥିବା ଏହି ସଚେତନ ଆଧ୍ୟାତ୍ମିକ ଜୀବନ ଆତ୍ମପ୍ରକାଶ କରିବ ଆଗାମୀ କାଲିର ନାଗରିକମାନଙ୍କ ମାଧ୍ୟମରେ ଯେଉଁମାନେକି ଆଜି ଶିଶୁ ହୋଇ ରହିଛନ୍ତି । ଅତଏବ ଆଜିର ସମୟ ହେଉଛି ଆଗାମୀ କାଲିର ପ୍ରସ୍ତୁତିପାଇଁ ଉପଯୁକ୍ତ ସମୟ । ଏହି ସମୟର ସଦ୍‌ବ୍ୟବହାର କରିବା ଅର୍ଥ ହେଉଛି ଶିଶୁମାନଙ୍କୁ ଏବଂ କିଶୋରମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବା । ଏହି ଯଥାର୍ଥ ଶିକ୍ଷାଲାଗି ପିତାମାତା ତଥା ଅଭିଭାବକଙ୍କୁ ପ୍ରୟାସ ଓ ପ୍ରଯତ୍ନ କରିବାକୁ ହେବ । ଅଳସବିଳାସରେ ସମୟ ନକଟାଇ ଏ ଦିଗରେ ଧ୍ୟାନ ଦେବାକୁ ହେବ । ସେମାନେ ନିଜେ କଷ୍ଟ ସ୍ୱୀକାର କରି ପଢ଼ାଶୁଣା କରି ଆତ୍ମବିଶ୍ଳେଷଣ କରି ଆବଶ୍ୟକୀୟ ଜ୍ଞାନ ଆହରଣ କରିବା ଏକାନ୍ତ ଜରୁରୀ, ଏହା ଏକ ଗୁରୁ ଦାୟିତ୍ୱ । ଏ ଦାୟିତ୍ୱକୁ ଏଡ଼ାଇ ଦେବାର ଅର୍ଥ ପିଲାଙ୍କ ପ୍ରତି ଅନ୍ୟାୟ କରିବା । ସୁତରାଂ ସମାଜର କଲ୍ୟାଣ, ପରିବେଶର ସମୃଦ୍ଧିଶୀଳତା, ଦେଶର ପ୍ରଗତି ସର୍ବୋପରି ବିଶ୍ୱର ବିକାଶ ସବୁକିଛି ନିର୍ଭରଶୀଳ ଆଜି ବିଶେଷତଃ ପିତାମାତାଙ୍କ ଉପରେ । ସେମାନେ ଉଦ୍ୟମକଲେ ଆଜିର ଶିଶୁ ଓ କିଶୋରମାନେ ଆସନ୍ତା କାଲିର ନାଗରିକ ହୋଇ ନିଜେ ହସି ଏଇ ବିଶ୍ୱ ଅଧରରେ ସ୍ମିତ ହାସ୍ୟର ମାଧୁରିମା ଭରିଦେବେ ।





Digitized by PPRACHIN, SOA

# ସୁଖ ଓ ଆନନ୍ଦ

ହଜାର ହଜାର ଲୋକଙ୍କୁ ପଚାରିଲେ ସେଇ ଗୋଟିଏ ଉତ୍ତର ମିଳିବ ଯେ ସୁଖ ହେଉଛି ଜୀବନର ଲକ୍ଷ୍ୟ। ସୁଖ କ'ଣ ବୋଲି ପଚାରିଲେ ପାଖାପାଖି ସମାନ ଉତ୍ତର ମିଳିବ ଯେ ଭଲ ଖାଇବା, ଭଲ ପିନ୍ଧିବା ,ଅତ୍ୟାଧୁନିକ ଶୈଳୀରେ ନିର୍ମିତ ଘରେ ରହିବା, ବହୁ ବସ୍ତୁ ବ୍ୟବହାର କରିବା ଇତ୍ୟାଦି। ଏ ସବୁ କଥାର ମୂଳ ହେଉଛି ଅର୍ଥ। ଅର୍ଥ ଆଣିଦେବ ବସ୍ତୁ। ଆଉ ବସ୍ତୁ ଆଣିଦେବ ସୁଖସମ୍ଭୋଗ ଓ ବିଳାସ। ହଜାର ହଜାର ଲୋକଙ୍କର ଏଇ ମତ ଅମୂଳକ ନୁହେଁ କି ଅଯଥାର୍ଥ ନୁହେଁ ମାତ୍ର ଏହା ଅପୂର୍ଣ୍ଣ। ଏହା ହେଉଛି ବାହ୍ୟ ଜୀବନର ସମୃଦ୍ଧି। ଏଥି ସହିତ ଆନ୍ତଃଜୀବନର ବିକାଶ ସମନ୍ୱିତ ହେଲେ ଯେଉଁ ଜୀବନ ଆସେ ତାହା ହେଉଛି ପୂର୍ଣ୍ଣତାର ଜୀବନ। ଖାଦ୍ୟ, ବସ୍ତ୍ର, ବାସଗୃହ, ଔଷଧ, ଯଶ ପ୍ରଶଂସା ଓ ନିରାପତ୍ତା ସହିତ ବାହ୍ୟଜୀବନ ସଂପର୍କିତ ହେଲାବେଳେ ଶ୍ରଦ୍ଧା, ସ୍ନେହ, ଦୟା, କ୍ଷମା, ସମ୍ବେଦନଶୀଳତା, ସ୍ଥିତପ୍ରଜ୍ଞତା, ଆତ୍ମସନ୍ତୋଷ, ଆତ୍ମବିଶ୍ଳେଷଣ ଆନ୍ତର ଜୀବନ ସହ ସଂପର୍କିତ। ଉଭୟ ଜୀବନର ବିକାଶର ସମନ୍ୱୟରେ ବ୍ୟକ୍ତି ଜୀବନର ପୂର୍ଣ୍ଣତା ସମ୍ଭବ।

କେବଳ ବାହ୍ୟ ଜୀବନର ଉନ୍ନତିରେ ଗତିଥାଏ ମାତ୍ର ପ୍ରଗତି ନ ଥାଏ। କିଛି ସୁଖଥାଏ ଏବଂ ତା'ସହିତ କିଛି ଦୁଃଖ ମଧ୍ୟ ଥାଏ। ସୁଖ ଓ ଦୁଃଖ ପରସ୍ପର ଓତପ୍ରୋତ ଜଡ଼ିତ ହୋଇ ରହିଥାଆନ୍ତି ଫୁଲ ସହିତ ଡେମ୍ଫ ଲାଗି ରହିଲାପରି, କାୟା ସହିତ ଛାୟା ଲାଗି ରହିଲା ପରି। ସୁଖ ପାଇଁ କାମନା ବାସନା ବଢ଼େ, ବହୁ ବସ୍ତୁ, ଯଶ ପ୍ରଶଂସା ପ୍ରାପ୍ତିର ଲାଳସା ବଢେ। ଏହି ଲାଳସାର ପରିମାଣ ଉପରେ ଅପରିପୂର୍ତ୍ତି ଜନିତ ଦୁଃଖର ପରିମାଣ ନିର୍ଭର କରେ। ସୁଖର ଜୀବନରେ ଅଟକି ନ ଯାଇ ସୁଖର ଜୀବନ ସହ ଆନନ୍ଦର ଜୀବନକୁ ଯୋଡିବା ହିଁ ଜୀବନର ଯଥାର୍ଥ ଲକ୍ଷ୍ୟ।

ସୁଖ ଯାହା ଆନନ୍ଦ ତାହା ନୁହେଁ, ଅଲଗା, ଆମେ ଜାଣିନପାରି ସୁଖକୁ ଆନନ୍ଦ ଓ ଆନନ୍ଦକୁ ସୁଖ ବୋଲି କହୁ। ସୁଖ ହେଉଛି ଇନ୍ଦ୍ରିୟଗ୍ରାହ୍ୟ, ବିଶେଷତଃ ପଞ୍ଚଇନ୍ଦ୍ରିୟ ସୁଖାନୁଭବର ମାଧ୍ୟମ। ଇନ୍ଦ୍ରିୟ ଶକ୍ତିହୀନ ହୋଇଗଲେ ସୁଖାନୁଭବ କମିଯାଏ, ସୁଖର ଜୀବନ ଫିକା ପଡ଼ିଯାଏ। ମାତ୍ର ଆନନ୍ଦ ସେପରି ନୁହେଁ, ଏହା ସ୍ଥୁଳ ଇନ୍ଦ୍ରିୟ ଗ୍ରାହ୍ୟ ନୁହେଁ।



Digitized by PPRACHIN, SOA

ଏହା ଚେତନାଗ୍ରାହ୍ୟ। କବିମାନେ ସୁଖକୁ ଧୂଆଁ ସହିତ ତୁଳନା କରିଥାନ୍ତି। ସେମାନେ କଳ୍ପନା କରିଥାଆନ୍ତି ଯେ ଏହା ଆସେ ଯିବା ପାଇଁ, ଶୀଘ୍ର ଯିବା ପାଇଁ। ଏହା ବସ୍ତୁ ନୁହେଁ, ଅବସ୍ଥା। ଅବସ୍ଥା କହିବାର ଅର୍ଥ ଅସ୍ଥାୟୀ। ସୁଖ ଉପରସ୍ତରରେ ଥାଏ, ଭାସମାନ ଅବସ୍ଥାରେ ଥାଏ ମାତ୍ର ଆନନ୍ଦ ଗଭୀର ସ୍ତରରେ ଥାଏ, ଓଜନିଆ ଭାବରେ ଥାଏ।

ଏପରି କୁହାଯାଇପାରେ ଯେ ମୃତ୍ୟୁ ସହ ସୁଖର ଜୀବନ ସରିଯାଏ। ଇନ୍ଦ୍ରିୟ ନଷ୍ଟ ହୋଇଗଲେ ଇନ୍ଦ୍ରିୟ ସହ ଜଡ଼ିତ ସୁଖ ଦୁଃଖର ଅନୁଭବ, ସୁଖ ଭୋଗର ଲାଳସା, ସୁଖ ଜନିତ ଉଲ୍ଲାସ ଓ ଶିହରଣ ନଷ୍ଟ ହୋଇଯାଏ। ମାତ୍ର ଆନନ୍ଦ ସେପରି ନୁହେଁ, ଯାହାର ଭିତ୍ତି ହେଉଛି ଆତ୍ମସନ୍ତୋଷ। ଏହାର ମଧୁମୟତା ମୃତ୍ୟୁ ପରେ ସୂକ୍ଷ୍ମ ଚେତନା ସହ ମିଶି ପରପାରକୁ ଯାଇଥାଏ ବୋଲି ଦାର୍ଶନିକମାନେ କହିଥାନ୍ତି। ସୁଖଠାରୁ ଆନନ୍ଦ ଅଧିକ ସୂକ୍ଷ୍ମ, ସ୍ଥାୟୀ ଓ ଫଳପ୍ରଦ। ସୁଖର ଜୀବନ ସଫଳ ଜୀବନ ହୋଇପାରେ ମାତ୍ର ପୂର୍ଣ୍ଣ ଜୀବନ ନୁହେଁ। ଜୀବନକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ହେଲେ ଆନନ୍ଦ ଆବଶ୍ୟକ ଯାହା ମଣିଷ ପଣିଆରୁ ମିଳିଥାଏ।

ମୁଁ ଏପରି କହି ସୁଖର ଜୀବନର ବିରୋଧ କରୁନାହିଁ ମାତ୍ର ସେପରି ଜୀବନକୁ ପୂର୍ଣ୍ଣ ଜୀବନ ବୋଲି କହୁନାହିଁ। ଆଂଶିକ ଜୀବନ ବୋଲି କହୁଛି। ସୁଖର ଜୀବନ ମୁଖଶାଳା ହେଲେ ଆନନ୍ଦର ଜୀବନ ହେଉଛି ମନ୍ଦିର। ସୁଖର ଜୀବନକୁ ଅତିକ୍ରମ କରିବାକୁ ପଡ଼ିବ, ରୂପାନ୍ତର କରିବାକୁ ପଡିବ! ରୂପାନ୍ତରିତ ସୁଖ ହିଁ ଆନନ୍ଦ। 'ମୁଁ' ର ଜୀବନ, 'ମୁଁ' କେବଳ ଭଲରେ ରହିବି, 'ମୋର' ସବୁ ସୁବିଧା ହେବ, ସବୁ ଯଶ 'ମୁଁ' ପାଇବି, ସବୁ ପ୍ରଶଂସା 'ମୁଁ' ପାଇବି, ସବୁ ମଳୟ ପବନ କେବଳ 'ମୋ' ଝରକା ବାଟ ଦେଇ ମୋ ଘରକୁ ଆସିବ"- ଏପରି ଜୀବନ ସାମୟିକ ସୁଖ ଦେଇପାରେ ମାତ୍ର ଆନନ୍ଦ ଦେଇପାରିବ ନାହିଁ। ମୁଁ, ମୁଁ ସ୍ଥାନରେ 'ଆମେ' ଭାବର ବିଚାରଧାରା ଆନନ୍ଦ ଦେବାକୁ ସମର୍ଥ ହେବ। ମୁଁ ଭଲରେ ରହିବା ସହିତ ଅନ୍ୟମାନେ ଭଲରେ ରହନ୍ତୁ, ମୋର ସୁବିଧା ହେବା ସହିତ ଅନ୍ୟମାନଙ୍କର ମଧ୍ୟ ସୁବିଧା ହେଉ ଇତ୍ୟାଦି ଭାବନା ଆନନ୍ଦ ଦେଇପାରିବ। ଏଇ 'ଆମେ'ର ପରିସରରେ ରହିପାରନ୍ତି ବନ୍ଧୁବାନ୍ଧବ, ସାଇପଡ଼ିଶା, ନିଜ ଅଞ୍ଚଳର ଲୋକ, ନିଜ ରାଜ୍ୟ ତଥା ଦେଶର ଲୋକମାନେ।

ଆତ୍ମକୈନ୍ଦ୍ରିକତା ହେଉଛି ସାମୟିକ ସୁଖର ଭିତ୍ତି ଓ ଦୁଃଖର ଅସଲ କାରଣ। ଆତ୍ମପ୍ରସାରଣ ହେଉଛି ଆନନ୍ଦର ଭିତ୍ତି ଓ ଆତ୍ମସନ୍ତୋଷର କାରଣ। 'ଆମେ' ଭାବ ହିଁ ଆତ୍ମପ୍ରସାରଣର ପୁଞ୍ଜି, 'ଆମେ' ଭାବ ଆମ ଭିତରେ ଯେତେ ପରିମାଣରେ ଆସିବ, ଆମଭିତରୁ ସେତେ ପରିମାଣରେ ଲୋଭ, କ୍ରୋଧ, ଈର୍ଷା, ହିଂସା, ଛଳନା, ପ୍ରତାରଣାର



Digitized by PPRACHIN, SOA

ସମେତ ବହୁ ବଦ୍‌ଗୁଣ କମିବ। ସେତେବେଳେ ଆମେ ବୁଝିପାରିବା ଯେ ଅନ୍ୟପ୍ରତି କ୍ରୋଧ, ଈର୍ଷା, ହିଂସା, ଛଳନା ପ୍ରଭୃତି ଦ୍ୱାରା ଅନ୍ୟର ଯେତିକି କ୍ଷତି ହୁଏ, ଆମରି ତାହା ଅପେକ୍ଷା ଅଧିକ କ୍ଷତି ହୁଏ। ପାରସ୍ପରିକ ଅନୁମୋଦନ ଓ ସହନଶୀଳତା ହେଉଛି ଦୁଇଟି ଭଗବତ୍ ସଦ୍‌ଗୁଣ ଯାହାଦ୍ୱାରା ଆତ୍ମପ୍ରସାରଣ ବହୁ ଭାବରେ ସମ୍ଭବ ହୋଇଥାଏ ଓ 'ଆମେ' ଭାବଟି ସ୍ଥାୟୀ ହୋଇ ରହିପାରେ।

ଏକଥା କହିବା ଦ୍ୱାରା ମୁଁ କହୁନାହିଁ ଯେ ମଣିଷ ମଣିଷ ଭିତରେ ମତାମତର ଭିନ୍ନତା ରହିବ ନାହିଁ। ନିଜର ବିଚାର ବୁଦ୍ଧି ଅନୁସାରେ ମତଟିଏ ପ୍ରଦାନ କରିବାର ସ୍ୱାଧୀନତା ପ୍ରତ୍ୟେକଙ୍କର ରହିବା ଉଚିତ୍। ମୋ ବିଚାରରେ ଏଥିସହିତ ଭିନ୍ନ ଭିନ୍ନ ମତ ପାଇଁ ପାରସ୍ପରିକ ସମ୍ମାନବୋଧ ଏକାନ୍ତ କାମ୍ୟ। ଆତ୍ମବିସ୍ତାର ଭାବ ଦ୍ୱାରା ନିଜକୁ ନିଜ ଆୟତ୍ତରେ ରଖିହେବ ଅର୍ଥାତ୍ କ୍ରୋଧ, ଲୋଭ, ଈର୍ଷା, ହିଂସା ସମେତ ବହୁ ବଦ୍‌ଗୁଣ କ୍ରମଶଃ ଆୟତ୍ତକୁ ଆମର ଆସିଯିବେ। ବଦ୍‌ଗୁଣ ସବୁକୁ ଦୂର କରିବା ପାଇଁ ଔଷଧ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ। ସଚେତନତା ଓ ଆତ୍ମପ୍ରସାରଣ ହିଁ ଏଥିପାଇଁ ଅସଲ ଔଷଧ। ଅଭ୍ୟାସର ଅନୁପାତ ଦ୍ୱାରା ଏହି ଔଷଧ ପ୍ରୟୋଗ କଲେ, ଏଥିରୁ ଯଥାର୍ଥ ଉପକାର ମିଳିବ। ବାହ୍ୟ ଜୀବନର ସଫଳତା ଓ ଅନ୍ତଃ ଜୀବନର ସୁସ୍ଥତାର ମିଶ୍ରଣରେ ଯେଉଁ ଜୀବନ ନିର୍ମିତ ହେବ ତାହା ହେଉଛି ପୂର୍ଣ୍ଣତାର ଜୀବନ ଓ ଆନନ୍ଦର ଜୀବନ। ସେଇ ଜୀବନର ଆଗମନ ପାଇଁ ଅଭିନନ୍ଦନିକା ଆଗପରି ଜଣେ ଜଣେ ନୁହେଁ ଆଜିଠାରୁ ସମସ୍ତେ ମିଶି ଗାଇବା।





Digitized by PPRACHIN, SOA

# ବ୍ୟକ୍ତି ଓ ବିଶ୍ୱ ପ୍ରକୃତି

ପ୍ରକୃତି ହେଉଛି ଭଗବାନଙ୍କର ବାହ୍ୟତମ ବ୍ୟାବହାରିକ ରୂପ । ସେ ବିଶ୍ୱବିଧାତାଙ୍କର ଅଭିଳାଷକୁ ପୂର୍ଣ୍ଣ କରିବା ନିମନ୍ତେ ଅହରହ କ୍ରିୟାରତ। ବିଶ୍ୱନିୟନ୍ତାଙ୍କର ଏକ ବିରାଟ ଦାୟିତ୍ୱ ସେ ବହନ କରିଚାଲିଛି। ତା'ର କ୍ଳାନ୍ତି ନାହିଁ କି ବିରକ୍ତି ନାହିଁ । ଅସୀମ ଧୈର୍ଯ୍ୟର ସହ ସେ ଆଗକୁ ଯିବାକୁ ପ୍ରୟାସ କରୁଛି । ଆମ ମନରେ ପ୍ରଶ୍ନ ଆସିବ ଯେ ସେହି ଦାୟିତ୍ୱଟି କି ପ୍ରକାର ଦାୟିତ୍ୱ। ଉତ୍ତରରେ କୁହାଯାଇ ପାରିବ ଯେ ଭଗବାନଙ୍କର ପୂର୍ଣ୍ଣପ୍ରକଟନ ହିଁ ସେ ଦାୟିତ୍ୱର ଅନ୍ତର୍ଭୁକ୍ତ। ପୂର୍ଣ୍ଣ ପ୍ରକଟନ ଅର୍ଥ ସୃଷ୍ଟି ଓ ସ୍ରଷ୍ଟାଙ୍କୁ ଏକାକାର କରାଇବା। ଭଗବାନଙ୍କର ରୂପ,ରସ,ଗନ୍ଧ, ଛନ୍ଦ,ସବୁ କିଛିକୁ ପରିପୂର୍ଣ୍ଣ ଭାବରେ ଏହି ସୃଷ୍ଟିରେ ପ୍ରମୂର୍ତ୍ତ କରାଇବା, ଏଥି ନିମନ୍ତେ ନିରଳସ ଭାବରେ ସୃଷ୍ଟିର ସର୍ଜନାକାଳରୁ ପ୍ରକୃତି କ୍ରିୟାଶୀଳ ହୋଇ ରହିଛି।

ଭଗବାନଙ୍କର ମଧୁର ହସକୁ ଫୁଟାଇବା ପାଇଁ ପ୍ରକୃତି ଫୁଲମାନଙ୍କୁ ଫୁଟାଉଛି। ଫୁଲର ହସ ଭଗବାନଙ୍କର ହସ ସହିତ ସମକକ୍ଷ ହୋଇ ପାରୁ ନାହିଁ ବୋଲି ତାକୁ ମଉଳାଇ ଦେଇ ପୁଣି ନୂଆ ଫୁଲ ଫୁଟାଉଛି। ପ୍ରୟାସ ଓ ପ୍ରଚେଷ୍ଟାରୁ ସେ ବିରତ ହୋଇନାହିଁ। କେତେକେତେ ସୁବାସ ସେ ଭରି ଦେଇଛି ଫୁଲର ପାଖୁଡ଼ାରେ, ଫୁଲର କେସରରେ। ଭଗବାନଙ୍କର ତନୁର ସୁବାସକୁ ପ୍ରକଟକରାଇବା ପାଇଁ ପ୍ରକୃତିର ଏହି ପ୍ରୟାସ ନିରନ୍ତର ଜାରି ରହିଛି। ସେହି ସୁବାସ ପ୍ରକଟ ନ ହେଲା ପର୍ଯ୍ୟନ୍ତ ଏହି ପ୍ରୟାସ ଚାଲୁ ରହିବ ଓ ପ୍ରତିଦିନ ନୂଆନୂଆ ଫୁଲ ଫୁଟୁଥିବ। ବନ ଫୁଲର ବାସ ଓ ଉପବନ ଫୁଲର ବାସକୁ ନେଇ କେତେ ପରୀକ୍ଷା ନିରୀକ୍ଷା ପ୍ରକୃତି କରି ଚାଲିଛି, ତାହା ଅନୁମାନ କଲେ ବିସ୍ମିତ ହେବାକୁ ପଡେ।

ମାଟି ହୋଇ କେତେ ସହନଶୀଳା ହୋଇଛି ପ୍ରକୃତି, ପବନ ହୋଇ କେତେ ପ୍ରବହମାନ ହୋଇଛି। ଜଳ ହୋଇ କେତେ ପାଳନ କରିଛି ସଭିଙ୍କୁ। ଆଲୋକ ହୋଇ କେତେ ଜୀବନ ଶକ୍ତି ଭରି ଦେଇଛି ସବୁଠାରେ। ଜୀବ ପାଇଁ ଅମ୍ଳଜାନ ଯୋଗାଇ ଦେଇଛି ପୁଣି ଗଛପତ୍ର ପାଇଁ ଅଙ୍ଗାରକାମ୍ଳ ଯୋଗାଇ ଦେଇଛି, ମେଘ ହୋଇ ଜଳ ଦେଇଛି ତ ସୂର୍ଯ୍ୟଚନ୍ଦ୍ର ହୋଇ ଆଲୋକ ପ୍ରଦାନ କରୁଛି। ସୃଷ୍ଟିର ସୁରକ୍ଷା ପାଇଁ ଅହରହ ତା'ର ପ୍ରଯତ୍ନକୁ ନିରେଖି ଦେଖିଲେ, ତା'ପାଦ ତଳେ ଆଭୂମପ୍ରଣାମ ନିମନ୍ତେ ମଥା ସ୍ୱତଃ ନଇଁପଡ଼େ। ସଭିଙ୍କୁ କେତେ ଭଲ ପାଇବାର ଗନ୍ତାଘର ଏ ପ୍ରକୃତି, ତାହା ଭାବିଲେ ମନରେ ଭାବାନ୍ତର ଆସେ।



Digitized by PPRACHIN, SOA

କେବଳ ସୁରକ୍ଷା ନୁହେଁ ପୃଥିବୀକୁ ସ୍ୱର୍ଗ କରିବା ପାଇଁ, ଦେବତାଙ୍କର ଲୀଳାନଗରୀ କରିବା ପାଇଁ ପ୍ରକୃତିର ପବିତ୍ର ପ୍ରୟାସ ଅତୁଟ ରହିଛି। ଏହି ବିରାଟ କାର୍ଯ୍ୟରେ ସେ ସହାୟତା ଲୋଡୁଛି ମାନବ ସନ୍ତାନମାନଙ୍କର, ତା'ର ଅନେକ ଆଶା, ଆସ୍ଥା, ବିଶ୍ୱାସ ଓ ଭରସା ଅଛି ମାନବ ଶିଶୁ ଉପରେ। ମାନବ ତା'ର ଶ୍ରେଷ୍ଠ ସୃଷ୍ଟି ଓ ତା'ଦୃଷ୍ଟିରେ ଅପୂର୍ବ ସାମର୍ଥ୍ୟର ଅଧିକାରୀ। ମାତ୍ର ବିଡମ୍ବନାର ବିଷୟ ଏହି ଯେ ମାନବ ଶିଶୁ ଏହି ବିଶ୍ୱାସ ଓ ଭରସାର ପାତ୍ର ହୋଇପାରୁ ନାହିଁ। ସେ ସହଯୋଗ ତ କରୁନାହିଁ, ବରଂ ଅସହଯୋଗ କରିବାକୁ ଆଗେଇ ଆସୁଛି। ପ୍ରକୃତି ଉପରେ ନାନା ପ୍ରକାରର ଅତ୍ୟାଚାର କରୁଛି ଏବଂ ପ୍ରକୃତିର ବିମଳ ପ୍ରୟାସକୁ ପଣ୍ଡ କରିଦେବାରେ ପ୍ରମୁଖ ଭୂମିକା ଗ୍ରହଣ କରୁଛି। ଧ୍ୱଂସ କରିଦେବାକୁ, ନଷ୍ଟ କରିଦେବାକୁ ସେ ବୀରତ୍ୱ ବୋଲି ବିଚାର କରୁଛି। କେମିତି ଓ କେଉଁଠି ଏ ଭାବନା ମାନବ ଶିଶୁ ଭିତରେ ସୃଷ୍ଟି ହେଉଛି, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି। ଭାଙ୍ଗିଦେବାର ମାନସିକତା ଏକ ସଇତାନୀ ବୁଦ୍ଧିରୁ ଆସୁଛି। ଏଇ ସଇତାନୀ ବୁଦ୍ଧିର ମୂଳ ରହିଛି ଅହଂରେ। ସମସ୍ତ ପ୍ରକାର ନକାରାତ୍ମକତାର ମୂଳ ହେଉଛି ଅହଂ। ନିଜକୁ ଜାହିର କରିବାର ମନୋବୃତ୍ତି ତା'ଭିତରେ ଲୁଚି ରହିଛି। ପ୍ରକୃତି ଉପରେ ଆଧିପତ୍ୟ ବିସ୍ତାର ପୂର୍ବକ ପ୍ରକୃତିକୁ ହାତମୁଠାରେ ରଖିବାର ପ୍ରଚେଷ୍ଟା ମଣିଷକୁ ରାକ୍ଷସ କରିପକାଉଛି। ପ୍ରକୃତିର ବିରୋଧରେ ଯାଇ ସେ ଜାଣିପାରୁ ନାହିଁ ନିଜର କ୍ଷତି କରୁଛି ବୋଲି। ସେ ନିଜେ ନିଜର ଓ ସମଗ୍ର ବିଶ୍ୱର ଶତ୍ରୁ ସାଜୁଛି, ଜାଣିପାରୁ ନାହିଁ। 'ଯୁଦ୍ଧଂ ଦେହି' ଆହ୍ୱାନରେ ମାଟି, ପାଣି, ପବନ, ଗଛପତ୍ର, ପଶୁପକ୍ଷୀ, ସୂର୍ଯ୍ୟଚନ୍ଦ୍ର, ଗ୍ରହ ତାରା କେହି ସମ୍ମତି ପ୍ରକାଶ କରନ୍ତି ନାହିଁ, କେବଳ ମାନବ ପ୍ରଜାତି କରିଥାଏ। ଭ୍ରମ ବଶତଃ ମଣିଷ ଭାବେ ଯେ ଏହା ହେଉଛି ପ୍ରଗତିର ଚିହ୍ନ ଓ ଶାନ୍ତିର ଦ୍ୟୋତକ, ସୁଖରେ କାଳାତିପାତ କରିବାର ବଡ଼ ଅସ୍ତ୍ର ଓ ମାଧ୍ୟମ।

ଟିକିଏ ନିରେଖି ଦେଖିଲେ ବୁଝିହେବ ଯେ ମଣିଷ ସବୁ ଜାଣି ମଧ୍ୟ ଜାଣୁନାହିଁ, ବୁଝି ମଧ୍ୟ ବୁଝୁନାହିଁ। ମନର ଏଇ ଅବସ୍ଥା ପାଇଁ ଔଷଧ ବା କାହିଁ? ନିଜେ ନବୁଝିଲେ କିଏ ବା ବୁଝାଇବ-ଏ ତ ଏକ ବିରାଟ ସମସ୍ୟା। ମଣିଷ ମନରେ ଦୟା, ସ୍ନେହ କି ଶ୍ରଦ୍ଧା ନାହିଁ ବିଶ୍ୱ ପ୍ରକୃତି ପାଇଁ କି ବିଶ୍ୱ ପାଇଁ। ସ୍ୱାମୀ ବିବେକାନନ୍ଦ ସେଦିନ ମର୍ମାହତ ହୋଇଥିଲେ ଏଇ ଶ୍ରଦ୍ଧାର ଅଭାବ ଦେଖି। ସେ ହତବାକ୍ ହୋଇଥିଲେ ଆଉ କହିଥିଲେ ଯେ ମଣିଷ ମନରେ ବିଶ୍ୱପ୍ରକୃତି ଏବଂ ବିଶ୍ୱପାଇଁ ଶ୍ରଦ୍ଧା ନଆସିଲା ପର୍ଯ୍ୟନ୍ତ କିଛି ଯଥାର୍ଥ ଅଗ୍ରଗତି ଘଟିବ ନାହିଁ। ଶ୍ରଦ୍ଧା ଏପରି ଏକ ଶବ୍ଦ ଯାହାର ଇଂରାଜୀ ପ୍ରତିଶବ୍ଦ ନାହିଁ ବୋଲି ସେ କହିଥିଲେ।



Digitized by PPRACHIN, SOA

ସଭ୍ୟତାର ପ୍ରଗତିରେ ପରିପନ୍ଥୀ ନୁହେଁ ଶ୍ରଦ୍ଧା। ଶ୍ରଦ୍ଧା ରହିଲେ ସଭ୍ୟତାର ପ୍ରଗତି ହେବ ବରଂ ଅଧିକରୁ ଅଧିକ ହେବ କହିଲେ ଅତ୍ୟୁକ୍ତି ହେବନାହିଁ। ଶ୍ରଦ୍ଧାରୁ ଭକ୍ତି, ଜ୍ଞାନ, ବିଶ୍ୱାସ ଓ ଆତ୍ମୀୟତାର ସୃଷ୍ଟି। ଗୋଟିଏ ବାକ୍ୟରେ କୁହାଯାଇପାରିବ ଯେ ଶ୍ରଦ୍ଧା ହିଁ ସମସ୍ତ ସକାରାତ୍ମକତାର ଚାବିକାଠି।

ଶ୍ରଦ୍ଧାର ଆରମ୍ଭ ହେବ ଜଣରୁ, ସଞ୍ଚରିଯିବ ଗଣ ପର୍ଯ୍ୟନ୍ତ। ବିନ୍ଦୁରୁ ଆରମ୍ଭ ହୋଇ ସିନ୍ଧୁର ପରିକଳ୍ପନା। ବିନ୍ଦୁ ବଢ଼ି ବଢ଼ି ସିନ୍ଧୁରେ ରୂପାନ୍ତରିତ ହେବ। ବିନ୍ଦୁ ନାହିଁ ତ ସିନ୍ଧୁ ନାହିଁ। ଏଥିରୁ ବୁଝିହେବ ଯେ ସିନ୍ଧୁ ପାଇଁ ବିନ୍ଦୁର ମହତ୍ତ୍ୱ କେତେ ଅଧିକ।

ଅତୀତରେ ସିନ୍ଧୁ ଉପରେ ଅର୍ଥାତ୍ ଗଣ ଉପରେ ଅର୍ଥାତ୍ ସମାଜ ଉପରେ ଗୁରୁତ୍ୱ ପ୍ରଦାନ କରାଯାଇଥିଲା। ସଂପ୍ରତି ବିନ୍ଦୁ ଉପରେ ଅର୍ଥାତ୍ ବ୍ୟକ୍ତି ଉପରେ ଗୁରୁତ୍ୱ ଦିଆଯାଉଛି। 'ସମାଜ ଠାରୁ ବ୍ୟକ୍ତି ବଡ଼'- ଏକଥା ବର୍ତ୍ତମାନ ସ୍ୱୀକୃତ ହେଲାଣି। ବାସ୍ତବରେ ବ୍ୟକ୍ତି ଯଥାର୍ଥରେ ବ୍ୟକ୍ତିତ୍ୱସଂପନ୍ନ ହେଲେ ସମାଜ ଆପେ ଆପେ ଦୃଢ଼ ହେବ।

ବର୍ତ୍ତମାନ ବୁଝିବାର ସମୟ ଆସିଛି। ସମାଜକୁ ବା ଅନ୍ୟମାନଙ୍କୁ ଦୋଷ ଦେବାର ସମୟ ଆଉ ନାହିଁ। ଏହି ପରିପ୍ରେକ୍ଷୀରେ ମହାଯୋଗୀ ଶ୍ରୀଅରବିନ୍ଦଙ୍କ ଉକ୍ତି ସ୍ମରଣକୁ ଆସେ ଯେ "One man's perfection still can save the whole world"। ଗୋଟିଏ ବ୍ୟକ୍ତି ବୋଲି ସେ ହେୟ ନୁହେଁ, ସାମାନ୍ୟ ନୁହେଁ। ଗୋଟିଏ ବୈଜ୍ଞାନିକର ଉଦ୍ଭାବନରେ କୋଟି କୋଟି ଲୋକ ଉପକୃତ ହୁଅନ୍ତି। ଗୋଟିଏ ଗୁରୁଙ୍କ ଶକ୍ତିରେ କୋଟି କୋଟି ଶିଷ୍ୟ ଚେତନାରେ ଅଗ୍ରଗତି କରନ୍ତି। ଗୋଟିଏ ମଞ୍ଜିର ଗଛରୁ କୋଟି କୋଟି ଗଛର ମଞ୍ଜି ସମ୍ଭବ ହୋଇପାରେ। ବ୍ୟକ୍ତି ଭିତରେ ସକାରାତ୍ମକ ଚେତନା ଓ ସଯତ୍ନ ପ୍ରୟାସ ଆସିଲେ ବିଶ୍ୱ ପ୍ରକୃତି ଦ୍ୱାରା ତ୍ୱରାନ୍ୱିତ ହୋଇଯିବ ବିଶ୍ୱର ବିକାଶ। ବିଶ୍ୱନିୟନ୍ତାଙ୍କର ଶକ୍ତିରେ ଏହି ବିକାଶ ବହୁଗୁଣିତ ହୋଇଯିବ ଏବଂ ଏଇ ବିଶ୍ୱ ହୋଇଯିବ ଦିବ୍ୟ ଚେତନାର କ୍ରୀଡ଼ାଶିବିର।





Digitized by PPRACHIN, SOA

# ଶିକ୍ଷା ଓ ମୂଲ୍ୟବୋଧ

ଶିକ୍ଷାର ଦୁଇଗୋଟି ଦିଗ ରହିଛି।ଗୋଟିଏ ହେଉଛି ଜୀବିକା ଅର୍ଜନ ଏବଂ ଅନ୍ୟଟି ହେଉଛି ଚରିତ୍ର ଗଠନ। ଚରିତ୍ର ଗଠନର ଅର୍ଥ ସାଧୁ ସନ୍ୟାସୀ ହୋଇଯିବା ନୁହେଁ ବରଂ ଅର୍ଜନ କରାଯାଇଥିବା ଜ୍ଞାନର ଯଥାର୍ଥ ପ୍ରୟୋଗ କରିବା। ସମ୍ବାଦ ସଂଗ୍ରହ ଯାହା, ଜ୍ଞାନ ଅର୍ଜନ ତାହା ନୁହେଁ। ସମ୍ବାଦ ସଂଗ୍ରହର ଭିତ୍ତିରେ ଜୀବନ ଓ ଜଗତ ସମ୍ବନ୍ଧରେ ଯେଉଁ ଚିନ୍ତା ଓ ଚେତନା ଜାଗ୍ରତ ହୁଏ, ତାହା ହେଉଛି ଜ୍ଞାନ। ସମ୍ବାଦ ସଂଗ୍ରହ କେବଳ ପାଠ୍ୟକ୍ରମ ଶ୍ରେଣୀଗୃହରେ ହୁଏ ନାହିଁ। ଏଥିସହିତ ପରଂପରାରୁ ମାଧ୍ୟମରେ ନିଜର ଅଭିଜ୍ଞତାରୁ, ଅନ୍ୟମାନଙ୍କର ଅନୁଭବରୁ ସଂଗଠିତ ହେବା ସହିତ ନିଜର ଅଭିଜ୍ଞତା ଗୁରୁହୋଇ ବହୁ ଶିକ୍ଷା ଦେଇଥାଏ, ଯଥାର୍ଥରେ ଉପଯୁକ୍ତ ମାର୍ଗ ଦର୍ଶନ କରିଥାଏ। ତେଣୁ ତ କୁହାଯାଏ 'ମଣିଷ ଠିକିଲେ  ଶିଖେ, ଅନ୍ଧ ଥରେ ବାଡ଼ି ହଜାଏ'। ଅନ୍ୟମାନଙ୍କର ଉପଦେଶ ଓ ଉଦାହରଣ ଶିକ୍ଷା ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥାଏ। ତେବେ ଉପଦେଶଠାରୁ ଉଦାହରଣ ଅଧିକ ଭାବରେ ଫଳପ୍ରଦ ହୋଇଥାଏ। ଶିକ୍ଷା ଦିଗରେ ଶାସ୍ତ୍ର ଓ କାଳ (ସମୟ)ର ଅବଦାନ ମଧ୍ୟ ଯଥେଷ୍ଟ ଅଧିକ। ମୋଟ ଉପରେ ଶିକ୍ଷା କହିଲେ କେବଳ ବହିପଢ଼ା, ବହିପାଠର ସ୍ମରଣ, ପରୀକ୍ଷା, ପ୍ରମାଣ ପତ୍ର(ସାର୍ଟିଫିକେଟ) ନୁହେଁ,ଏହାସହିତ ଆତ୍ମବିଶ୍ଳେଷଣ, ଜୀବନର ଅନୁଶୀଳନ, ପରିବେଶର ଅନୁଧ୍ୟାନ, ଅନ୍ୟଠାରୁ ଭଲ କଥା ଗ୍ରହଣ ଇତ୍ୟାଦି ସମନ୍ୱିତ ହେବା ଆବଶ୍ୟକ। ଡ଼ିଗ୍ରୀର ପରିମାଣ ଉପରେ ଶିକ୍ଷା ନିର୍ଭର କରେ ନାହିଁ, ବରଂ ଜିଜ୍ଞାସାର ପରିମାଣ ଉପରେ ଶିକ୍ଷା ନିର୍ଭର କରେ। ଜିଜ୍ଞାସାର ଅର୍ଥ କେବଳ ଜାଣିବାର ଇଚ୍ଛା ନୁହେଁ, ଏଥି ସହିତ ବୁଝିବାର ଇଚ୍ଛା ଓ ପ୍ରୟୋଗ କରିବାର ଇଛା ସଂଯୁକ୍ତ। ଜାଣିବାର ଇଚ୍ଛା ସ୍ଥାନିତ ହୁଏ ଉଦାହରଣ ଓ ଚେତନାର ଉତ୍ତରଣର ଭିତ୍ତିରେ। ଆଉ ପ୍ରୟୋଗ କରିବାର ଇଚ୍ଛା ଉପସ୍ଥାପିତ ହୋଇଥାଏ ସ୍ଥାନ, କାଳ ଓ ପାତ୍ରର ଭିତ୍ତିରେ। ଏଇ ତିନିକଥା ଅଭ୍ୟାସର ଭିତ୍ତିଉପରେ ପ୍ରତିଷ୍ଠିତ ହୋଇଥାଏ।

ଜୀବିକା ଅର୍ଜନ ମୂଲ୍ୟ ଉପରେ ଗୁରୁତ୍ୱ ଦେଲାବେଳେ ଚରିତ୍ର ଗଠନ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦେଇଥାଏ। ଜୀବନ ବଞ୍ଚିବା ପାଇଁ ମୂଲ୍ୟ ଦରକାର ଏବଂ ଜୀବନ ବଢ଼ିବା ପାଇଁ ମୂଲ୍ୟବୋଧ ଦରକାର। ବଞ୍ଚିବା ଓ ବଢ଼ିବା ଉଭୟର ସମାବେଶରେ ଜୀବନର ସାର୍ଥକତା ଆସେ।



Digitized by PPRACHIN, SOA

ଆଜି କାଲିର ଶିକ୍ଷାଧାରାରେ ବଞ୍ଚିବାର କଥାଟି ଅଛି ମାତ୍ର ବଢ଼ିବାର କଥାଟି ବିଶେଷ ଭାବରେ ନାହିଁ। ମୂଲ୍ୟରେ ଡ଼ିଗ୍ରୀର ମାପ ହଉଅଛି, ଜୀବନର ମାପ ହେଉଅଛି। ମୂଲ୍ୟଦ୍ୱାରା ଜୀବନର ଏକ ଅଂଶ ମାତ୍ର ମାପି ହେଉଛି, ସବୁ ଅଂଶ ମାପିହେଉ ନାହିଁ- ଏକଥା ବୁଝାପଡୁ ନାହିଁ। ତେଲ ଲୁଣର ଜୀବନଟିକୁ ମୂଲ୍ୟଦ୍ୱାରା ମାପି ହେଉଛି ସତ ମାତ୍ର ଜୀବନର ଅନ୍ୟ ଦିଗଗୁଡ଼ିକ ଅଣଦେଖା ହୋଇ ରହିଯାଉଛି। ତେଲ ଲୁଣର ଜୀବନ ହେଉଛି ବ୍ୟକ୍ତିଗତ ଜୀବନ, ଏହା ବ୍ୟତୀତ ଆମର ରହିଛି ସାମାଜିକ ଜୀବନ, ରାଷ୍ଟ୍ରୀୟ ଜୀବନ ଏବଂ ଆନ୍ତର୍ଜାତିକ ଜୀବନ ମୂଲ୍ୟବୋଧ ଭିତ୍ତିରେ ଏଇ ତିନିଗୋଟି ଜୀବନ ଅଧିକରୁ ଅଧିକ ପ୍ରତିଷ୍ଠିତ ହୋଇଥାଏ। ସମାଜ ଦ୍ୱାରା ମୁଁ ଯେତିକି ଉପକୃତ ହୋଇଛି, ସମାଜ ମୋ ଦ୍ୱାରା: ତହିଁରୁ ଅଧିକ ଉପକୃତ ହେଉ'-ଏହି ଚିନ୍ତାଧାରାର ଜୀବନ ହି ସୁସ୍ଥ ସମାଜିକ ଜୀବ**ନର ପ୍ରତୀକ**। ସମାଜକୁ ବହୁତ କିଛି (ଯେତେବେଶୀ ସମ୍ଭବ) ଦେଇ ଦେବାର ମାନ**ସିକତା** ହି ସୁସ୍ଥ ସାମାଜିକ ଜୀବନର ମାନଦଣ୍ଡ। ରାଷ୍ଟ୍ରୀୟ ଜୀବନ କହିଲେ ରାଜନୀତିରେ ଯୋଗଦେବା କଥା ଏଠାରେ କୁହାଯାଉନାହିଁ। ରାଷ୍ଟ୍ରୀୟ ଜୀବନର ମାନଦଣ୍ଡ ହେଉଛି ଦେଶାତ୍ମବୋଧର ମନୋବୃତ୍ତି। 'ଏ ରାଷ୍ଟ୍ର ମୋର, ମୁଁ ଏ ରାଷ୍ଟ୍ରର'-ଏହି ଭାବ ହିଁ ରାଷ୍ଟ୍ରୀୟ ଜୀବନର ମୂଳକଥା। ବିଶ୍ୱ ନାଗରିକତ୍ୱ ହିଁ ଆନ୍ତର୍ଜାତିକ ଜୀବନର ମୂଳମନ୍ତ୍ର। ନିଜର ସଂସ୍କୃତିକୁ ଭୁଲି 'ମୁଁ ଏଇ ବିଶ୍ୱର, ମୁଁ ଏଇ ବିଶ୍ୱର' କହି ବୁଲିବା ବିଶ୍ୱ ନାଗରିକତ୍ୱ ନୁହେଁ। ବରଂ ନିଜମାଟିରେ ଦମ୍ଭରେ ଠିଆ ହୋଇ ଚାରି ଦିଗରୁ ଭଲ ଭଲ କଥା ସଂଗ୍ରହ କରି ନିଜକୁ ସମୃଦ୍ଧ କରିବାର ମନୋଭାବ. ହିଁ ବିଶ୍ୱ ନାଗରିକତ୍ୱର ପ୍ରମୁଖ ଲକ୍ଷଣ । ଏହା ପ୍ରତ୍ୟେକ ଦେଶ ପାଇଁ ପ୍ରଯୁଜ୍ୟ। ଉଦାହରଣ ସ୍ୱରୂପ ଭାରତୀୟଟିଏ ଭାରତମାଟିରେ ଦମ୍ଭରେ ଠିଆ ହୋଇ ଅନ୍ୟ ଆଡୁ ଭଲ ଭଲ କଥା ଆହରଣ କରିବାର ମନୋବୃତ୍ତିରେ ବିଶ୍ୱନାଗରିକତ୍ୱ ନିହିତ ରହିଛି। ସେହିପରି ଫରାସୀଟିଏ ଫ୍ରାନ୍ସ ମାଟିରେ ଦମ୍ଭରେ ଛିଡ଼ା ହୋଇ ଅନ୍ୟଆଡୁ ଭଲକଥା ସଂଗ୍ରହ କରି ନିଜକୁ ଋଦ୍ଧିମନ୍ତ କରିବାର ଚେତନା ହିଁ ଜଗତୀକରଣର ଅସଲ ମନ୍ତ୍ର।

ନିଜଠାରୁ ନିଜକୁ ସାନ ବା ବଡ଼ ମନେ ନକରିବା, ପରିବାରରେ ସାନମାନଙ୍କୁ ଶ୍ରଦ୍ଧା ଓ ବଡ଼ମାନଙ୍କୁ ସମ୍ମାନ ଜଣାଇବା, ସମାଜରେ ପରସ୍ପର ସହିତ ସୁସଂପର୍କ ରଖିବା, ଆମ ଦେଶର ସମୃଦ୍ଧି ଓ ସମ୍ମାନ ବୃଦ୍ଧିରେ ଜାଗ୍ରତ ଯବାନ ପରି ସଦାସଚେତନ ରହିବା, ଆମ ବିଶ୍ୱ ବାରୁଦଗନ୍ଧରୁ ମୁକ୍ତ ହୋଇ ଭ୍ରାତୃତ୍ୱର ଫୁଲବାସରେ ଯୁକ୍ତ ହେଉ ବୋଲି ଅତିକମ୍‌ରେ ପ୍ରବଳ ଶୁଭେଚ୍ଛା ରଖିବା ଇତ୍ୟାଦି ଇତ୍ୟାଦି ମାନସିକତା ଆଜିର ପ୍ରାଥମିକ ଆବଶ୍ୟକତା। ଏଇ ମୂଲ୍ୟବୋଧର କଥା ଯେ କେବଳ ଆମ ପାଇଁ ଆବଶ୍ୟକ ତା'ନୁହେଁ, ସାରା ପୃଥିବୀର ପ୍ରତ୍ୟେକ ଦେଶର ପ୍ରତ୍ୟେକ ବ୍ୟକ୍ତି ପାଇଁ ଆବଶ୍ୟକ।



Digitized by PPRACHIN, SOA

ବିଜ୍ଞାନ ଦ୍ୱାରା ବାହାର ବିଶ୍ୱର ଦୂରତା କମିଯାଇଛି, ମାତ୍ର କୌଣସି ବାଟରେ ଭିତର ବିଶ୍ୱ ଏ ପର୍ଯ୍ୟନ୍ତ ଏକ ହୋଇନାହିଁ। ବହିଃଜଗତୀକରଣରେ ପ୍ରମୁଖ ଭୂମିକା ନିମନ୍ତେ ବିଜ୍ଞାନ ଓ ବୈଜ୍ଞାନିକମାନଙ୍କୁ ଅନେକ ଅନେକ କୃତଜ୍ଞତା। ତେବେ ଆନ୍ତଃଜଗତୀକରଣ ନଆସିଲେ ଜଗତୀକରଣର ପୂର୍ଣ୍ଣତା ଆସିବ ନାହିଁ। ଆନ୍ତଃଜଗତୀକରଣ ପାଇଁ ମଣିଷ ମନର ଉଦାରତା, ପ୍ରସାରତା ସର୍ବୋପରି ମାନବିକ ମୂଲ୍ୟବୋଧର ଆବଶ୍ୟକତା ଏକାନ୍ତ ଜରୁରୀ। ଏହି ଆବଶ୍ୟକତା କେବଳ ଶିକ୍ଷାରେ ମୂଲ୍ୟ ସହ ମୂଲ୍ୟବୋଧ ସମନ୍ୱିତ ହେଲେ ପୂରଣ ହୋଇପାରିବ।





Digitized by PPRACHIN, SOA

# ମାତୃତ୍ୱର ବର୍ଣ୍ଣବିଭା

ଖାଇବାକୁ ବାଢ଼ିଦେଇ ଜଳଖିଆ ସଜାଡ଼ି ସ୍କୁଲକୁ ପଠାଇ ଦେଲେ ମାଆଙ୍କର କର୍ତ୍ତବ୍ୟ ସରେ ନାହିଁ, ବରଂ ଆରମ୍ଭ ହୁଏ। କେଉଁଠାରେ ସରେ ତାହା ଏ ପର୍ଯ୍ୟନ୍ତ କେହି ଜାଣନ୍ତି ନାହିଁ। ମାଟିରୁ ଆକାଶ ପର୍ଯ୍ୟନ୍ତ ଗତିପଥ ତା'ର ବିସ୍ତୃତ। ମାଆ ହେବା ଆଗରୁ ଥାଏ ଦୁଇଟି ଆଖି, ମାତ୍ର ମାଆ ହେବା ପରେ ଆଉ ଗୋଟିଏ ଆଖି ତିଆରି ହୁଏ, ତାହା ଏକ **ସୂକ୍ଷ୍ମ ଆଖି।** ସେଇ ସୂକ୍ଷ୍ମ ଆଖିଟି ଅଧିକ ଭାବରେ ଉଦ୍ଦିଷ୍ଟ ଥାଏ ପିଲାଟି ପାଇଁ। ଆଗରୁ ଥାଏ **ଦୁଇଟି କାନ,** ମାତ୍ର ମାଆ ହେବା ପରେ ଆଉ ଗୋଟିଏ କାନ ସୃଷ୍ଟି ହୁଏ, ତାହା ଏକ **ସୂକ୍ଷ୍ମ କର୍ଣ୍ଣ।** ସେ ଆଖିରେ ଦେଖିହୁଏ ପିଲାର ଭିତର, ଆଉ ସେ କାନରେ ଶୁଣିହୁଏ ପିଲାର ମନର କଥା, ହୃଦୟର ବାର୍ତ୍ତା। ପିଲାଟି ଯେତେ ବଢୁଥାଏ, ସେ ଆଖିର ଶକ୍ତି ସେତେ ବଢୁଥାଏ, ସେ କାନର ଶକ୍ତି ସେତେ ବଢୁଥାଏ। ସେଇ ଆଖିଟି ପିଲା ସହିତ ବିଦ୍ୟାଳୟକୁ ଯାଏ, ସେଇ କାନ ପିଲା ସହିତ ବିଦ୍ୟାଳୟକୁ ଯାଏ। କେବଳ ବିଦ୍ୟାଳୟକୁ ନୁହେଁ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟକୁ ମଧ୍ୟ ଯାଏ। ସେ ଆଖି ଦେଖିପାରେ ସେଠାରେ ପିଲାର ଗତିବିଧି, ଚାଲିଚାଳଣ ସବୁ କିଛି। ସେ କାନ ଶୁଣିପାରେ ତା'ର କଥାବାର୍ତ୍ତା, ତା'ର ଅନ୍ତରର ଭାଷା। ସେ କ୍ଷେତ୍ରରେ ଦୂରତା ହାର ମାନିଯାଏ।

ମନେ ପଡେ ପୁରାଣ ପୃଷ୍ଠାରୁ କଥାଟିଏ, କୌରବମାନେ କ୍ରୋଧ ଜର୍ଜରିତ ହୋଇ ଭୀମଙ୍କୁ ବିଷ ଲଡୁ ଖୁଆଇ ପାଣିରେ ପକାଇ ଦେଲା ବେଳେ ଭୀମଙ୍କର 'ମାଆ' ଡାକ କୁନ୍ତୀଙ୍କୁ ଅସ୍ଥିର କରିପକାଇଲା। କୁନ୍ତୀ ସେତେବେଳେ ଭୀମଙ୍କ ଠାରୁ ବେଶ୍ ଦୂରତାରେ ଥିଲେ। ବାସ୍ତବରେ ଭୀମଙ୍କର ଡାକ ଚର୍ମ କର୍ଣ୍ଣକୁ ନୁହେଁ, କୁନ୍ତୀଙ୍କର ମର୍ମକର୍ଣ୍ଣକୁ ଶୁଭିଥିଲା।

ମନେ ପଡ଼େ ପୁରାଣରୁ ଆଉ ଏକ କଥା। ସ୍ୱୟମ୍ବର ସଭାରେ ରାଜକୁମାରୀ ଇନ୍ଦୁମତୀ ବରଣ କଲେ ସ୍ୱାମୀ ସ୍ୱରୂପରେ ରାଜକୁମାର ଅଜଙ୍କୁ। ବିବାହ ଉତ୍ସବ ମହାସମାରୋହରେ ବିଦର୍ଭ ନଗରରେ ସମାହିତ ହେଲା। ଇନ୍ଦୁମତୀଙ୍କୁ ଆଣି ଅଯୋଧ୍ୟାକୁ ଫେରିବା ବାଟରେ ଅଜ ସମ୍ମୁଖୀନ ହେଲେ ଏକ ବିରାଟ ବିପଦର। ବିପଦଟି ଥିଲା ଏକ ଅତର୍କିତ ଆକ୍ରମଣ। ଇନ୍ଦୁମତୀଙ୍କୁ ପତ୍ନୀ ରୂପରେ ନପାଇବାରୁ ଭଗ୍ନ ମନୋରଥ ବିଷାଦ ଜର୍ଜରିତ ରାଜକୁମାରମାନେ ଏକତ୍ର ହୋଇ ମେଳି କରି ଅଜଙ୍କୁ ହଠାତ୍ ଆକ୍ରମଣ କଲେ। ଗୋଟିଏ ପକ୍ଷରେ ଅଜ ଓ ଅନ୍ୟପକ୍ଷରେ ରାଜକୁମାରଗଣଙ୍କ ମଧ୍ୟରେ ଜୋର ସଂଗ୍ରାମ ଆରମ୍ଭ ହୋଇଗଲା। ଏ ପଟେ ଅଜଙ୍କର ମାଆ ଚାହିଁଥିଲେ ଅଜଙ୍କର ଫେରିବା ବାଟକୁ।



Digitized by PPRACHIN, SOA

ମର୍ମଚକ୍ଷୁରେ ଦିଶିଲା ତାଙ୍କୁ ଏଇ ସଂଗ୍ରାମର ଚିତ୍ର। ଅତ୍ୟନ୍ତ ମର୍ମାହତ ହେଲେ ସେ। ତାଙ୍କ ମନେ ହେଲା ସତେ ଅବା ଖୁବ୍ ନିକଟରେ ଏତେ ବଡ଼ ସଂଗ୍ରାମ ଘଟୁଛି। ପ୍ରକୃତପକ୍ଷେ ମାଆ ପାଇଁ ଦୂରତା ବୋଲି କିଛି ନାହିଁ। ତାଙ୍କର ସ୍ଥୂଳଶକ୍ତି ସୀମିତ ହୋଇପାରେ ମାତ୍ର ତାଙ୍କର ସୂକ୍ଷ୍ମ ଶକ୍ତିର ସୀମା ସରହଦ ନଥାଏ। ସେଇଥିପାଇଁ ତ କୁହାଯାଏ 'କାଲ ଠାର କାଲ ମାଆ ଜାଣେ।' ଏପରିକି ଛୋଟ ପିଲାଟି ନିଜର କାନ୍ଦୁଥିଲା ବେଳେ ଅନ୍ୟମାନେ ପିଲାଟିକୁ ବୁଝାଇ ନପାରିବା ବେଳେ ମାଆ ବୁଝାଇ ଦେଇପାରନ୍ତି। ମାଆଙ୍କ ପାଖରେ ସେ ଶକ୍ତିଟି ରହିଛି। କେଉଁ ଖେଳନାଟି ଦେଲେ ସେ କାନ୍ଦ ବନ୍ଦ କରିବ, କେଉଁ ଗୀତଟି ଗାଇଲେ ସେ କାନ୍ଦ ବନ୍ଦ କରିବ, ସେକଥା ମାଆ ହିଁ ଜାଣିଥାନ୍ତି। କେଉଁଠାରେ ପାଠ୍ୟକ୍ରମରେ ତାହା ପଢ଼ାହେବାର ବ୍ୟବସ୍ଥା ନଥାଏ। ସେ ଜାଣିବା ଅତ୍ୟନ୍ତ ସ୍ୱତଃସ୍ଫୂର୍ତ୍ତ ଓ ସ୍ୱତନ୍ତ୍ର। ପିଲାମାନେ ମାଆ ମନକୁ ବୁଝି ନପାରନ୍ତି ମାତ୍ର ମାଆ ଭଲକରି ବୁଝିପାରନ୍ତି ପିଲାମାନଙ୍କ ମନ। ସେ ଏକାଧାରରେ ହୋଇପାରନ୍ତି ପିଲାଟିର ବନ୍ଧୁ, ଗୁରୁ, ଦିଗ୍‌ଦର୍ଶିକା। ଅଭାବ ବେଳେ ସବୁଖାଦ୍ୟ ପିଲାକୁ ଖାଇବାକୁ ଦେଇ ସାରି ଖୁସିରେ ଯିଏ ଉପାସରେ ରହିପାରନ୍ତି ସେ ହେଉଛନ୍ତି ମାଆ। ପିଲାଟି ମୁହଁ ଶୁଖାଇବା ଆଗରୁ ଯିଏ ମୁହଁ ନଶୁଖାଇବାର ବ୍ୟବସ୍ଥାଟି କରିଥାନ୍ତି, ସେ ହେଉଛନ୍ତି ମାଆ। ଶଙ୍କରାଚାର୍ଯ୍ୟଙ୍କ ଭାଷାରେ "କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନଭବତି।'

ଅବଶ୍ୟ ପିଲାଟିକୁ ଯଥାଯୋଗ୍ୟ କରି ଗଢ଼ିବା ପାଇଁ ମାଆଙ୍କୁ କଷ୍ଟ କରିବାକୁ ପଡ଼େ। ପିଲାପାଇଁ ସମୟ, ଶକ୍ତି, ସଚେତନ, ଦୃଷ୍ଟିଭଙ୍ଗୀ ପ୍ରଭୃତି ରଖିବାକୁ ହୋଇଥାଏ। ମହାଯୋଗୀ ଶ୍ରୀଅରବିନ୍ଦ କହନ୍ତି, "ମାଆ ହେବା ଦିନଠାରୁ ସେ ମାଆ ହେବା ସଂଗେ ସଂଗେ ସାଧିକାଟିଏ ମଧ୍ୟ ହୁଅନ୍ତି, ପିଲା ଆଗରେ ଦର୍ପଣଟିଏ ହୁଅନ୍ତି।" ସେ ଯେପରି ଚଳଣି ଚଳନ୍ତି, ପିଲାଟି ଅଲକ୍ଷ୍ୟରେ ହେଉବା ଲକ୍ଷ୍ୟରେ ହେଉ ସେପରି ଚଳଣି ଶିଖିଯାଏ। ମାଆଙ୍କୁ ନିଜ ପ୍ରତି ସଚେତନ ହେବା ସହିତ ପିଲାଟି ପ୍ରତି ମଧ୍ୟ ସଚେତନ ହେବାକୁ ପଡିଥାଏ। ନିଜ ଛାଞ୍ଚରେ ନୁହେଁ, ପିଲାଟିକୁ ପିଲାଟିର ଛାଞ୍ଚରେ ପକାଇବା ପାଇଁ ଯେଉଁ କଷ୍ଟ ଦରକାର ସେହି କଷ୍ଟକୁ ମା'ଙ୍କୁ ସ୍ୱୀକାର କରିବାକୁ ପଡେ। ସେଥିପାଇଁ ବହୁତ କିଛି ତ୍ୟାଗ କରିବାକୁ ପଡେ, ନିଜର ସୁଖ ସୁବିଧାକୁ ଆବଶ୍ୟକତା ଅନୁସାରେ ଜଳାଞ୍ଜଳି ଦେବାକୁ ପଡେ।

ସେ ପ୍ରାଚ୍ୟ ଭୂଖଣ୍ଡ ହେଉ ଅବା ପାଶ୍ଚାତ୍ୟ ଭୂଖଣ୍ଡ ହେଉ ପିଲାମାନେ ପିତାମାତାଙ୍କୁ ବିଶେଷତଃ ମାଆଙ୍କୁ ବିଶେଷ ଭାବରେ ଅନୁକରଣ କରିଥାନ୍ତି। ଏହାର କାରଣ ହେଉଛି ଯେ ପିଲାମାନେ ପିତାମାତାଙ୍କୁ ମନେ ମନେ ଦେବତାଜ୍ଞାନ କରିଥାନ୍ତି। ତେଣୁ ପିତାମାତା ନିଜକୁ ଦିବ୍ୟଗୁଣର ଅଧିକାରୀ ହେବା ପାଇଁ ପ୍ରଯତ୍ନ କରିବା ଦରକାର ପଡେ। ସେ ହୁଅନ୍ତୁ ମହାତ୍ମା



Digitized by PPRACHIN, SOA

ଗାନ୍ଧି ଅବା ଲାଲବାହାଦୂର ଶାସ୍ତ୍ରୀ, ହୁଅନ୍ତୁ ସେ ଛତ୍ରପତି ଶିବାଜୀ ଅଥବା ଆବ୍ରାହମ ଲିଙ୍କନ୍, ସମସ୍ତଙ୍କ ମହନୀୟତା ପାଇଁ ମା'ଙ୍କର ପ୍ରଭାବ ଥିଲା ଆଲୋକର ବର୍ତ୍ତିକା ପରି।

ଆବ୍ରାହମ ଲିଙ୍କନ ଏକ ଗରିବ ପରିବାରରେ ଜନ୍ମଗ୍ରହଣ କରିଥିଲେ। ଏତେ ଅଭାବ ତାଙ୍କ ପରିବାରର ଥିଲା ଯେ ଅଧିକାଂଶ ଦିନ ନଦୀରୁ ମାଛ ଧରି ତାହାକୁ ବିକ୍ରି କରି ସେହି ପଇସାରେ ପରିବାରକୁ ଚଳାଇବାକୁ ପଡୁଥିଲା ଲିଙ୍କନ୍‌ଙ୍କୁ। ଦିନେ ସାରା ଦିନ ଜଗି ଜଗି ଗୋଟିଏ ମାତ୍ର ମାଛ ମାରିବାକୁ ସମର୍ଥ ହେଲେ ଲିଙ୍କନ। ମାଛଟିକୁ ବଜାରରେ ବିକ୍ରି ପାଇଁ ଆଣିଲ। ବେଳେ ବାଟରେ ଜଣେ ଦେଶରକ୍ଷକ ସୈନିକଙ୍କ ଅନୁରୋଧ କ୍ରମେ ଲିଙ୍କନ ମାଛଟିକୁ ସୈନିକଙ୍କୁ ପ୍ରଦାନ କଲେ। ଏପରି ସେ କଲେ କାରଣ ସେ ଭାବିଲେ ଯେ ବ୍ୟକ୍ତିଠାରୁ ଦେଶ ହେଉଛି ବଡ଼। ଦେଶର ରକ୍ଷା ଦାୟିତ୍ୱରେ ଥିବା ସୈନିକଙ୍କୁ ସେ ମନରେ ଉଚ୍ଚସ୍ଥାନ ଦେଇଥିଲେ। ସେ ବୁଝିଥିଲେ ଯେ ଦେଶର ସେବା ହିଁ ସର୍ବଶ୍ରେଷ୍ଠ ସେବା। ଖାଲି ହାତରେ ଫେରିଆସି ସବୁକଥା ଲିଙ୍କନ କହିଲେ ମା'ଙ୍କୁ। ଭାବିଥିଲେ ମା' ତାଙ୍କୁ ଗାଳିଦେବେ, ମାତ୍ର ମାଆ ତାଙ୍କୁ ବହୁତ ପ୍ରଶଂସା କଲେ ଏବଂ ଦେଶ ସେବାର ମହତ୍ତ୍ୱକୁ ଅଧିକରୁ ଅଧିକ ବୁଝାଇଦେଲେ। ଦେଶକୁ ପ୍ରାଣଭରି ଭଲ ପାଉଥିଲେ ଲିଙ୍କନ। ଘଟଣାକ୍ରମେ ସେ ଦିନେ ହୋଇଥିଲେ ଆମେରିକାର ରାଷ୍ଟ୍ରପତି।

ଆଜି ସମୟ ଅପେକ୍ଷା କରିଛି ତେଜଦୀପ୍ତ, ବୁଦ୍ଧିଯୁକ୍ତ ଓ ମାନବିକତା ବିମଣ୍ଡିତ ପିଲାମାନଙ୍କୁ। ସାରା ବିଶ୍ୱ ଏପରି ଅପେକ୍ଷାରେ ରହିଛି, ଆକାଶପରି ଉଚ୍ଚମନ ଓ ସମୁଦ୍ର ପରି ପରିବ୍ୟାପ୍ତ ହୃଦୟ ସହିତ ହିମାଳୟ ପରି ଉତ୍ତୁଙ୍ଗ ବୌଦ୍ଧିକତାର ସମନ୍ୱୟରେ ସଂଗଠିତ ଯୁବଶକ୍ତି ଆଜିର ଆବଶ୍ୟକତାକୁ ପୂରଣ କରିପାରିବେ। ପ୍ରକୃତରେ ଏହି ଆବଶ୍ୟକତା ପୂର୍ଣ୍ଣ ହେବ ମାଆମାନଙ୍କ ସହଯୋଗରେ। ମାଆମାନଙ୍କ ସହଯୋଗ ବିନା ଏଇ ଆବଶ୍ୟକତା ପୂରଣ ହୋଇପାରିବ ନାହିଁ। ଅତଏବ ମାଆମାନଙ୍କର ସଂକଳ୍ପ ଓ ସହଯୋଗ ଆଜି ଦେଶ ତଥା ସମଗ୍ର ବିଶ୍ୱର ରକ୍ଷା କବଚ। ସେହି ମାତୃ ଚେତନାର ଜୟ ହେଉ।





Digitized by PPRACHIN, SOA

# ବଟରୁ କଳ୍ପବଟ୍

ପରିବାରରୁ ପୁଣି ପାରିବାରିକ ଶିକ୍ଷାରୁ ବହୁ ଅମୂଲ୍ୟରତ୍ନ ମିଳେ ଯାହା ଅନ୍ୟ କେଉଁଠାରୁ ମିଳେ ନାହିଁ। ଏଥି ମଧ୍ୟରୁ ଗୋଟିଏ ବହୁମୂଲ୍ୟ ରତ୍ନର ନାମ ଶ୍ରଦ୍ଧା। ପରିବାରର ଅନ୍ୟନାମ ରତ୍ନ ଖଣି କହିଲେ ଅତ୍ୟୁକ୍ତି ହେବ ନାହିଁ। ଅବଶ୍ୟ ସବୁ ଖଣିରୁ ସମାନ ପରିମାଣର ଏବଂ ସମାନ ଉଜ୍ଜ୍ୱଳତାର ରତ୍ନ ନ ମିଳିଲା ପରି ସବୁ ପରିବାରର ଶିକ୍ଷା ସମାନ ନଥାଏ। ଯେଉଁ ପରିବାରରେ ଥାଏ ପାରସ୍ପରିକତା ଅଧିକ ସେହି ପରିବାରରେ ଥାଏ ସଂସ୍କାର ଅଧିକ। ଏହି ପାରସ୍ପରିକତାର ଅନ୍ୟ ନାମ ଶ୍ରଦ୍ଧା। ଶ୍ରଦ୍ଧାରୁ ସମ୍ମାନ, ସ୍ନେହ, ଉଦାରତା, ସହନଶୀଳତାର ସୃଷ୍ଟି। ଶ୍ରଦ୍ଧା ଯୋଗୁଁ ପରସ୍ପର ଭିତରେ ସୁଖ ବାଣ୍ଟି ହିଆଯାଏ ଏବଂ ଦୁଃଖ ବାଣ୍ଟିନିଆଯାଏ। ସୁଖ ବାଣ୍ଟି ଦେଲେ ବଢ଼ିଯାଏ ଏବଂ ଦୁଃଖ ବାଣ୍ଟିଦେଲେ କମିଯାଏ। ସେତେବେଳେ ଭକ୍ତକବି ମଧୁସୂଦନଙ୍କ କଥା ସତ ହୁଏ, ଘର ହୋଇଯାଏ ମର୍ତ୍ତ୍ୟର ବୈକୁଣ୍ଠ।

ପାଞ୍ଚ ଆଙ୍ଗୁଠି ସମାନ ନଥିଲା ପରି ପରିବାରରେ ଥିବା ପାଞ୍ଚଜଣଙ୍କର ଶାରୀରିକ ଶକ୍ତି, ମାନସିକ ଶକ୍ତି ସମାନ ନହେବା ସ୍ୱାଭାବିକ। ଅସମାନତାକୁ ଭୁଲିନଗଲେ ପାରିବାରିକ ଆନନ୍ଦ ରହେ ନାହିଁ। ଅସମାନତାକୁ ଭୁଲାଇଦିଏ ଶ୍ରଦ୍ଧା। ଶ୍ରଦ୍ଧା ଏକ ସ୍ୱର୍ଗୀୟ ଉପାଦାନ ଯାହା ଦିବ୍ୟ ଧାମରୁ ପାରିଜାତ ଫୁଲର ବାସ୍ନାନେଇ ମର୍ତ୍ତ୍ୟକୁ ଆସିଥାଏ। ଏଥିପାଇଁ ଧନ, ଯଶ, ଡିଗ୍ରୀ ଆଦୌ ମାନଦଣ୍ଡ ନୁହେଁ। ଧନ ଅର୍ଜନ ସାମର୍ଥ୍ୟରେ ତାରତମ୍ୟ ରହିବ ହିଁ ରହିବ। ମାନ, ଯଶ ଓ ଶିକ୍ଷାଗତ ଡିଗ୍ରୀରେ ତାରତମ୍ୟ ରହିବ ହିଁ ରହିବ। ଏସବୁ ତାରତମ୍ୟ ଭିତରେ ଭାରସାମ୍ୟ ଆଣେ ଶ୍ରଦ୍ଧା। ଶ୍ରଦ୍ଧା ଏସବୁ ବୁଝେ ନାହିଁ, ବୁଝେ ଆତ୍ମୀୟତା। ଶ୍ରଦ୍ଧାର ମୂଳ ଉପାଦାନଟି ହେଉଛି ମମତ୍ୱବୋଧ। 'ସମସ୍ତେ ମୋର ଓ ମୁଁ ସମସ୍ତଙ୍କର' – ଏହି ମନୋଭାବ ହିଁ ମମତ୍ୱବୋଧର ସରଳ ଅର୍ଥ। ମମତ୍ୱବୋଧ ଯେତେ ବଢ଼ିବ ସ୍ୱାର୍ଥପରତା ସେତେ କମିବ ପୁଣି ମମତ୍ୱବୋଧ ଯେତେ କମିବ ସ୍ୱାର୍ଥପରତା ସେତେ ବଢ଼ିବ। ଆଲୁଅ ଅନ୍ଧାର ପରି ଦୁଇଟିଯାକ କଥା ପରସ୍ପରର ବିପରୀତ ଧର୍ମୀ। ଗୋଟିଏ ରହିଲେ ଅନ୍ୟଟି ଅପସରି ଯିବାକୁ ବାଧ୍ୟ। ମମତ୍ୱବୋଧରୁ ସହନଶୀଳତା ଆସେ। ସହନଶୀଳତାରୁ ସହାବସ୍ଥାନର ସ୍ଥିତି ଓ ଭିତ୍ତି ଦୃଢ଼ ହୁଏ।

ପରିବାର ହିଁ ପ୍ରଥମ ଶିକ୍ଷାକ୍ଷେତ୍ର ଯହିଁରୁ ମିଳୁଥିବା ଶ୍ରଦ୍ଧାରୂପୀ ସଂସ୍କାର ପ୍ରଥମେ ପରିବାରର ପରିସରରେ ପ୍ରୟୋଗ କରାଯାଏ। ଏହି ଶିକ୍ଷା କେବଳ ଉପଦେଶମୂଳକ



Digitized by PPRACHIN, SOA

ହେଲେ ସମ୍ପୂର୍ଣ୍ଣ ହୁଏ ନାହିଁ, ଉଦାହରଣରମୂଳକ ହେଲେ ସମ୍ପୂର୍ଣ୍ଣ ହୁଏ। ଅନ୍ୟ ଭାଷାରେ କୁହାଯିବ ଯେ ଉପଦେଶ ସହିତ ଉଦାହରଣ ମିଶିକରି ରହିଲେ ପୂର୍ଣ୍ଣତା ଆସେ। ଆମେ ହୁଏତ ଉପଦେଶ ଦେବା ମାତ୍ର ଉଦାହରଣ ହେବା ନାହିଁ, ତେବେ ବିଶେଷ କିଛି ଲାଭ ହେବ ନାହିଁ। କଥାଟି ପୋଥି ବାଇଗଣ ହୋଇ ରହିବଯିବ। ବରଂ ଏପରି ହୋଇପାରେ ଯେ ଉପଦେଶ ଦେବାଠାରୁ ଉଦାହରଣ ଅଧିକ ହେବାର ପରିବାରର ପିଲାଟିଏ ଅଧିକ ଶ୍ରଦ୍ଧାବାନ ହୋଇଥାଏ।

ସେ କେବଳ ନିଜ ପରିବାରକୁ ଶ୍ରଦ୍ଧାର ବନ୍ଧନରେ ବାନ୍ଧି ରଖେ, ତାହା ନୁହେଁ, ସବୁକିଛିକୁ ଶ୍ରଦ୍ଧାର ସୁନାସୂତାରେ ବାନ୍ଧିରଖେ। ସମାଜକୁ ପୁଣି ଦେଶକୁ ମଧ୍ୟ ବାନ୍ଧିରଖିବାର ସାମର୍ଥ୍ୟ ଓ ଯୋଗ୍ୟତାର ଅଧିକାରୀ ସେ ହୋଇପାରେ। ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ସେ ଭଲପାଏ। ସେ ଗୋଟିଏ ଭାଷାର ଅନ୍ତର୍ଭୁକ୍ତ ହୋଇପାରେ ମାତ୍ର ସବୁ ଭାଷା ପ୍ରତି ତା'ର ଆନ୍ତରିକତା ଥାଏ। ଗୋଟିଏ ଧର୍ମର ଅନ୍ତର୍ଭୁକ୍ତ ସେ ହୋଇପାରେ ମାତ୍ର ସବୁଧର୍ମ ପ୍ରତି ତା' ମନରେ ସମ୍ମାନ ଥାଏ। ଗୋଟିଏ ପ୍ରକାର ଚଳଣିରେ ସେ ଅଭ୍ୟସ୍ତ ହୋଇପାରେ ମାତ୍ର ସମସ୍ତ ଚଳଣି ପ୍ରତି ତା' ମନରେ ଆଦର ଓ ସମ୍ମାନ ଥାଏ। ମୋଟ୍ ଉପରେ ସେ ନିଜକୁ ବଡ଼ ବୋଲି ବିଚାରେ ନାହିଁ କି ଅନ୍ୟକୁ ସାନ ବୋଲି ବିଚାରେ ନାହିଁ। ସମସ୍ତଙ୍କୁ ନେଇ ଚଳିବାର ଆନନ୍ଦରେ ସେ ଆନନ୍ଦିତ ହୋଇ ରହିଥାଏ। ମୁଁ ସମସ୍ତଙ୍କ ଭିତରେ ଜଣେ, ମୁଁ ଅଲଗା ନୁହେଁ, ସ୍ୱତନ୍ତ୍ର ନୁହେଁ - ଏହି ଭାବଟି ମନରେ ଆସେ। ଏପରି ପବିତ୍ର ଭାବଟିଏ ମନରେ ଆସିଲେ ମନହୁଏ ଉଦାର, ମଧୁର ସର୍ବୋପରି ଆକାଶ ପରି ପରିବ୍ୟାପ୍ତ ଓ ସାଗର ପରି ଗଭୀର। 'ମୋ ଦେଶ' ସେତେବେଳେ ବଚନର ବିଷୟ ନହୋଇ ଅନୁଭବର ବିଷୟ ହୋଇଯାଏ। 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' କଥାଟି ଭାଷଣର ବାକ୍ୟ ନହୋଇ ଆତ୍ମପ୍ରତ୍ୟୟର ବାକ୍ୟରେ ପରିଣତ ହୋଇଯାଏ। ସେତେବେଳେ ସବୁନଦୀ ହୋଇଯାନ୍ତି ଗଙ୍ଗାନଦୀ, ସବୁ ବଟ ହୋଇଯାନ୍ତି କଳ୍ପବଟ, ସବୁ ଶିଳା ପାଲଟି ଯାଆନ୍ତି ଶାଳଗ୍ରାମ। ପବନ ଭିତରେ ମୁଁ ଏବଂ ମୋ' ଭିତରେ ପବନ ଥିଲା ପରି ଦେଶ ଭିତରେ ମୁଁ ଓ ମୋ ଭିତରେ ଦେଶ ଯେ ଅଛି ଏହା ସହଜରେ ଅନୁଭୂତ ହୁଏ। ଶ୍ରୀଅରବିନ୍ଦଙ୍କ ବାଣୀର ପ୍ରତ୍ୟେକ ଶବ୍ଦ ଗୋଟିଏ ଗୋଟିଏ ସୁନ୍ଦର ରାଜକୁମାର ପରି ଆଗରେ ଆସି ଠିଆ ହୁଅନ୍ତି ଏବଂ ଉଚ୍ଚସ୍ୱରରେ ଆବୃତ୍ତି କରୁଥାଆନ୍ତି- "ଭାରତ ବର୍ଷ ମାଟି ଗୋଡ଼ି ପାଣି ପଥରରେ ଗଢ଼ା ଏକ ଭୂଖଣ୍ଡ ମାତ୍ର ନୁହେଁ, ଏହା ଏକ ଜୀବନ୍ତ ଦେବୀ, ଜାଗ୍ରତ ଚେତନା। ଭାରତ ହେଉଛି ପୃଥିବୀର ଆତ୍ମା।" ସେତେବେଳେ ସ୍ୱାମୀ ବିବେକାନନ୍ଦଙ୍କର ମନ୍ତ୍ରମୟୀ ବାଣୀ ଅନ୍ତରରେ ବାରମ୍ବାର ପ୍ରତିଧ୍ୱନି ସୃଷ୍ଟି କରେ- "ସଦର୍ପରେ ଡାକି କହ, ମୂର୍ଖ ଭାରତବାସୀ ମୋର ଭାଇ, ଦରିଦ୍ର ଭାରତବାସୀ ମୋର ଭାଇ। ଭାରତର ମୃତ୍ତିକା



Digitized by PPRACHIN, SOA

ମୋର ସ୍ୱର୍ଗ। ଭାରତର ସମାଜ ମୋର ଶୈଶବର ଶିଶୁ ଶଯ୍ୟା, ମୋର ଯୌବନର ଉପବନ, ମୋର ବାର୍ଦ୍ଧକ୍ୟର ବାରାଣସୀ।”

ଏସବୁ କଥାର ମର୍ମାର୍ଥ ଅତ୍ୟନ୍ତ ଗଭୀର। ଏହାକୁ କାର୍ଯ୍ୟରେ ପରିଣତ କରିବା ଅତ୍ୟନ୍ତ କଷ୍ଟକର। ତେବେ ଅସମ୍ଭବ ନୁହେଁ। ପ୍ରୟାସ ଓ ପ୍ରଯତ୍ନ ଫଳରେ ଏହା ସମ୍ଭବ। କାହାର ପ୍ରୟାସ ଓ ପ୍ରଯତ୍ନ ଫଳରେ ଏହା ସମ୍ଭବ ହେବ ? ଉତ୍ତରରେ କୁହାଯିବ ଯେ ପିତାମାତା, ଅଭିଭାବକ ଓ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ପ୍ରୟାସ ଓ ପ୍ରଯତ୍ନ ଫଳରେ ଏହା ସମ୍ଭବ ହେବ। ସର୍ବାପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ପିତାମାତାଙ୍କର ତଥା ପରିବାରର। ପିତାମାତାଙ୍କୁ ଏଥିପାଇଁ ବହୁ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ। ପିଲାମାନଙ୍କୁ ପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱରେ ରୂପାୟିତ କରିବା ପାଇଁ ସେମାନଙ୍କୁ ବହୁ ସୁଖ ସୁବିଧା ଛାଡ଼ିବାକୁ ପଡ଼ିବ। ବିରକ୍ତି ନ ଦେଖାଇ ଶ୍ରଦ୍ଧାର ସହିତ ପିଲାମାନଙ୍କୁ ବହୁକଥା ବୁଝାଇବାକୁ ହେବ। ଧୈର୍ଯ୍ୟ ରଖି ଶାନ୍ତ ରହି ଉଦାହରଣ ହେବାକୁ ହେବ। କଥାକହିବାର କଳା, କର୍ମକରିବାର ଦକ୍ଷତା, ବୟସରେ ବଡ଼ ଓ ସାନମାନଙ୍କୁ ଯଥାଯୋଗ୍ୟ ବ୍ୟବହାର, ଧନମାନ ପାଇଁ ଯଥାର୍ଥ ଦୃଷ୍ଟିଭଙ୍ଗୀ, ସମଦର୍ଶୀ ଭାବ, ଦେଶାତ୍ମବୋଧ, ପାରସ୍ପରିକ ସହାନୁଭୂତି ସର୍ବୋପରି ମୂଲ୍ୟବୋଧର ପ୍ରତୀକ ହେବାକୁ ହେବ। ତେବେ ଯାଇ ପିଲାମାନେ ଦେଖି ଦେଖି କେତେକାଂଶରେ କେତେ ଭଲକଥା ଶିଖିଯିବେ। ଆଉ କେତେ ଭଲକଥା ଶିକ୍ଷାନୁଷ୍ଠାନ ଓ ଅନ୍ୟାନ୍ୟ ଆଧ୍ୟାତ୍ମିକ ଅନୁଷ୍ଠାନରୁ ଶିଖିଯିବେ। ନିଜକୁ, ନିଜ ଦେଶକୁ ପୁଣି ସାରା ବିଶ୍ୱକୁ ବୁଝିବାକୁ ସମର୍ଥ ହେବେ। ଗୋଟିଏ ପୀଢ଼ି ନିଦା ହୋଇ ତିଆରି ହୋଇଗଲେ ପ୍ରତ୍ୟେକ ଏକ ଏକ ଦୀପ ଶିଖାରେ ପରିଣତ ହୋଇଯିବେ। ସେହି ଦୀପଶିଖାରୁ ଆଉ ଆଉ ଦୀପ ଜଳିବା ସମ୍ଭବ ହେବ। କ୍ରମେ କ୍ରମେ ଦିଗଦିଗନ୍ତ ଆଲୋକିତ ହେବ, ଅନ୍ଧକାର କ୍ରମଶଃ ଅପସରିଯିବ। ଯେଉଁ ଭାବରେ ଭାବିତ ହୋଇ ଉତ୍କଳମଣି ଗୋପବନ୍ଧୁ କହିଥିଲେ- ‘ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା ହେବ ଏ ବିଶ୍ୱ ମୋର ପ୍ରେମ ପସରା’ ସେଇ ଭାବରେ ଭାବିତ ହୋଇ ବହୁ ଭାରତୀୟ ମାର୍ମିକ ଅର୍ଥରେ ବିଶ୍ୱନାଗରିକ ହୋଇପାରିବେ। ସେମାନଙ୍କ ଜୀବନ ବିଶ୍ୱଜୀବନରେ ରୂପାନ୍ତରିତ ହୋଇପାରିବ। ସେମାନଙ୍କ ପାଇଁ ପ୍ରତିବଟ ହୋଇଯିବ କଳ୍ପବଟ, ପ୍ରତି ଶିଳା ହୋଇଯିବ ଶାଳଗ୍ରାମ। ସେତେବେଳେ ଭାରତ ବର୍ଷ ହେବ ବିଶ୍ୱର ଗୁରୁ, ଦେବ ଦିଗ୍‌ଦର୍ଶନ ସାରାବିଶ୍ୱକୁ। ସେଦିନର ଅପେକ୍ଷାରେ ଆମେ ସମସ୍ତେ।





Digitized by PPRACHIN, SOA

# ଶିକ୍ଷା ଓ ମୂଲ୍ୟବୋଧ

ଶିକ୍ଷାରେ ଦୁଇଗୋଟି ଦିଗ ରହିଛି। ଗୋଟିଏ ହେଉଛି ଜୀବିକା ଅର୍ଜନ ଏବଂ ଅନ୍ୟଟି ହେଉଛି ଚରିତ୍ର ଗଠନ। ଚରିତ୍ର ଗଠନର ଅର୍ଥ ସାଧୁ ସନ୍ନ୍ୟାସୀ ହୋଇଯିବା ନୁହେଁ ବରଂ ଅର୍ଜନ କରାଯାଇଥିବା ଜ୍ଞାନର ଯଥାର୍ଥ ପ୍ରୟୋଗ କରିବା। ସମ୍ବାଦ ସଂଗ୍ରହ ଯେ ଜ୍ଞାନ ଅର୍ଜନ ତାହା ନୁହେଁ। ସମ୍ବାଦ ସଂଗ୍ରହର ଭିତ୍ତିରେ ଜୀବନ ଓ ଜଗତ ସମ୍ବନ୍ଧରେ ଯେଉଁ ଚିନ୍ତା ଓ ଚେତନା ଜାଗ୍ରତ ହୁଏ, ତାହା ହେଉଛି ଜ୍ଞାନ। ସମ୍ବାଦ ସଂଗ୍ରହ କେବଳ ପାଠ୍ୟକ୍ରମ, ଶ୍ରେଣୀଗୃହରୁ ହୁଏ ନାହିଁ, ଏଥି ସହିତ ପରମ୍ପରାରୁ ନିଜର ଅଭିଜ୍ଞତାରୁ, ଅନ୍ୟମାନଙ୍କର ଅନୁଭବରୁ ସଂଗଠିତ ହୋଇଥାଏ। ନିଜର ଅଭିଜ୍ଞତା ଗୁରୁ ହୋଇ ବହୁ ଶିକ୍ଷା ଦେଇଥାଏ, ଯଥାର୍ଥରେ ଉପଯୁକ୍ତ ମାର୍ଗଦର୍ଶନ କରିଥାଏ। ତେଣୁ ତ କୁହାଯାଏ 'ମଣିଷ ଠିକିଲେ ଶିଖେ, ଅନ୍ଧ ଥରେ ବାଡ଼ି ହଜାଏ'। ଅନ୍ୟମାନଙ୍କର ଉପଦେଶ ଓ ଉଦାହରଣ ଶିକ୍ଷା ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥାଏ। ଅନ୍ୟମାନଙ୍କର ଅଭିଜ୍ଞତା ସମ୍ଭୂତ ଉପଦେଶ ଫଳପ୍ରଦ ହୋଇଥାଏ। ତେବେ ଉପଦେଶଠାରୁ ଉଦାହରଣ ଅଧିକ ଭାବରେ ଫଳପ୍ରଦ ହୋଇଥାଏ। ଶିକ୍ଷା ଦିଗରେ ଶାସ୍ତ୍ର ଓ କାଳ (ସମୟ)ର ଅବଦାନ ମଧ୍ୟ ଯଥେଷ୍ଟ ଅଧିକ। ମୋଟ ଉପରେ ଶିକ୍ଷା କହିଲେ କେବଳ ବହିପଢ଼ା, ବହିପାଠର ସ୍ମରଣ, ପରୀକ୍ଷା, ପ୍ରମାଣ ପତ୍ର (ସାର୍ଟିଫିକେଟ୍) ନୁହେଁ, ଏହା ସହିତ ଆତ୍ମବିଶ୍ଳେଷଣ, ଜୀବନର ଅନୁଶୀଳନ, ପରିବେଶର ଅନୁଧ୍ୟାନ, ଅନ୍ୟଠାରୁ ଭଲ କଥା ଗ୍ରହଣ ଇତ୍ୟାଦି ସମନ୍ୱିତ ହେବା ଆବଶ୍ୟକ। ଡିଗ୍ରୀର ପରିମାଣ ଉପରେ ଶିକ୍ଷା ନିର୍ଭର କରେ ନାହିଁ, ବରଂ ଜିଜ୍ଞାସାର ପରିମାଣ ଉପରେ ଶିକ୍ଷା ନିର୍ଭର କରେ। ଜିଜ୍ଞାସାର ଅର୍ଥ କେବଳ ଜାଣିବାର ଇଚ୍ଛା ନୁହେଁ, ଏଥିସହିତ ବୁଝିବାର ଇଚ୍ଛା ଓ ପ୍ରୟୋଗ କରିବାର ଇଚ୍ଛା ସଂଯୁକ୍ତ। ଜାଣିବାର ଇଚ୍ଛା ତିଷ୍ଠି ରହେ ଅଧ୍ୟୟନ, ଅନୁସନ୍ଧାନ ଓ ଅନୁଶୀଳନର ଭିତ୍ତିରେ। ବୁଝିବାର ଇଚ୍ଛା ସ୍ଥାନିତ ହୁଏ ଉଦାରତା ଓ ଚେତନାର ଉତ୍ତରଣର ଭିତ୍ତିରେ। ଆଉ ପ୍ରୟୋଗ କରିବାର ଇଚ୍ଛା ଉପସ୍ଥାପିତ ହୋଇଥାଏ ସ୍ଥାନ, କାଳ ଓ ପାତ୍ରର ଭିତ୍ତିରେ। ଏଇ ତିନିକଥା ଅଭ୍ୟାସର ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଥାଏ।

ଜୀବିକା ଅର୍ଜନ ମୂଲ୍ୟ ଉପରେ ଗୁରୁତ୍ୱ ଦେଲାବେଳେ ଚରିତ୍ର ଗଠନ ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦେଇଥାଏ। ଜୀବନ ବଞ୍ଚିବା ପାଇଁ ମୂଲ୍ୟ ଦରକାର ଏବଂ ଜୀବନ ବଢ଼ିବା ପାଇଁ ମୂଲ୍ୟବୋଧ ଦରକାର। ବଞ୍ଚିବା ଓ ବଢ଼ିବା ଉଭୟର ସମାବେଶରେ ଜୀବନର ସାର୍ଥକତା ଆସେ।



Digitized by PPRACHIN, SOA

ଆଜିକାଲିର ଶିକ୍ଷାଧାରାରେ ବଞ୍ଚିବାର କଥାଟି ଅଛି ମାତ୍ର ବଢ଼ିବାର କଥାଟି ବିଶେଷ ଭାବରେ ନାହିଁ। ମୂଲ୍ୟରେ ଡିଗ୍ରୀର ମାପ ହେଉଅଛି, ଜୀବନର ମାପ ହେଉଅଛି। ମୂଲ୍ୟଦ୍ୱାରା ଜୀବନର ଏକ ଅଂଶ ମାତ୍ର ମାପି ହେଉଛି, ସବୁ ଅଂଶ ମାପି ହେଉନାହିଁ - ଏକଥା ବୁଝାପଡୁ ନାହିଁ। ତେଲ ଲୁଣର ଜୀବନଟିକୁ ମୂଲ୍ୟ ଦ୍ୱାରା ମାପି ହେଉଛି ସତ ମାତ୍ର ଜୀବନର ଅନ୍ୟ ଦିଗଗୁଡ଼ିକ ଅଣଦେଖା ହୋଇ ରହିଯାଉଛି। ତେଲ ଲୁଣର ଜୀବନ ହେଉଛି ବ୍ୟକ୍ତିଗତ ଜୀବନ, ଏହା ବ୍ୟତୀତ ଆମର ରହିଛି ସାମାଜିକ ଜୀବନ, ରାଷ୍ଟ୍ରୀୟ ଜୀବନ ଏବଂ ଆନ୍ତର୍ଜାତିକ ଜୀବନ। ମୂଲ୍ୟବୋଧର ଭିତ୍ତିରେ ଏଇ ତିନିଗୋଟି ଜୀବନ ଅଧିକରୁ ଅଧିକ ପ୍ରତିଷ୍ଠିତ ହୋଇଥାଏ। 'ସମାଜ ଦ୍ୱାରା ମୁଁ ଯେତିକି ଉପକୃତ ହୋଇଛି, ସମାଜ ମୋ ଦ୍ୱାରା ତହିଁରୁ ଅଧିକ ଉପକୃତ ହେଉ'- ଏହି ଚିନ୍ତାଧାରାର ଜୀବନ ହିଁ ସୁସ୍ଥ ସାମାଜିକ ଜୀବନର ପ୍ରତୀକ। ସମାଜକୁ ବହୁତ କିଛି (ଯେତେ ବେଶୀ ସମ୍ଭବ) ଦେଇଦେବାର ମାନସିକତା ହିଁ ସୁସ୍ଥ ସାମାଜିକ ଜୀବନର ମାନଦଣ୍ଡ। ରାଷ୍ଟ୍ରୀୟ ଜୀବନ କହିଲେ ରାଜନୀତିରେ ଯୋଗଦେବା କଥା ଏଠାରେ କୁହାଯାଉନାହିଁ। ରାଷ୍ଟ୍ରୀୟ ଜୀବନର ମାନଦଣ୍ଡ ହେଉଛି ଦେଶାତ୍ମବୋଧର ମନୋବୃତ୍ତି। 'ଏ ରାଷ୍ଟ୍ର ମୋର', 'ମୁଁ ଏ ରାଷ୍ଟ୍ରର'- ଏହି ଭାବ ହିଁ ରାଷ୍ଟ୍ରୀୟ ଜୀବନର ମୂଳ କଥା।

ବିଶ୍ୱ ନାଗରିକତ୍ୱ ହିଁ ଆନ୍ତର୍ଜାତିକ ଜୀବନର ମୂଳମନ୍ତ୍ର। ନିଜର ସଂସ୍କୃତିକୁ ଭୁଲି 'ମୁଁ ଏଇ ବିଶ୍ୱର, ମୁଁ ଏଇ ବିଶ୍ୱର' କହି ବୁଲିବା ବିଶ୍ୱ ନାଗରିକତ୍ୱ ନୁହେଁ। ବରଂ ନିଜ ମାଟିରେ ଦମ୍ଭରେ ଠିଆ ହୋଇ ସମନ୍ୱିତ ହେଲେ ପୂରଣ ହୋଇପାରିବ। ଚାରିଦିଗରୁ ଭଲ ଭଲ କଥା ସଂଗ୍ରହ କରି ନିଜକୁ ସମୃଦ୍ଧ କରିବାର ମନୋଭାବ ହିଁ ବିଶ୍ୱନାଗରିକତ୍ୱର ପ୍ରମୁଖ ଲକ୍ଷଣ। ଏହା ପ୍ରତ୍ୟେକ ଦେଶ ପାଇଁ ପ୍ରଯୁଜ୍ୟ। ଉଦାହରଣ ସ୍ୱରୂପ ଭାରତୀୟଟି ଭାରତ ମାଟିରେ ଦମ୍ଭରେ ଠିଆହୋଇ ଅନ୍ୟଆଡୁ ଭଲ ଭଲ କଥା ଆହରଣ କରିବାର ମନୋବୃତ୍ତିରେ ବିଶ୍ୱନାଗରିକତ୍ୱ ନିହିତ ରହିଛି। ଫରାସୀଟିଏ ଫ୍ରାନ୍ସ ମାଟିରେ ଦମ୍ଭରେ ଛିଡ଼ା ହୋଇ ଅନ୍ୟ ଆଡୁ ଭଲ କଥା ସଂଗ୍ରହ କରି ନିଜକୁ ଋଦ୍ଧିମନ୍ତ କରିବାର ଚିନ୍ତା ଓ ଚେତନା ହିଁ ଜଗତୀକରଣର ଅସଲ ମନ୍ତ୍ର।

ନିଜ ଠାରୁ ନିଜକୁ ସାନ ବା ବଡ଼ ମନେ ନ କରିବା, ପରିବାରରେ ସାନମାନଙ୍କୁ ଶ୍ରଦ୍ଧା ଓ ବଡ଼ମାନଙ୍କୁ ସମ୍ମାନ ଜଣାଇବା, ସମାଜରେ ପରସ୍ପର ସହିତ ସୁସମ୍ପର୍କ ରଖିବା, ଆମ ଦେଶର ସମୃଦ୍ଧି ଓ ସମ୍ମାନ ବୃଦ୍ଧିରେ ଜାଗ୍ରତ ଯବାନ ପରି ସଦା ସଚେତନ ରହିବା, ଆମ ବିଶ୍ୱ ବାରୁଦ ଗନ୍ଧରୁ ମୁକ୍ତ ହୋଇ ଭ୍ରାତୃତ୍ୱର ଫୁଲ ବାସରେ ଯୁକ୍ତ ହେଉ ବୋଲି ଅତିକମ୍‌ରେ ପ୍ରବଳ ଶୁଭେଚ୍ଛା ରଖିବା ଇତ୍ୟାଦି ମାନସିକତା ଆଜିର ପ୍ରାଥମିକ ଆବଶ୍ୟକତା।

ବିଜ୍ଞାନ ଦ୍ୱାରା ବାହାର ବିଶ୍ୱର ଦୂରତା କମିଯାଇଛି। ମାତ୍ର କୌଣସି ବାଟରେ ଭିତର ବିଶ୍ୱ ଏପର୍ଯ୍ୟନ୍ତ ଏକ ହୋଇନାହିଁ। ବହିଃଜଗତୀକରଣରେ ପ୍ରମୁଖ ଭୂମିକା ନିମନ୍ତେ



Digitized by PPRACHIN, SOA

ବିଜ୍ଞାନ ଓ ବୈଜ୍ଞାନିକମାନଙ୍କୁ ଅନେକ ଅନେକ କୃତଜ୍ଞତା। ତେବେ ଆନ୍ତଃଜଗତୀକରଣ ନ ଆସିଲେ ଜଗତୀକରଣର ପୂର୍ଣ୍ଣତା ଆସିବ ନାହିଁ। ଆନ୍ତଃଜଗତୀକରଣ ପାଇଁ ମଣିଷ ମନର ଉଦାରତା, ପ୍ରସାରତା ସର୍ବୋପରି ମାନବିକ ମୂଲ୍ୟବୋଧର ଆବଶ୍ୟକତା ଏକାନ୍ତ ଜରୁରୀ। ଏହି ଆବଶ୍ୟକତା କେବଳ ଶିକ୍ଷାରେ ମୂଲ୍ୟସହ ମୂଲ୍ୟବୋଧ ସମନ୍ୱିତ ହେଲେ ପୂରଣ ହୋଇପାରିବ।





Digitized by PPRACHIN, SOA

# ଆତ୍ମଶାନ୍ତିର ରୂପରେଖ

ବାହ୍ୟ ଜୀବନର ବିକାଶ ପାଇଁ ଯେପରି ଖାଦ୍ୟ, ବସ୍ତ୍ର, ବାସଗୃହ, ଔଷଧ ଆବଶ୍ୟକ, ଅନ୍ତର୍ଜୀବନର ବିକାଶ ପାଇଁ ସେପରି ଆତ୍ମବିଶ୍ୱାସ, ଆତ୍ମଶାନ୍ତି, ଆତ୍ମସନ୍ତୋଷ, ଆତ୍ମ ବିଶ୍ଳେଷଣ, ନିଜଠାରୁ ବିରାଟ ଏକ ଶକ୍ତି ସହ ଯୋଗସୂତ୍ର ସ୍ଥାପନ ଇତ୍ୟାଦିର ଇତ୍ୟାଦି କଥା ଆବଶ୍ୟକ। କେବଳ ବହିର୍ଜୀବନର ବିକାଶ ଘଟିଲେ ବ୍ୟକ୍ତି ଜୀବନ, ପାରିବାରିକ ଜୀବନ ତଥା ରାଷ୍ଟ୍ରୀୟ ଜୀବନ ଏକ ଦିଗଦର୍ଶୀ ହୋଇଯାଏ ଅପୂର୍ଣ୍ଣ ହୋଇ ରହିଯାଏ। ସୁଖ ପଛରେ ଧାଇଁ ଧାଇଁ କ୍ଳାନ୍ତ ହେବାକୁ ପଡ଼େ। ବିନିମୟରେ ଦୁଃଖଗୁଡ଼ିଏ କିଣାହୁଏ। ବହିଃ ଜୀବନ ହେଉଛି ସୁଖର ଜୀବନ ଯାହା ଇନ୍ଦ୍ରିୟ ଗ୍ରାହ୍ୟ, ଅନ୍ୟପକ୍ଷରେ ଅନ୍ତର୍ଜୀବନ ହେଉଛି ଆନନ୍ଦର ଜୀବନ ଯାହା ଚେତନାଗ୍ରାହ୍ୟ। ଇନ୍ଦ୍ରିୟ ନଷ୍ଟ ହୋଇଗଲେ ସୁଖର ଜୀବନ ଫିକା ପଡ଼ିଯାଏ, ପାଣ୍ଡୁର ହୋଇଯାଏ। ସୁଖର ଜୀବନ ଅଳ୍ପକ୍ଷଣସ୍ଥାୟୀ। କବିବର ରାଧାନାଥଙ୍କ ଭାଷାରେ ସୁଖର ପରିଭାଷା ଏହିପରି-

"ସୁଖ ବୋଲି ଯାହା ଜନ ନେତ୍ରେ ଦିଶେ
ହାତେ ଆସେ ହାତୁଁ ପଡ଼ିବା ପାଇଁ ସେ
ବସ୍ତୁ ନୁହଇ ସେ ଅଟଇଟି ଧୂମ
ଅନ୍ୟ ନାମ ତା'ର ଆକାଶ କୁସୁମ।"

ଏହା ସୂଚନା ଦିଏ ଯେ ସୁଖ ଆସେ ହାତରୁ ହାତକୁ ପଡ଼ିବା ପାଇଁ ଅର୍ଥାତ୍ ହସ୍ତାନ୍ତରିତ ହେବା ପାଇଁ। ଏହା ଏକ ବସ୍ତୁ ନୁହେଁ, ଅବସ୍ତୁ। ତା'ର ଅନ୍ୟନାମ ଆକାଶକୁସୁମ ବୋଲି କବି କହିଛନ୍ତି।

ଏପରି ମଧ୍ୟ କୁହାଯାଇପାରେ ଯେ, ମୃତ୍ୟୁ ସହ ସୁଖର ଜୀବନ ସରିଯାଏ। ଇନ୍ଦ୍ରିୟ ନଷ୍ଟ ହୋଇଗଲେ ଇନ୍ଦ୍ରିୟ ସହ ଜଡ଼ିତ ସୁଖ ଭୋଗର ଲାଳସା, ସୁଖ କାଳୀନ ସାମୟିକ ଉଲ୍ଲାସ ଓ ଶିହରଣ ନଷ୍ଟ ହୋଇଯାଏ। ମାତ୍ର ଆନନ୍ଦ ସେପରି ନୁହେଁ, ସୂକ୍ଷ୍ମ ଶରୀର, ସୂକ୍ଷ୍ମ ମନ ସହିତ ଏହା ପରପାରକୁ ଯାଏ। ଅତଏବ ଆନନ୍ଦର ସ୍ଥାନ ସ୍ୱତନ୍ତ୍ର ଓ ଅଭିନବ।

ଅବଶ୍ୟ ଏହା କହିବା ଦ୍ୱାରା ସୁଖର ଜୀବନକୁ ଅବମାନନା କରାଯାଉ ନାହିଁ, ଅଲୋଡ଼ା ବୋଲି କୁହାଯାଉ ନାହିଁ, କିନ୍ତୁ କୁହାଯାଉଛି ଯେ ଜୀବନ ଏତିକିରେ ବନ୍ଧା ପଡ଼ିବା ପାଇଁ ଆସିନାହିଁ। ସୁଖର ଜୀବନକୁ ପାଥେୟ କରି ଆଗକୁ ଯିବାକୁ ଅର୍ଥାତ୍ ଆନନ୍ଦର ଜୀବନରେ ପହଞ୍ଚିବାକୁ ଆସିଛି। ଅର୍ଥାତ୍ ସୁଖର ଜୀବନ ହେଉ ମାଧ୍ୟମ, ମାତ୍ର ଲକ୍ଷ୍ୟ



Digitized by PPRACHIN, SOA

ନହେଉ। ଛାତ ଉପରକୁ ଯିବା ପାଇଁ ଏକ ସୋପାନ ଶ୍ରେଣୀର ଆବଶ୍ୟକତା ରହିଛି, ସୁଖର ଜୀବନ ସେଇ ସୋପାନ ଶ୍ରେଣୀ ଏବଂ ଆନନ୍ଦର ଜୀବନ ହେଉଛି ଛାତ ସଦୃଶ, ଏହା ଆମକୁ ମନେ ରଖିବାକୁ ହେବ। ଆମେ ପ୍ରକୃତରେ ସୁଖ ପାଇବାକୁ ପୃଥିବୀକୁ ଆସିନାହୁଁ, ଆମେ ସୁଖର ମାଧ୍ୟମରେ ଆନନ୍ଦମୟ ଜୀବନ ଯାପନ କରିବାକୁ ଆସିଅଛୁ। ଆମେ ସାଧାରଣ ପ୍ରାଣୀ ପରି ଇନ୍ଦ୍ରିୟ ସର୍ବସ୍ୱ ଜୀବନ ଯାପନ କରିବାକୁ ଆସିନାହୁଁ। ବରଂ ଇନ୍ଦ୍ରିୟାତୀତ ଚେତନାଗତ ଜୀବନଯାପନ କରିବାକୁ ଆସିଛୁ। ସୁଖଠାରୁ ଆରମ୍ଭ କରି ଆନନ୍ଦ ନଗର ପର୍ଯ୍ୟନ୍ତ ଯାତ୍ରା ନିମନ୍ତେ ଆମେ ଆସିଛୁ। ସାଧାରଣ ଜୀବନ ହେଉଛି ସୁଖ ଦୁଃଖରେ ଜୀବନ। ଦୁଃଖ ହେଉଛି ସୁଖର ଆଉ ଏକ ରୂପ। ସୁଖ ରହିଛି ଅର୍ଥ ଦୁଃଖ ତା'ର ପାଖେ ପାଖେ ଛାଇ ପରି ରହିଛି। ଗୋଟିଏକୁ ଅନ୍ୟଠାରୁ ବାଦ୍ କରାଯାଇ ପାରିବ ନାହିଁ। କେବଳ ସୁଖ ଓ ଦୁଃଖରେ ବାନ୍ଧି ହୋଇ ରହିଗଲେ ଜୀବନ ଅତି ସାଧାରଣ ଜୀବନରେ ପରିଣତ ହୋଇଯିବ। ଆଉ ଟିକିଏ ଉପରକୁ ଉଠିବାକୁ ହେବ, ଅର୍ଥାତ୍ ଚେତନାମୟ ଜୀବନ ଯାପନ କରିବାକୁ ହେବ। ଅତଏବ ସାଧାରଣ ଜୀବନର ଉନ୍ନତି ପାଇଁ ସାରାଜୀବନର ସମସ୍ତ ସମୟ ଶକ୍ତି ଓ ଦକ୍ଷତାକୁ ନିୟୋଜିତ କରିଦେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ ବା ବିଜ୍ଞତାର ପରିଚୟ ନୁହେଁ।

ଅନ୍ତଃଜୀବନ ହେଉଛି ଚେତନାର ଜୀବନ, ଆତ୍ମବିଶ୍ଳେଷଣ ମାଧ୍ୟମରେ ନିଜ ଭିତରେ ଥିବା ନକାରାତ୍ମକତାକୁ ଖୋଜିବାକୁ ଏଥିରେ ପଡ଼େ। ନିଜ ଭିତରେ ଥିବା କ୍ରୋଧ, ଈର୍ଷା, ହିଂସା, ସ୍ୱାର୍ଥପରତା, ଛଳନା, ପ୍ରତାରଣା, ମିଥ୍ୟା ପ୍ରଭୃତିକୁ ଖୋଜି ଠାବ କରିବାକୁ ପଡ଼େ। ଆତ୍ମନିୟନ୍ତ୍ରଣ ମାଧ୍ୟମରେ ଏଗୁଡ଼ିକୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରିବାକୁ ପଡ଼େ। ଆତ୍ମନିୟନ୍ତ୍ରଣ ଯେତେ ପରିମାଣରେ ଆସେ ଆତ୍ମଶାନ୍ତି ସେତିକି ପରିମାଣରେ ଆସେ। ଅତଏବ ଆତ୍ମ ନିୟନ୍ତ୍ରଣ ହିଁ ଆତ୍ମ ଶାନ୍ତିର ମୂଳ ଉତ୍ସ। ଅବଶ୍ୟ ମଣିଷ ମାତ୍ରକେ ମତ ଗୋଟିଏ। ନିଜର ବିଚାର ବୁଦ୍ଧି ଅନୁସାରେ ମତଟିଏ ଦେବା ଭୁଲ୍ ନୁହେଁ। ପରିବାରରେ ବନ୍ଧୁବାନ୍ଧବରେ ଭିନ୍ନ ଭିନ୍ନ ମତ ରହିବା ସ୍ୱାଭାବିକ, ତାହା ବିଶେଷ ଭୁଲ କଥା ନୁହେଁ, ମାତ୍ର ଭୁଲ୍ କଥାଟି ହେଉଛି ମତାନ୍ତର ସଙ୍ଗେ ସଙ୍ଗେ ମନାନ୍ତରରେ ପରିଣତ ହୋଇଯିବା ଯାହା ଫଳରେ ଜୀବନଧାରା କ୍ଷତିଗ୍ରସ୍ତ ହୋଇଯିବା।

କ୍ରୋଧ ଗୋଟିଏ କଥା ଯାହାକୁ ନିଜ ନିୟନ୍ତ୍ରଣରେ ନରଖିଲେ ତାହାଦ୍ୱାରା ସ୍ୱର୍ଣ୍ଣ ଲଙ୍କା ଘଡ଼ିକରେ ଧ୍ୱଂସ ହୋଇଯାଏ। ସମ୍ପର୍କର, ସହାବସ୍ଥାନର ବିରାଟ ସୌଧ ଘଡ଼ିକରେ ଭାଙ୍ଗିପଡ଼ି ମାଟିରେ ମିଶିଯାଏ।

ଈର୍ଷା ମଧ ଏକ ସାଂଘାତିକ ବ୍ୟାଧି। ସେ ବ୍ୟାଧିକୁ ଔଷଧି ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ। କେବଳ ଆତ୍ମ ନିୟନ୍ତ୍ରଣ ଦ୍ୱାରା ଏହି ବ୍ୟାଧିକୁ ଆୟତ୍ତରେ ରଖିହେବ।



Digitized by PPRACHIN, SOA

ଆୟତ୍ତରେ ରହିଲେ ଈର୍ଷା ବିଶେଷ କ୍ଷତି କରିପାରେ ନାହିଁ। ବରଂ ବ୍ୟବହୃତ ନ ହୋଇ ଦିନକୁ ଦିନ ତା'ର ଶକ୍ତି କ୍ଷୀଣ ହୋଇଯାଏ।

ଏହିପରି ବହୁ କ୍ଷତିକାରୀ ଉପାଦାନ ରହିଛନ୍ତି ଯେଉଁଗୁଡ଼ିକୁ କେବଳ ନିୟନ୍ତ୍ରଣ ଦ୍ୱାରା ଦମନ କରି ହୁଏ, ତାଙ୍କର ଜ୍ୱାଳାମୟ ବିଷମୟ କ୍ରିୟାଶୀଳତାକୁ ଧ୍ୱଂସ କରିହୁଏ।

ଅବଶ୍ୟ, ଏସବୁ କଥାରେ କହିବା ଯେତେ ସହଜ କାର୍ଯ୍ୟରେ ପରିଣତ କରିବା ସେତେ ସହଜ ନୁହେଁ, ତେବେ ଅସମ୍ଭବ ନୁହେଁ। ଅଭ୍ୟାସ ବଳରେ ଟିକିଏ ଟିକିଏ ନିୟନ୍ତ୍ରଣ କଲେ ଏମାନେ ନିୟନ୍ତ୍ରଣାଧୀନ ହୁଅନ୍ତି। ଏଥିପାଇଁ ଦରକାର ସଚେତନତା, ନିଜଠାରୁ ବିଶ୍ୱ ପର୍ଯ୍ୟନ୍ତ ଲମ୍ୱିଯାଇଥିବା ସଚେତନତା। ଏଇ ସଚେତନତାର ଅଭାବ ଆଜି ବିଶ୍ୱବ୍ୟାପୀ। ଆମେ ଏଇ ଅଭାବ ପୂରଣ ସଂସ୍ଥାର ଜଣେ ଜଣେ ସଦସ୍ୟ ହେବା ନାହିଁକି ?





Digitized by PPRACHIN, SOA

# 'ନୂଆ ଜୀବନ : ନୂଆ ସ୍ୱାଦ'

ବିଶ୍ୱପ୍ରକୃତିରେ ଛନ୍ଦ ଅଛି । ରାତି ପରେ ଦିନ ଓ ଦିନ ପରେ ରାତି ଏକ ସୁଷମ ଛନ୍ଦରେ ଛନ୍ଦାୟିତ । ଗ୍ରୀଷ୍ମ ପରେ ବର୍ଷା ଓ ବର୍ଷାପରେ ଶରତ ପ୍ରଭୃତି ଋତୁମାନେ ଏକ ଛନ୍ଦରେ ଆତଯାତ । ଶ୍ରାବଣର ବର୍ଷାଧାରାରେ ଓ ଫଗୁଣର ପବନ ପ୍ରବାହରେ ଏକଏକ ଛନ୍ଦ ଅନୁଭୂତ ହୁଏ । ଇନ୍ଦ୍ରଧନୁର ରଙ୍ଗ ସଜ୍ଜାରେ ପୁଣି ବିଜୁଳିର ଝଲକରେ ଏକଏକ ଛନ୍ଦ ଥିବାର ଦେଖାଯାଏ । ଝରଣାର ଝରଝର ତାନରେ ଏବଂ ନଦୀର କଳକଳ ଗାନରେ ଛନ୍ଦମୟତା ଥାଏ । ଏସବୁ ଭିତରେ ରହି ମଧ୍ୟ ମଣିଷ ଜୀବନରେ ଛନ୍ଦ ନାହିଁ ବରଂ ଅଛି ବିଛନ୍ଦର ଜଟିଳତା ।

ଏଇ ଜଟିଳତାର କାରଣମାନ ଖୋଜିବାକୁ ଗଲେ ଯେଉଁ କାରଣଟି ମୁଖ୍ୟ ଭାବରେ ମିଳିବ ତାହା ହେଉଛି ଅହମିକା ଓ ଅହମିକାଜନିତ ଅଜ୍ଞାନତା । ଆଜିର ଶିକ୍ଷାର ଆଲୋକରେ ଅହମିକାର ଅନ୍ଧାର ଯାଉନାହିଁ, ବରଂ ଅଧିକରୁ ଅଧିକ ନିଜକୁ ଜାହିର କରୁଛି । ଡିଗ୍ରୀ ବଢ଼ିଛି, ଡିଗ୍ରୀଧାରୀଙ୍କ ସଂଖ୍ୟା ବଢ଼ିଛି ମାତ୍ର ଶିକ୍ଷିତ ମାନଙ୍କର ସଂଖ୍ୟା ସେଇ ଅନୁପାତରେ ବଢ଼ି ନାହିଁ। ଆଇନ୍‌ର କଟକଣା ବଢ଼ିଛି ମାତ୍ର ଚୋରି, ଗୁଣ୍ଡାମି ଓ ଡକାୟତି କମି ନାହିଁ। ଆତଙ୍କବାଦର ଘନଘଟା ବଢ଼ିଛି, ବଢ଼ି ବଢ଼ି ଆତଙ୍କବାଦ ଏକ ଆତଙ୍କରେ ପରିଣତ ହୋଇଛି । ଏହାର ଦୂରୀକରଣ ନିମନ୍ତେ ବହୁ ବ୍ୟବସ୍ଥା, ଆଲୋଚନା ଓ ପର୍ଯ୍ୟାଲୋଚନା ସମଗ୍ର ବିଶ୍ୱରେ ଅନୁଷ୍ଠିତ ହେଉ଼ଛି, ମାତ୍ର ସମସ୍ୟାର ପୂର୍ଣ୍ଣ ସମାଧାନର ଦିଗନ୍ତ ଉଦ୍‌ଘାଟିତ ହୋଇପାରୁ ନାହିଁ। ସର୍ବତ୍ର ଭୁଲ ବୁଝାମଣା ଅତି ସହଜ ହୋଇଛି, ଠିକ୍ ବୁଝାମଣା ହୋଇଛି ଦୁରୁହ ବ୍ୟାପାର । ବିଦ୍ରୋହ, ବିରକ୍ତି ଓ କ୍ରୋଧର ବାସସ୍ଥାନ ହୋଇଛି ମଣିଷର ମନ । ସହନଶୀଳତା, ସମ୍ବେଦନଶୀଳତା ସର୍ବୋପରି ସୁକୁମାରତା ସୁଦୂର ପରାହତ ହୋଇଛି । ବୟସରେ ସାନବଡ଼ ପୁଣି ସ୍ଥାନ କାଳ ପାତ୍ରର ବିଚାର ବିବେଚନା ବେଳକୁ ବେଳ କମି କମି ଯାଉଛି । ବଡ଼ପାଟିଆଙ୍କ ବାହାଦୂରିଆ କଥାକୁ ଶ୍ରୋତା ଠିକ୍ ବୋଲି ବିଚାର କରୁଛି । 'ଫମ୍ପା ମାଠିଆର ଶବ୍ଦ ବେଶୀ' – ଏକଥାର ଅର୍ଥ ଦିନକୁ ଦିନ ଫିକା ପଡ଼ି ଯାଉଛି । ବ୍ୟକ୍ତିଗତ ଲାଭର ଲାଳସା, ସ୍ୱାର୍ଥ ସିଦ୍ଧି ଜନିତ ଆସୁରିକ ଆନନ୍ଦ ପାଇଁ ଜଣେ ଅନ୍ୟ ଜଣଙ୍କର ଅଥବା ବହୁ ଜଣଙ୍କର ପ୍ରାଣ ହାନିର କାରଣ ହେଉଛି । ସେତେବେଳେ କେହି ତାକୁ ପଛରୁ ଟାଣି ଧରୁନାହିଁ, 'ନାହିଁ' 'ନାହିଁ' ବୋଲି କହୁ ନାହିଁ। 'ଯେଉଁ କଥାଟି ପଛରୁ



Digitized by PPRACHIN, SOA

ଟାଣି ଧରନ୍ତା, ସେଇ କଥାଟି ଅର୍ଥାତ୍ ସଚେତନତା ତଥା ସକାରାତ୍ମକତା କମିଯାଉଛି। ସଚେତନତା ଓ ସକାରାତ୍ମକତା ଗୋଟିଏ ମୁଦ୍ରାର ଦୁଇପାଖ ପରି ପରସ୍ପର ସହ ଓତପ୍ରୋତ ଜଡ଼ିତ। ଗୋଟିକରୁ ଅନ୍ୟଟିକୁ ଅଲଗା କରି ହେବ ନାହିଁ। ସକାରାତ୍ମକତା କମିଯିବାରୁ ନକରାତ୍ମକତା ବଢ଼ିଯାଉଛି। ନକରାତ୍ମକତା ବଢ଼ିଯିବାରୁ ବ୍ୟକ୍ତି ବ୍ୟକ୍ତି ଭିତରେ ଏବଂ ସଂସ୍କୃତି ସଂସ୍କୃତି ଭିତରେ ଶ୍ରଦ୍ଧା ଓ ସହଯୋଗ କମିଯାଉଛି। ପରସ୍ପର ପ୍ରତି ଅନୁମୋଦନ ରହୁନାହିଁ। ଆତ୍ମୀୟତା ପରିବର୍ତ୍ତେ ଅସହିଷ୍ଣୁତା ବଢ଼ିଯାଉଛି। ନକାରାତ୍ମକତା ଯେ ଆମକୁ ଟିକ୍ ଟିକ୍ କରି ଖାଇଯାଉଛି, ଏକଥା ଆମକୁ ଜଣାପଡୁନାହିଁ। ବିଷାଦର ଘନ କୁହୁଡ଼ିକୁ ଆନନ୍ଦର ସୂର୍ଯ୍ୟ କିରଣ ଭେଦ କରିପାରୁ ନାହିଁ। ବିଷାଦ ଓ ଅବସାଦ ଯୋଗୁଁ ମନ ଦୁର୍ବଳ ହୋଇଯାଉଛି। ଦୁର୍ବଳ ମନ ହେଉଛି କ୍ରୋଧ ଓ ବିଦ୍ରୋହର ଚାରଣ ଭୂମି। ମନସ୍ତତ୍ତ୍ୱବିତ୍‌ମାନେ କହନ୍ତି ଯେ ଯିଏ ଯେତେ ଦୁର୍ବଳ ସେ ସେତେ କ୍ରୋଧୀ ଓ ବିଦ୍ରୋହୀ।

ବାସ୍ତବରେ ନକାରାତ୍ମକତା ହେଉଛି ଆଜି ବିଶାଳ ବିଶ୍ୱର ବିରାଟ ଶତ୍ରୁ, ବିଷମ ବ୍ୟାଧି। ଏଇ ବ୍ୟାଧି ପାଇଁ ଭେଷଜ ବିଜ୍ଞାନରେ ଔଷଧ ନାହିଁ। ମନୋବିଜ୍ଞାନରେ ଯେଉଁ ପ୍ରତିଷେଧକଟି ରହିଛି, ତାହା ହେଉଛି ସକାରାତ୍ମକତା। ଏଥିପାଇଁ ଆବଶ୍ୟକ ଯାହା ଆମର ଅଛି ଓ ଆମ ପାଖରେ ରହିଛି ସେସବୁର ତାଲିକା ପ୍ରସ୍ତୁତ କରିବା। 'ନାହିଁ'ର ତାଲିକା କରିବା ଦ୍ୱାରା ମନ ହୋଇଯାଉଛି 'ନାହିଁ ମୟ'। ଅଶାନ୍ତି, ଦୁଃଖର ହିମଖଣ୍ଡ ମନରେ ଅଜାଡ଼ି ହୋଇପଡୁଛି। ଏସବୁ ସମସ୍ୟାର ସମାଧାନର ଚାବିକାଠିଟି ହେଉଛି ଖୁସି ରହିବା। ଖୁସି ରହିବା ଆଦୌ ଧନର ପରିମାଣ ବା ବସ୍ତୁର ପରିମାଣ ଉପରେ ନିର୍ଭର କରେ ନାହିଁ। ନିର୍ଭର କରେ ମନୋବୃତ୍ତି ଉପରେ। ଭିତରେ ଖୁସିଭାବ ରହିଲେ ଅଶାନ୍ତି, ଅସନ୍ତୋଷ, ବିରକ୍ତି, କ୍ରୋଧ, ଅସହାୟତା ସମେତ ବହୁ ନକାରାତ୍ମକତା ବହୁ ପରିମାଣରେ କମିଯିବ। ଫଳତଃ ମନରେ ଆସିବ ପ୍ରସନ୍ନତା ଓ ପ୍ରଫୁଲ୍ଲତା। ଜୀବନ ଓ ପରିବେଶ ସୁସ୍ଥ ଓ ସୁନ୍ଦର ହେବ। ବହୁ ଅସଜଡ଼ା କଥା ଆପେ ଆପେ ସଜାଡ଼ି ହେବାକୁ ଆରମ୍ଭ କରିବ। ଅବଶ୍ୟ ଦିନକରେ ନୁହେଁ, ଆରମ୍ଭ କଲେ ଓ ଅଭ୍ୟାସ କଲେ ଖୁସି ଭାବଟି ଆସିବ ଓ ବଢ଼ିବ। ଆମ ଭିତରେ ଅଛି ଖୁସି ଭାବର ମଳୟ ବିଳାସ ଓ ମନ୍ଦାକିନୀ ଧାରା। ଆମେ କିନ୍ତୁ ବାଉଳା ହୋଇ ବାହାରେ ଖୋଜୁଛୁ। ଧନସମ୍ପଦ, ଯଶପ୍ରଶଂସା, ଆଧିପତ୍ୟ ଓ ପ୍ରଭୁତ୍ୱ ଭିତରେ ଖୋଜୁଛୁ। ଯାହା ଯେଉଁଠି ନାହିଁ ତାହକୁ ସେଇଠି ଖୋଜିଲେ, ତାହା ତ ମିଳୁନାହିଁ ବରଂ ନମିଳିବା ଜନିତ ଅଶାନ୍ତି ବଢ଼ିଯାଉଛି।

ଆମେ ପ୍ରତ୍ୟେକ ଏକ ଏକ କସ୍ତୁରୀ ମୃଗ। ଆମ ନାଭିର କସ୍ତୁରୀରେ ମହକ ଅଛି, ଆମେ କିନ୍ତୁ ବାହାରେ ବୁଲି ବୁଲି ପଥହରା ଓ ଦିଗହରା। ଆମ ଖୁସି ଭାବକୁ ଆମେ ଆବିଷ୍କାର କରିବା ଆମ ଭିତରେ, ଆମ ପାଇଁ କେହି ଏ କାମ କରିପାରିବେ ନାହିଁ।



Digitized by PPRACHIN, SOA

ଅତଏବ କଥାଟି ସତ ଯେ ଆମ ଖୁସି ଆମ ହାତରେ। କାହାକୁ ଦୋଷ ନ ଦେଇ ଅଥବା ନିଜକୁ ଦୋଷ ନ ଦେଇ ଇଚ୍ଛା କରି ଖୁସି ରହିବାକୁ ଆରମ୍ଭ କଲେ କିଛି ଦିନ ପରେ ସମସ୍ୟାସବୁର ପ୍ରକୋପ ଅଧେ କମିଯିବ। ଆଉ ଯାହା ରହିବ ତାହା ଆସ୍ତେ ଆସ୍ତେ କମିଯିବ । ଭିତରେ ଖୁସି ଭାବ ରହିଲେ ବିପଦ ଆସିଲେ ମଧ ତାହା ଆମକୁ ଭାଙ୍ଗି ପାରିବ ନାହିଁ, ବରଂ ଆମେ ତାକୁ ଭାଙ୍ଗି ଦେବାକୁ ସମର୍ଥ ହୋଇପାରିବା। ଅନ୍ଧାର ତ କେବଳ ଆଲୁଅକୁ ଡରେ, ଆଲୁଅ ଆସିଲେ ଅନ୍ଧାର ରହିପାରିବ ନାହିଁ, ଅପସରି ଯିବାକୁ ବାଧ ହେବ। ଚାବିକାଠିଟି ଆମ ହାତରେ ଅଛି, ମାତ୍ର ଅଜ୍ଞାନତା ବଶତଃ ଏହା ଆମେ ଜାଣିପାରୁ ନାହୁଁ। ଆଉ ଅଜ୍ଞାନତା ଆମକୁ ବେଶୀଦିନ କବଳିତ କରି ରଖିପାରିବ ନାହିଁ। ଖୁସି ଭାବର ଆଲୋକରେ ଜୀବନକୁ ଆଲୋକିତ କଲେ ଜୀବନର ସ୍ୱାଦ ବଦଳିଯିବ। ଆମେ **ଅମୃତର ସନ୍ତାନ**। ଅମୃତର ସନ୍ତାନ ପାଖରେ ଅମୃତର ସ୍ୱାଦ ଆଉ ଅପହଞ୍ଚ ହୋଇ ରହିବ **ନାହିଁ। ଅମୃତ**ର ସ୍ୱାଦ ମିଳିଲେ ପୃଥିବୀରେ ସ୍ୱର୍ଗୀୟ ଲାବଣ୍ୟ ଝରିପଡ଼ିବ ଓ ଦିଗଦିଗନ୍ତରେ ଆନନ୍ଦର ବର୍ଣ୍ଣବିଭା ଭରିଯିବ। ଆମେ ଏଇ ଦିବ୍ୟ ପ୍ରୟାସଟି ପାଇଁ ଆଜି ହିଁ ପ୍ରଯତ୍ନ ଆରମ୍ଭ କରିବା।





Digitized by PPRACHIN, SOA

# ବିଶ୍ୱପ୍ରକୃତି ଓ ଆମେ

ବିଶ୍ୱପ୍ରକୃତି ଆମକୁ ବଞ୍ଚାଇଛି ଓ ବଢ଼ାଇଛି। ଆମେ ଆସିବା ଆଗରୁ ସେ ଏଇ ପୃଥିବୀରେ ଥିଲା। ମାଟି ହୋଇ ସେ ଅନ୍ୟ ପ୍ରାଣୀମାନଙ୍କୁ ଏବଂ ଆମକୁ ତା ଉପରେ ଲୀଳା ଖେଳା କରିବାକୁ ଅନୁମତି ଦେଇଛି। ଆମର ଅଳି ଅର୍ଦ୍ଦଳି ଅଧିକରୁ ଅଧିକ ସମ୍ଭାଳିଛି। ଗଛପତ୍ର ହୋଇ ଆମକୁ ଖାଦ୍ୟ ଯୋଗାଉଛି, ଅମ୍ଳଜାନ ହୋଇ ଆମର ବଞ୍ଚିବାର ଉପାଦାନ ଯୋଗାଉଛି, ଜଳ ହୋଇ ଆମର ଜୀବନ ରକ୍ଷା କରିଛି। ସମୁଦ୍ର ହୋଇ ନିଜେ ଉତ୍ତପ୍ତ ହୋଇ ଆମ ପାଇଁ ବର୍ଷା ସୃଷ୍ଟି କରିଛି। ବିବିଧ ସୌନ୍ଦର୍ଯ୍ୟରେ ବିମଣ୍ଡିତ ହୋଇ ଆମର ମନୋରଞ୍ଜନ କରିଛି। ଆମକୁ କରାଇଛି କବି, ଶିଳ୍ପୀ, ଅଭିନେତା, କଳାକାର ଓ ବୈଜ୍ଞାନିକ। ଅତଏବ ବିଶ୍ୱପ୍ରକୃତି ଜଡ଼ ନୁହେଁ, ସେ ଜୀବନ୍ତ ଓ ସଦା ସଚେତନ।

ଆମେ ଏସବୁ ଜାଣି ମଧ୍ୟ କିଛି ନଜାଣିଲା ପରି ତା' ପ୍ରତି ବ୍ୟବହାର କରୁଅଛୁ। ଆମର ସୁଖ ସୁବିଧା ପାଇଁ ବାୟୁମଣ୍ଡଳର ଓଜନ ସ୍ତରରେ ଛିଦ୍ର ହେବା ପର୍ଯ୍ୟନ୍ତ କେତେ କ'ଣ କରିଛୁ। ଛିଦ୍ର ହୋଇଛି ଓ ସେଇ ଛିଦ୍ରବାଟେ ସୂର୍ଯ୍ୟଙ୍କଠାରୁ ଅଲଟ୍ରା ଭାଓଲେଟ୍ ରଶ୍ମି ପୃଥିବୀକୁ ଆସିଯାଉଛି। ଫଳତଃ ଆମେ ଅଂଶୁଘାତର ଶିକାର ହେଉଛୁ। ପାଣିପବନ ବେଳକୁ ବେଳ ଅଧିକରୁ ଅଧିକ ଉତ୍ତପ୍ତ ହେବାରେ ଲାଗିଛି। ବିଶ୍ୱପ୍ରକୃତି ଏଥିରେ ବିଚଳିତ ହେବାକୁ ବାଧ୍ୟ ହେଉଛି। ଜଣାଯାଇଛି ଯେ ଆଣ୍ଟାର୍କଟିକାରେ ବରଫ ପୂର୍ବାପେକ୍ଷା ଦୁଇଗୁଣ ହାରରେ ତରଳୁଛି। ଏହି ବେଗରେ ବରଫ ତରଳିଲେ ସମୁଦ୍ରର ଜଳସ୍ତର ବଢ଼ିଯିବାର ସମ୍ଭାବନା ରହିଛି। ଏହାର କୁପ୍ରଭାବ ସମୁଦ୍ର ତଟ ଭୂମି ଅଞ୍ଚଳରେ ବହୁ ପ୍ରକାରେ ପଡ଼ିବ ବୋଲି କୁହାଯାଉଛି। ବିଶ୍ୱପ୍ରକୃତି ସହନଶୀଳ ଓ ସର୍ବଂସହା ହୋଇ ମଧ୍ୟ ବେଳେ ବେଳେ ବିବ୍ରତ ହେବାକୁ ବାଧ୍ୟ ହେଉଛି। ଏସବୁ ଘଟୁଛି ଆମର ବିଚାର ବିଭ୍ରାଟ ଯୋଗୁଁ। ପ୍ରକୃତି ଆମକୁ ବେଳେ ବେଳେ ଚେତାବନି ଦେଉଛି, ସତର୍କ କରାଉଛି ତଥାପି ଆମେ ଶୁଣୁନାହୁଁ କି ବୁଝୁନାହୁଁ। ଆମେ କହିଲେ ଏଠାରେ କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳର ଲୋକମାନଙ୍କ କଥା କୁହାଯାଉ ନାହିଁ, ବରଂ ସମଗ୍ର ମାନବ ଜାତିର କଥା କୁହାଯାଉଛି। ସମୁଦ୍ରରେ ଆବଶ୍ୟକତାଠାରୁ ଅଧିକ ପରୀକ୍ଷା ନିରୀକ୍ଷା କରି ଆମେ ସମୁଦ୍ରର ଜଳ ଓ ତଳଭାଗକୁ କଳୁଷିତ ଓ ବ୍ୟତିବ୍ୟସ୍ତ କରି ପକାଉଛୁ। ସମୁଦ୍ର ଜଳରେ ଥିବା ପ୍ରାକୃତିକ ରାସାୟନିକ ଉପାଦାନ ଭିତରେ ଭାରସାମ୍ୟ ରହୁନଥିବାରୁ ତାହାର ପ୍ରଭାବ ଜଳଜୀବମାନଙ୍କ ଉପରେ ପଡୁଛି। ସମୁଦ୍ରର ଜଳରାଶି ଓ ସମୁଦ୍ରର ନିମ୍ନ ଦେଶରେ ଅସ୍ୱାଭାବିକତା ରହୁଥିବାରୁ ତାହା ସମୁଦ୍ର ଭିତର ଅଂଶରୁ ଭୂମିକମ୍ପ ଅର୍ଥାତ୍ ସୁନାମିର ସୂତ୍ରପାତର ଅନ୍ୟତମ କାରଣ ହେଉଛି।



Digitized by PPRACHIN, SOA

ବିଜ୍ଞାନର ଅବଦାନ ଆମ ପାଇଁ ଅବିସ୍ମରଣୀୟ ମାତ୍ର ଏହାର ଅପବ୍ୟବହାର ଜନିତ କ୍ଷତି ଅପୂରଣୀୟ। ଆମକୁ ବୁଦ୍ଧି ଓ ବିଚାର ଶକ୍ତି ମିଳିଛି ଅପପ୍ରୟୋଗ ପାଇଁ ନୁହେଁ ବରଂ ସବୁକଥାର ଯଥାର୍ଥ ପ୍ରୟୋଗ ନିମନ୍ତେ। ଆମେ ଯଦି ତାହା ନ କରିବା ତେବେ କାହାକୁ ଦୋଷ ଦେବା, ସବୁ ଅଘଟଣ ପାଇଁ କାହାକୁ ଦାୟୀ କରିବା ? ଦେଶ ଦେଶ ଭିତରେ କେତେ ମାରଣାସ୍ତ୍ରର ପ୍ରସ୍ତୁତି ଓ ପରୀକ୍ଷା ହେଉଛି। କେବଳ ପରୀକ୍ଷା ନୁହେଁ କେତେ ଦେଶରେ ତାହାର ପ୍ରୟୋଗ ମଧ୍ୟ ବହୁ ଭାବରେ ଚାଲିଛି। ଏସବୁ କଥାର ମୂଳକଥାଟି ଆଧିପତ୍ୟ ବିସ୍ତାରର ମନୋଭାବ। ଧନ, ଜନ, ସମ୍ପଦ, ସୁବିଧା ସବୁ ବଢ଼ିଲା ମାତ୍ର ଏହା କମିଲା ନାହିଁ କି ମଣିଷ ପଣିଆ ବଢ଼ିଲା ନାହିଁ। ଦେଶ ଦେଶ ଭିତରେ, ଜାତି ଜାତି ଭିତରେ ସ୍ନେହ ଶ୍ରଦ୍ଧା ବଢ଼ିଲା ନାହିଁ। ପ୍ରତ୍ୟେକ ନିଜକୁ ବଡ଼ ଓ ଅନ୍ୟକୁ ସାନ ଭାବିବାର ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ।

ସତରେ ମଣିଷକୁ ଶ୍ରେଷ୍ଠ ସୃଷ୍ଟି ଭାବରେ ପୃଥିବୀକୁ ଅଣାଯାଇଥିଲା। ସେହି ଶ୍ରେଷ୍ଠ ସୃଷ୍ଟି ଭାବରେ ପରିଚିତ ଓ ପରିଗଣିତ ମଣିଷ ହେବାକୁ ବସିଛି ପୃଥିବୀର ଧ୍ୱଂସର କେତେ କାରଣ ଭିତରେ ଏକ ବିଶିଷ୍ଟ କାରଣ। ଦେଶମାନେ ବିଶେଷ କରି ବଡ଼ ବଡ଼ ଦେଶମାନେ ଏହି ଗମ୍ଭୀର ବିଷୟଟିକୁ ଯଦି ଟିକିଏ ବୁଝନ୍ତେ ତେବେ ବିଜ୍ଞାନ ଓ ଅନ୍ୟସବୁ କଥାର ସଦ୍‌ବ୍ୟବହାର କରାଯାଇ ପୃଥିବୀକୁ ଆହୁରି ସୁନ୍ଦର ଓ ମଧୁର କରାଯାଇ ପାରନ୍ତା। ଆମ ଦେଶ କୌଣସି ଦେଶକୁ ଆଗୁଆ ଆକ୍ରମଣ କରିନାହିଁ। ସେହିପରି ପୃଥିବୀର ଅନ୍ୟାନ୍ୟ ଦେଶ ଯଦି ପରସ୍ପର ଉପରେ ଆକ୍ରମଣ ନ କରନ୍ତେ ଏବଂ ପାରସ୍ପରିକ ଆଲୋଚନା ମାଧ୍ୟମରେ ସବୁ ସମସ୍ୟାର ସମାଧାନ କରନ୍ତେ ତେବେ ପୃଥିବୀ କ୍ରମେ କ୍ରମେ ଆହୁରି ସୁନ୍ଦର ହୁଅନ୍ତା, ଆନନ୍ଦ ଓ ଶାନ୍ତିର ପୁଣ୍ୟଧାମ ହୋଇପାରନ୍ତା।

ଏକଥା ଜାଣିବା ଓ ଜଣାଇବା ଯଥେଷ୍ଟ ନୁହେଁ, କ୍ରିୟାରେ ପରିଣତ କରିବାକୁ ପ୍ରଯତ୍ନ ଏକାନ୍ତ ଜରୁରୀ। ଏ ଦିଗରେ ପ୍ରତ୍ୟେକ ଦେଶର ପ୍ରତିନିଧିମାନଙ୍କୁ ନେଇ ଏକ ବିଶ୍ୱ ସଂଘ ଗଠନ ଆବଶ୍ୟକ। ସେହି ବିଶ୍ୱସଂଘ ଜରିଆରେ ବିଶ୍ୱବାତାବରଣର ସୁରକ୍ଷା ଓ ବିଶ୍ୱଶାନ୍ତିର ପ୍ରତିଷ୍ଠାର ପ୍ରୟାସ ଆବଶ୍ୟକ। ଖାଲି ସଭାସମିତି, ଆଲୋଚନା ଚକ୍ର, ସମ୍ମିଳନୀ ଯଥେଷ୍ଟ ନୁହେଁ, ଏଥି ସହିତ ପ୍ରତ୍ୟେକ ଦେଶର ଶିକ୍ଷାନୁଷ୍ଠାନ ମାନଙ୍କରେ ପାଠ୍ୟଖସଡ଼ାରେ ପରିବେଶ ସୁରକ୍ଷା ସହିତ ପାରସ୍ପରିକ ବୁଝାମଣା ଓ ଭ୍ରାତୃଭାବର ବିକାଶ ପାଇଁ ପାଠ୍ୟକ୍ରମ ରହିବା ବାଞ୍ଛନୀୟ। —

ଆମେ ଏତିକିବେଳରୁ ସଚେତନ ନ ହେଲେ ଦିନ ଆସିବ ଯେତେବେଳେ ପରିବେଶ ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବ ଏବଂ ଜୀବନ ଧାରଣ କଷ୍ଟ ହୋଇପଡ଼ିବ। ଏହି ସଚେତନତା ହିଁ ବିଶ୍ୱର ସୁରକ୍ଷାର ଅନ୍ୟନାମ। ଆମ ବିଶ୍ୱର ସୁରକ୍ଷା ହିଁ ଆମର ସୁରକ୍ଷା, ଏକଥା ବୁଝିବା ଆଜିର ପ୍ରଥମ ଓ ପ୍ରଧାନ ଆବଶ୍ୟକତା।





Digitized by PPRACHIN, SOA

# ଅନୁଚିନ୍ତନ

ଆତ୍ମଚେତନାର ବିବର୍ତ୍ତନରେ ଜୀବନର ସାର୍ଥକତା ନିହିତ। ଚେତନାର ବିବର୍ତ୍ତନ ହେଉଛି ରୂପ ପରିବର୍ତ୍ତନର ଭିତ୍ତି। ଡାରଉଇନ୍‌ଙ୍କ ବିବର୍ତ୍ତନବାଦ କହେ ରୂପ ପରିବର୍ତ୍ତନର କଥା। ଆତ୍ମିକ ପରିବର୍ତ୍ତନର କଥା ସେ କହେନାହିଁ। ପ୍ରକୃତରେ ଆତ୍ମିକ ପରିବର୍ତ୍ତନର ବିନା ଆଙ୍ଗିକ ପରିବର୍ତ୍ତନ ଅସମ୍ଭବ। ଆତ୍ମିକ ପରିବର୍ତ୍ତନ ହିଁ ଆଙ୍ଗିକ ପରିବର୍ତ୍ତନର ହେତୁ ବୋଲି ଶ୍ରୀଅରବିନ୍ଦ କହିଛନ୍ତି। ଚେତନାର ବିବର୍ତ୍ତନ ଫଳରେ ପ୍ରାଣୀର ପରୀକ୍ଷାଗାରରୁ ମାନବର ସୃଷ୍ଟି ହୋଇଛି। ବର୍ତ୍ତମାନ ମାନବର ପରୀକ୍ଷାଗାରରେ ଅତିମାନବର ସୃଷ୍ଟି ପାଇଁ ପ୍ରକ୍ରିୟାମାନ ଚାଲୁ ରହିଛି। ପ୍ରାଣର ପ୍ରକଟନରେ ପ୍ରାଣୀର ସୃଷ୍ଟି ଯେପରି ଘଟିଥିଲା, ମନର ପ୍ରକଟନରେ ମାନବର ସୃଷ୍ଟି ସେପରି ଘଟିଥିଲା। ମନର ପ୍ରକଟନ ଫଳରେ ପ୍ରାଣୀର ଶରୀର ରୂପାନ୍ତରିତ ହେଲା ମାନବର ଶରୀରକୁ। ଆଗ ମନର ପ୍ରକଟନ ଓ ପରେ ଶାରୀରିକ ଅବସ୍ଥାର ପରିବର୍ତ୍ତନ କିମ୍ବା ମନ ସହିତ ସମାନ ଭାବରେ ଶାରୀରିକ ଅବସ୍ଥାର ପରିବର୍ତ୍ତନ - ଏଇ ଦୁଇଟି କଥା କଥା ଭିତରୁ ଦ୍ୱିତୀୟ କଥାଟି ଅଧିକ ଯୁକ୍ତିଯୁକ୍ତ ମନେହୁଏ। ଅତଏବ ସୂକ୍ଷ୍ମ ପରିବର୍ତ୍ତନ ଯୋଗୁଁ ସ୍ଥୂଳ ପରିବର୍ତ୍ତନ ସମ୍ଭବ ହୁଏ। ଚେତନା ଏକ ସୂକ୍ଷ୍ମ ତତ୍ତ୍ୱ ଯାହାର ବିବର୍ତ୍ତନ ଘଟୁଛି ଆମେ ଜାଣୁକି ନ ଜାଣୁ। ଏହା ପ୍ରକୃତିର କ୍ରିୟା, ସ୍ୱାଭାବିକ କ୍ରିୟା। ମଣିଷର ମନ ପ୍ରାୟତଃ ବିକଶିତ ହୋଇ ସାରିଲାଣି। ଏଇ ବିକଶିତ ମନ ବୁଦ୍ଧିର ଭିତ୍ତିରେ ବିଜ୍ଞାନର ସ୍ଥିତି ଓ ଅଗ୍ରଗତି ସମ୍ଭବ ହୋଇଛି। ବିଜ୍ଞାନର ଅବଦାନ ବାହ୍ୟଜୀବନର ପୂର୍ଣ୍ଣତା ଆଣିଛି। ବାକି ରହିଛି ଅନ୍ତଃଜୀବନର ପୂର୍ଣ୍ଣତା ଓ ସମୃଦ୍ଧି। ବିଜ୍ଞାନ ବଳରେ ମଣିଷ ଉଡ଼ିପାରୁଛି ଆକାଶରେ, ଅଳ୍ପ ସମୟ ମଧ୍ୟରେ ଅଳ୍ପ ପରିଶ୍ରମରେ ପୃଥିବୀର ଗୋଟିଏ ସ୍ଥାନରୁ ଆଉ ଏକ ଦୂରତମ ସ୍ଥାନକୁ ଯାଇପାରୁଛି। ଗୋଟିଏ ସ୍ଥାନରେ ରହି ଅନ୍ୟ ଦୂରତମ ସ୍ଥାନର ଖବର ନିମିଷକେ ପାଇପାରୁଛି, ନିଜ ଦେହରୁ ନିଜପରି ଆଉ ଏକ ଦେହ ସୃଷ୍ଟି କରିପାରୁଛି, ବହୁ ଦୂରରେ ରହି ଅନ୍ୟର ଛବି ଓ କ୍ରିୟାକଳାପକୁ ଦେଖିପାରୁଛି ଇତ୍ୟାଦି ଇତ୍ୟାଦି। ଏସବୁ ପୂର୍ଣ୍ଣାଙ୍ଗ ପୂର୍ଣ୍ଣତା ନୁହେଁ, ଏସବୁ ସହାୟକ ହୋଇପାରନ୍ତି ପୂର୍ଣ୍ଣାଙ୍ଗତା ପାଇଁ।

ଅନ୍ତଃ ଜୀବନର ବିକାଶ ହିଁ ବିକାଶର ଅସଲ ମନ୍ତ୍ର, ଚାବିକାଠି। ଏହାର ବିକାଶ ଘଟିଲେ ଉଭୟ ଜୀବନର ସମୃଦ୍ଧିର ସମନ୍ୱୟରେ ହିଁ ଆସିବ ଦିବ୍ୟଜୀବନ, ପୂର୍ଣ୍ଣତାର ଜୀବନ। ଅନ୍ତଃଜୀବନର ବିକାଶ ପାଇଁ ବିଭୁକୃପା ଏକାନ୍ତ ଜରୁରୀ। ଶ୍ରୀଅରବିନ୍ଦଙ୍କ ମତରେ



Digitized by PPRACHIN, SOA

ଶ୍ରୀମାଙ୍କର ଆଗମନ ପୃଥିବୀରେ ଏଇ ପୂର୍ଣ୍ଣତାର ଜୀବନ ନିମନ୍ତେ ଅନ୍ତର୍ଜୀବନର ବିକାଶ ନିମନ୍ତେ। କେବଳ ମା'ଙ୍କର ଶକ୍ତି ହିଁ ଆବଶ୍ୟକ ବିକାଶ ଘଟାଇପାରେ। ଆଧାରକୁ ଗଢ଼ିପାରେ ନୂତନ ରୂପରେ, ଅନ୍ଧକାରକୁ ଦୂରକରି ଖେଳାଇପାରେ ଆଲୋକର ଧାରା। ମନର ବିକାଶ ଘଟାଇ ସୃଷ୍ଟି କରିପାରେ ଅତି ମନ। ପୂର୍ଣ୍ଣଯୋଗୀକୁ କରିପାରେ ଦିବ୍ୟମାନବର ରୂପାନ୍ତିରିତ।

ଏହି ଦୁରୂହ କାର୍ଯ୍ୟଟି ପାଇଁ ଶ୍ରୀମାଶ୍ରୀଅରବିନ୍ଦ ଆସିଛନ୍ତି ଅବତରି ଏହି ମର୍ତ୍ତ୍ୟର ମାଟିକୁ। ଜୀବନର ଅପୂର୍ଣ୍ଣତାକୁ ଦୂର କରିବାରେ ପ୍ରତିବନ୍ଧକ 'ଅହଂ'ର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଛନ୍ତି। ଅହଂର ରୂପାନ୍ତରରେ ହିଁ ଦିବ୍ୟଜୀବନର ପ୍ରକାଶ ଓ ବିକାଶ ସମ୍ଭବ ହେବ। ଶ୍ରୀମା ଏହି ପ୍ରସଙ୍ଗରେ କହିଛନ୍ତି "ମୁଁ ଗୋଟିଏ କଥା କହୁଛି, ତାହା ହେଉଛି ଅହଂର ବର୍ଜନ, ଅହଂର ବର୍ଜନ।" ଶ୍ରୀଅରବିନ୍ଦ ତ ଏହା ଉପରେ ପ୍ରବଳ ଗୁରୁତ୍ୱ ଆରୋପ କରିଛନ୍ତି ଆଉ କହିଛନ୍ତି "Renunciation of ego and acceptance of God in life is Yoga I teach, No other Renunciation."

ପ୍ରକୃତି ମାନବରୁ ଅତିମାନବ ତିଆରି କରିବାକୁ ଲକ୍ଷ ଲକ୍ଷ ବର୍ଷ ଲାଗିଥାଆନ୍ତା, ବହୁ କ୍ଷୟକ୍ଷତି ପୃଥିବୀର ଘଟିଥାଆନ୍ତା ଏହି ବିଳମ୍ବିତ ସମୟ ହେତୁ। ଏହି ବିଳମ୍ବିତ ସମୟକୁ ସ୍ୱଳ୍ପ କରିବା ପାଇଁ ଶ୍ରୀମା ଶ୍ରୀଅରବିନ୍ଦଙ୍କ ଧରାବତରଣ ଓ ସାଧନା ଅଭିପ୍ରେତ। ପଙ୍କକୁ ଯିଏ ଚନ୍ଦନ କରିବ ତାକୁ ପଙ୍କ ଭିତରକୁ ଆସିବାକୁ ହେବ, ଯିଏ ଅନ୍ୟର ଦୁଃଖକୁ ଦୂର କରିବ ତାକୁ ତ ଅନ୍ୟର ଦୁଃଖ ସହ ସାମିଲ ହେବାକୁ ହେବ, ଏଥିରେ ସନ୍ଦେହ ନାହିଁ। ଜଣକୁ ପାଣିରୁ ଉଦ୍ଧାର କରିବାକୁ ହେଲେ ଅନ୍ୟ ଜଣକୁ ପାଣିକୁ ଡେଇଁବାକୁ ହେବ, ଏଥିରେ ଅତିରଞ୍ଜନ ନାହିଁ। ଏହି ପ୍ରସଙ୍ଗରେ ଶ୍ରୀଅରବିନ୍ଦ କହିଛନ୍ତି –

"The day bringer must walk in darkest night
He would save the world must share its pain.
If he knows not grief, how shall he find grief's cure.
He who save the world must be one with the world"

(ସାବିତ୍ରୀ)

ସ୍ୱଳ୍ପ ସମୟ ଭିତରେ ଏତେ ଦୂରତା ଅତିକ୍ରମ କରିବାକୁ ଥିବାରୁ ଗତିକୁ ତ୍ୱରାନ୍ୱିତ କରିବାକୁ ହିଁ ହେବ। ମାତ୍ର ତ୍ୱରାନ୍ୱିତ ଗତିରେ ପ୍ରଗତି ପଥରେ ଅଗ୍ରଗତି କରିବାର ସାମର୍ଥ୍ୟ ଆମ ଦେହ, ପ୍ରାଣ ଓ ମନରେ ନାହିଁ। ତେଣୁ ତ ଏ ସାଧନା ମା' ଆମ ପାଇଁ କରିବା ପାଇଁ ଆସିଛନ୍ତି ଓ କରୁଛନ୍ତି। ଅର୍ଥାତ୍ ମା' ହୋଇଛନ୍ତି ଏ ଯୋଗର ସାଧକ, ସାଧନା ଓ ସିଦ୍ଧି। ତାଙ୍କର ଶକ୍ତି ହିଁ ଆବରଣ ଛିନ୍ନ କରିଦେଇ ପାରିବ, ଆମ ଆଧାରକୁ ଗଢ଼ିତୋଳିବ ନୂତନ



Digitized by PPRACHIN, SOA

ରୂପରେ, ପୂର୍ଣ୍ଣତାର ବିଜୟଶ୍ରୀରେ ଆମର ସତ୍ତାଗୁଡ଼ିକର ନବନିର୍ମାଣ କରିଦେବ। ଏଠାରେ ଆମ ମନରେ ପ୍ରଶ୍ନ ଆସିବ ଯେ ଯଦି ମା' ଆମ ପାଇଁ ସାଧନା କରିଦେବେ, ତେବେ ଆମେ କ'ଣ କରିବା। ଉତ୍ତରରେ କୁହାଯିବ ଯେ ଆମେ ତାଙ୍କୁ ସହଯୋଗ କରିବା। ଆମର ସହଯୋଗ ହିଁ ଆମର ସାଧନା।

ଆମେ କିପରି ତାଙ୍କର ଏଇ ବିରାଟ ଦୁରୂହ କାର୍ଯ୍ୟରେ ସହଯୋଗ କରିବା ତାହା ବର୍ତ୍ତମାନ ଆଲୋଚନା କରିବା। ସହଯୋଗର ପ୍ରଥମ କଥାଟି ହେଉଛି ଅଭୀପ୍‌ସା- ଅଭୀପ୍‌ସା ହେଉଛି ଭଗବାନଙ୍କୁ ପାଇବାର ପ୍ରବଳ ଆକାଙ୍‌କ୍ଷା। ଏହା କାମନା ନୁହେଁ କି ବାସନା ମଧ୍ୟ ନୁହେଁ। ଅଧିକ ଧନ ପ୍ରାପ୍ତିର ଇଚ୍ଛା କାମନାର ବାସନାର ଅନ୍ତର୍ଭୁକ୍ତ ହୋଇପାରେ। ଯଶ, କ୍ଷମତା ପ୍ରାପ୍ତିର ଇଚ୍ଛା ମଧ୍ୟ କାମନାର ବାସନାର ଅନ୍ତର୍ଭୁକ୍ତ ହୋଇପାରେ, ମାତ୍ର ଭଗବାନଙ୍କୁ ଆବିଷ୍କାର, ଉପଲବ୍ଧି ଓ ଅଭିବ୍ୟକ୍ତିର ପ୍ରବଳ ଆଗ୍ରହକୁ ଅଭୀପ୍‌ସା ବୋଲି କୁହାଯିବ। ଅଭୀପ୍‌ସାର ଅନ୍ୟଏକ ଦିଗ ହେଉଛି ଅହରହ ତହିଁରେ ଲାଗିରହିବା। ଲୁହାକୁ ଚୁମ୍ବକ ଟାଣିଲା ପରି ଅଭୀପ୍‌ସା ଟାଣେ ମନକୁ। କ୍ରମେ ପ୍ରାଣକୁ ଓ କ୍ରମେ କ୍ରମେ ଶରୀରକୁ ଭଗବାନଙ୍କ ଆଡ଼କୁ। ଆସ୍ପୃହାର ଶକ୍ତିକୁ ନଷ୍ଟ କରିଦିଏ ଦ୍ୱନ୍ଦ୍ୱ, ସଂଶୟ, ସନ୍ଦେହ ଓ ଅବିଶ୍ୱାସ। ଆସ୍ପୃହା ରୂପକ ଦୀପକୁ ଜଳାଇ ରଖିବାକୁ ହେଲେ ମନକୁ ଉପରୋକ୍ତ ବିରୋଧୀ ଶକ୍ତିମାନଙ୍କ କବଳରୁ ମୁକ୍ତ ରଖିବାକୁ ହେବ। ଏହି ପ୍ରସଙ୍ଗରେ ଶ୍ରୀମା କହନ୍ତି, "ଆସ୍ପୃହା କରିବା ଅତି ଆବଶ୍ୟକ, କିନ୍ତୁ କେତେକ ଲୋକ, ଭିତରେ ଏପରି ଏକ ଅନ୍ତଃଦ୍ୱନ୍ଦ୍ୱ ଥାଇ ଆସ୍ପୃହା କରନ୍ତି ଯେ ବିଶ୍ୱାସ ଓ ଅବିଶ୍ୱାସ ପ୍ରତ୍ୟୟ ଓ ପ୍ରତ୍ୟୟହୀନତା, ଆଶାବାଦ ଯାହା ବିଜୟ ବିଷୟରେ ନିଶ୍ଚିତ ଓ ନିରାଶାବାଦ ଯାହା ନିଜକୁ ପଚାରେ କେତେବେଳେ ବିପତ୍ତି ଓ ବିପର୍ଯ୍ୟୟ ଆସିଯିବ। ପ୍ରକୃତରେ ଯଦି ସତ୍ତା ଭିତରେ ଏପରି ଅନ୍ତଃ ଦ୍ୱନ୍ଦ୍ୱ ଥାଏ, ତେବେ ତୁମେ ଆସ୍ପୃହା କରିପାର, ମାତ୍ର ତୁମେ କିଛି ହେଲେ ପାଅ ନାହିଁ।"

ସମର୍ପଣ : ଭଗବାନଙ୍କର ବୋଲି ଜାଣି ସବୁ ତାଙ୍କୁ ଦେଇଦେବା ହିଁ ସମର୍ପଣ। ଏହା ଦାନ ନୁହେଁ, ତାଙ୍କୁ ଅର୍ପଣ କରାଯାଏ ବୋଲି ତାହାକୁ ସମର୍ପଣ କୁହାଯାଏ। ତାଙ୍କୁ ଦେଇଦେବା ଦ୍ୱାରା ନିଜେ ଉପକୃତ ହେବା ହିଁ ସମର୍ପଣର ଲକ୍ଷ୍ୟ। ତାଙ୍କର ଜଡ଼ର ରୂପ ଓ ଉପାଦାନରୁ ଆମର ଶରୀର ଗଠିତ ହୋଇଛି ଅର୍ଥାତ୍ ବିଶ୍ୱଜଡ଼ରୁ ଆମ ଶରୀର ନିର୍ମିତ ହୋଇଛି। ତାଙ୍କର ପ୍ରାଣର ଉପାଦାନରୁ ଆମ ପ୍ରାଣ ଗଠିତ ହୋଇଛି ଅର୍ଥାତ୍ ବିଶ୍ୱପ୍ରାଣରୁ ଏତେ ଟିକିଏ ପ୍ରାଣଶକ୍ତି ହିଁ ଆମର ପ୍ରାଣ ରୂପେ ପ୍ରକଟିତ ହୋଇଛି। ତାଙ୍କ ମନ-ଉପାଦାନରୁ ଆମ ମନ ଆସିଛି। ବିଶ୍ୱ ମନର ଆମ ମନ ହେଉଛି ଏକ କ୍ଷୁଦ୍ର ଅଂଶବିଶେଷ। ସବୁ ତାଙ୍କର ଧନ, ତାଙ୍କର ଜ୍ଞାନ, ତାଙ୍କର ଯଶ ତାଙ୍କର ପ୍ରଶଂସା। ଆମେ ବ୍ୟବହାର କରୁଛୁ ମାତ୍ର ତାହା ଆମର ନୁହେଁ। ବରଂ ଏଗୁଡ଼ିକର ସଦ୍‌ବ୍ୟବହାର ହିଁ ଆମର କର୍ତ୍ତବ୍ୟ। ଅହଂ ଆମକୁ ଏଗୁଡ଼ିକୁ ଆମର ବୋଲି କହି ଉଦ୍‌ଭ୍ରାନ୍ତ କରୁଛି। ପ୍ରକୃତରେ ତାଙ୍କ ଜିନିଷ ତାଙ୍କର



Digitized by PPRACHIN, SOA

ବୋଲି ବିଚାରି ବ୍ୟବହାର କରିବା ଅର୍ଥ ତାଙ୍କୁ ସୀମାହୀନ ସମ୍ମାନ ଜଣାଇବା। ତାଙ୍କୁ ତାଙ୍କ ଜିନିଷ ମନରେ ଅର୍ପଣ କରିବା ଅଯୁକ୍ତିକର ନୁହେଁ ବରଂ ତାଙ୍କ ଜିନିଷର ଏହାହିଁ ସଦବ୍ୟବହାର। ସମର୍ପଣ ତତ୍ତ୍ୱ ଅନୁସାରେ ଶରୀର ଦେଇ ଦେବ ତା'ର ସମସ୍ତ କର୍ମ, ପ୍ରାଣ ଦେଇଦେବ ତା'ର ସମସ୍ତ ଶକ୍ତି, ମନ ଦେଇଦେବ ତା'ର ସମସ୍ତ ଚିନ୍ତା। ତାଙ୍କୁ ମନେ ମନେ ସବୁ ଦେଇଦେଲେ କିଛି କ୍ଷୁର୍ଣ୍ଣ ହେବ ନାହିଁ, ବରଂ ଅପୂର୍ଣ୍ଣତା ପୂର୍ଣ୍ଣ ହୋଇଯିବ। ତାଙ୍କୁ ଆମର ସବୁକିଛିର ମାଲିକ ଭାବିବା ଦ୍ୱାରା ଓ ନିଜକୁ ତାଙ୍କର ସେବକ ଭାବିବା ଦ୍ୱାରା ସମସ୍ୟାଗୁଡ଼ିକ ଦ୍ୱାରା ଆମେ ଆଉ ଅଧିକ ଆକ୍ରାନ୍ତ ହେବନାହିଁ, ବରଂ ହାଲ୍‌କା ଅନୁଭବ କରିବା। ଶ୍ରୀଅରବିନ୍ଦଙ୍କ ମତରେ "ପୂର୍ଣ୍ଣଯୋଗର ଆରମ୍ଭ ସମର୍ପଣରେ ଓ ଶେଷ ସମର୍ପଣରେ" ଅର୍ଥାତ୍ ନିଜର ସବୁକିଛି ଦେଇସାର ଶେଷକୁ ନିଜକୁ ଦେଇଦେବାକୁ ହେବ। ନିଜକୁ ଦେଇଦେବାକୁ କୁହାଯାଏ ଆତ୍ମନିବେଦନ। ଆତ୍ମନିବେଦନର ପ୍ରଭାବ ଅନନ୍ୟ ଓ ସୁଦୂର ପ୍ରସାରୀ। ଏହା ଆଣେ ଜୀବନର ସାର୍ଥକତା। ଜୀବନର ଲକ୍ଷ୍ୟ ପୂରଣ ଦିଗରେ ଏହା ହୁଏ ସହାୟକ। ଭଲ ମନ୍ଦ, ସୁଖ ଦୁଃଖ, ଅଭାବ ଅସୁବିଧା ସବୁ କିଛିକୁ ସମର୍ପଣ କରିବାକୁ ହେବ। ଭଲ ଚିନ୍ତା ଓ ମନ୍ଦ ଚିନ୍ତା ସବୁକିଛିକୁ ମଧ୍ୟ ଦେଇଦେବାକୁ ହେବ ଆଉ କହିବାକୁ ହେବ "ମୋ ଇଚ୍ଛା ନୁହେଁ, ତୁମ ଇଚ୍ଛା ହିଁ ପୂର୍ଣ୍ଣ ହେଉ।" ପ୍ରତ୍ୟାଶାରଖିଲେ ସମର୍ପଣ ହେବ ନାହିଁ, କୌଣସି ପ୍ରତ୍ୟାଶା ନ ରଖି କେବଳ ସମର୍ପଣର ଆନନ୍ଦ ପାଇଁ ସମର୍ପଣ କରିବାହିଁ ଯଥାର୍ଥ ସମର୍ପଣ। ନିଜକୁ ଓ ନିଜର ଯାହା କିଛି ଅଛି ସହାସ୍ୟରେ ସମର୍ପଣ କରିଦେଲେ ଭାଗବତ ବାଣୀ ସହିତ କଣ୍ଠ ମିଳାଇ ମନ କହିବ।

"ସକଳ ତୀର୍ଥ ତୋ ଚରଣେ
ବଦ୍ରିକା ଯିବି କି କାରଣେ
ଆଶ୍ରମ ନାମ ବଦରିକା
ସେ କି ତୋ ଚରଣୁ ଅଧିକା।"

ସମର୍ପଣ ସହିତ ଅଭୀପ୍ସା ଓ ପ୍ରତ୍ୟାଖ୍ୟାନ ମଧ୍ୟ କ୍ରିୟାଶୀଳ ହେବା ଆବଶ୍ୟକ। ଅନ୍ୟଥା କେବଳ ସମର୍ପଣ ଶତପ୍ରତିଶତ ଫଳପ୍ରଦ ହେବ ନାହିଁ। ସମର୍ପଣ ଭିତରେ ଆମଆତ୍ମ ଉପରକୁ ଉଠିବାକୁ ଚେଷ୍ଟା ରହିବ ଓ ତାହା ହେଲେ ଉପରର ଶକ୍ତି ହାତ ବଢ଼ାଇ ଆମକୁ ଉପରକୁ ଉଠାଇନେବ। ଅବଶ୍ୟ ସମର୍ପଣ ଏକା ଦିନକେ ସମ୍ପୂର୍ଣ୍ଣ ହୁଏ ନାହିଁ। ତେବେ ଦିନେ ଆରମ୍ଭ କଲେ ଓ ଅଭ୍ୟାସ ବଳରେ ତହିଁରେ ଲାଗିରହିଲେ ଫଳ ଯଥାସମ୍ଭବ ଶୀଘ୍ର ଅନୁଭୂତ ହେବ। ଏଥିପାଇଁ ଆବଶ୍ୟକ ଅସୀମ ଧୈର୍ଯ୍ୟ, ଅଶେଷ ସହନଶୀଳତା, ଅତୁଟ ଆସ୍ଥା। ସମର୍ପଣରେ ଆଡ଼ମ୍ବର ନ ଥାଏ, ନିଜକୁ ଜାହିର କରିବାର ପରମ୍ପରା ନଥାଏ। ସମର୍ପଣ ହୁଏ, ସହଜ, ସରଳ, ନୀରବ ଓ ନିର୍ମଳ।





Digitized by PPRACHIN, SOA

# ପୂର୍ଣ୍ଣ ପୃଥିବୀର ଚିତ୍ର

ଆମେ ଯେଉଁଜଗତରେ ରହିଛୁ ତାହା ହେଉଛି ପ୍ରାତିଭାସିକ ଜଗତ। ପ୍ରାତିଭାସିକ ଜଗତର ଅର୍ଥ ହେଉଛି ଛାୟାର ଜଗତ। ଛାୟା ହେଉଛି କାୟାର ଛାୟା। ଛାୟା ରହିଛି ଅର୍ଥ ତା ସହିତ କାୟା ଯୋଡ଼ି ହୋଇରହିଛି। କାହାର ଏ ଛାୟା ଏବଂ କାହାର ଏ କାୟା ? ଏ ଛାୟା ହେଉଛି ଭଗବାନଙ୍କର ଏବଂ ଏ କାୟା ହେଉଛି ଭଗବାନଙ୍କର କାୟା । ସେ ଏ ଜଗତରେ ଅଦୃଶ୍ୟ ମାତ୍ର ଛାୟା ତାଙ୍କର ଦୃଶ୍ୟ। ସେ ସ୍ୱଇଛାରେ ଗଛଲତା ହୋଇଛନ୍ତି, ପାହାଡ଼ ପର୍ବତ ହୋଇଛନ୍ତି, ଫୁଲ, ଫଳ ନଦୀ ଝରଣା ହୋଇଛନ୍ତି, ହୋଇଛନ୍ତି କୀଟପତଙ୍ଗ ପଶୁପକ୍ଷୀ ପୁଣି ମଣିଷ। ଏସବୁ କିଛି ଯାହା ଇନ୍ଦ୍ରିୟ ଲବ୍ଧ ଜ୍ଞାନ ଦ୍ୱାରା ଉପଲବ୍ଧ ତାହା ତାଙ୍କର ଛାୟା। ଛାୟାକୁ ଧରି ରଖିଛି କାୟା। ଛାୟା ଆଡୁ ଗତି ଆରମ୍ଭ କଲେ କାୟାରେ ପହଞ୍ଚି ହେବ। ଯାହାର କାୟା ଖୋଜିବାକୁ ଆମେ ପୃଥିବୀକୁ ଆସିଛୁ, ତା'ର ଛାୟା ଅଲୋଡ଼ା ହେବ କାହିଁକି ? ଛାୟାକୁ ଅତିକ୍ରମ କରେ କାୟାର ସନ୍ଧାନ ମିଳିବ। ଛାୟାର ପ୍ରାନ୍ତ ଯେଉଁଠି କାୟାର ଆରମ୍ଭ ସେଇଠି। ଛାୟାକୁ ଅବମାନନା ନୁହେଁ ଅତିକ୍ରମ କରିବା ଆମର ଲକ୍ଷ୍ୟ। ଛାୟାକୁ ଅବମାନନା ଅର୍ଥ କାୟାର ମଧ୍ୟ ଏକପ୍ରକାର ଅବମାନନା, କହିଲେ ଅତ୍ୟୁକ୍ତି ହେବନାହିଁ।

ଛାୟାର ଜଗତ ଅର୍ଥାତ୍ ଆମର ଏଇ ଭୌତିକ ଜଗତକୁ ଅବମାନନା କଲେ, ଅଲୋଡ଼ା ବୋଲି ଭାବିଲେ କାୟାର ଅନୁଭବ ସମ୍ପୂର୍ଣ୍ଣ ହେବ ନାହିଁ। ତା'ର କାରଣ ହେଉଛି ଛାୟା ଓ କାୟାର ସମ୍ମିଶ୍ରଣରେ ପୂର୍ଣ୍ଣ ସ୍ୱରୂପର ସୃଷ୍ଟି। ପ୍ରତ୍ୟେକ କଥାର ପ୍ରକୃତ ସ୍ୱରୂପ ଜାଣିବାକୁ ହେଲେ ଆମକୁ କାୟା ସହିତ ଛାୟାକୁ ମିଶାଇ ଗ୍ରହଣ କରିବାକୁ ହେବ। ଅତଏବ ଏଇ ଜାଗତିକ ଜୀବନକୁ ଅଦରକାରୀ ଭାବିବା ଦରକାର ନାହିଁ। ଅନ୍ୟ ପକ୍ଷରେ ଏହି ଛାୟାରେ ଅଟକିଗଲେ ମଧ୍ୟ କାୟାର ଦର୍ଶନ ହେବ ନାହିଁ। ସୁତରାଂ ଏଇ ଜଗତକୁ ଆବଶ୍ୟକୀୟ ଗୁରୁତ୍ୱ ଦେବାକୁ ହେବ। ଏଇ ଜଗତର ପ୍ରତୀକ ହେଉଛି ଆମର ଦେହ, ପ୍ରାଣ ଓ ମନ। ତେଣୁ ତ କୁହାଯାଇଛି, 'ଯାହା ରହିଛି ପିଣ୍ଡେ, ତାହା ରହିଛି ବ୍ରହ୍ମାଣ୍ଡେ।' ଏହି କଥାଟିକୁ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ବୋଲି କୁହାଯାଏ। ଦେହ ହେଉଛି ବିଶ୍ୱଜଡ଼ର ଏକ ବିନ୍ଦୁ ସ୍ୱରୂପ, ପ୍ରାଣ ହେଉଛି ବିଶ୍ୱ ପ୍ରାଣର ଏକ ଏକକ, ମନ ହେଉଛି ବିଶ୍ୱ ମନର ଏକ ଏକକ। ଏଇ ବିନ୍ଦୁକୁ ସିନ୍ଧୁରେ ପରିଣତ କରିବା ହେଉଛି ଜୀବନର ଲକ୍ଷ୍ୟ। ବିନ୍ଦୁକୁ ବଢ଼ାଇ ଚାଲିଲେ ତାହା



Digitized by PPRACHIN, SOA

ସିନ୍ଧୁର ରୂପ ନେବ। ଅର୍ଥାତ ଜଡ଼ର ଶକ୍ତି ଓ ଚେତନା ବଢ଼ି ବଢ଼ି ଶେଷରେ ବିଶ୍ୱଜଡ଼ର ଶକ୍ତି ଓ ଚେତନାରେ ରୂପାୟିତ ହୋଇପାରିବ। ପ୍ରାଣର ଶକ୍ତି ଚେତନା ବଢ଼ି ବଢ଼ି ଶେଷରେ ବିଶ୍ୱପ୍ରାଣରେ ପହଞ୍ଚିପାରିବ। ମନର ଶକ୍ତି ଓ ଚେତନା ବଢ଼ି ବଢ଼ି ଶେଷରେ ବିଶ୍ୱ ମନରେ ପହଞ୍ଚିବ।

ବଢ଼ିବାର କ୍ଷେତ୍ର ହେଉଛି ଏଇ ପୃଥିବୀ ଓ ପାର୍ଥିବ ଜୀବନ। ଶ୍ରୀମା କହନ୍ତି ଯେ 'ପୃଥିବୀ ହିଁ ହେଉଛି ସବୁଠାରୁ ଅଧିକ ଅର୍ଥପୂର୍ଣ୍ଣ କେନ୍ଦ୍ର।' ପାର୍ଥିବ ଜୀବନରୁ ହିଁ ବିଶ୍ୱଜୀବନ ଯାତ୍ରାର ଅୟମାରମ୍ଭ। ଭୌତିକ ଜୀବନକୁ ବାଦ୍‌ଦେଇ ଅଧ୍ୟାତ୍ମ ଜୀବନର ପୂର୍ଣ୍ଣତା ନାହିଁ। ଅତଏବ ଭୌତିକ ଜୀବନ ବା ଜାଗତିକ ଜୀବନ ହେଉଛି ପୂର୍ଣ୍ଣ ଅଧ୍ୟାତ୍ମ ଜୀବନର ଭିତ୍ତି।

ଛାୟା ଆଦୌ ଅବମାନନାର ସାମଗ୍ରୀ ନୁହେଁ କି ଅଟକି ଯିବାର ସାମଗ୍ରୀ ନୁହେଁ। ବିଜ୍ଞାନ ବେଳେ ବେଳେ ଏଇ ଛାୟାର ଜଗତକୁ ସବୁକିଛି ମନେକରି ଏଠାରେ ଅଟକି ଯିବାକୁ ଚାହେଁ, ଅନ୍ୟମାନଙ୍କୁ ଏତିକିରେ ଅଟକାଇ ଦେବାକୁ ଚାହେଁ। ଛାୟାରେ ଅଟକି ଥିଲେ ସେତିକିରେ ଘୂରି ବୁଲିବାକୁ ପଡ଼େ, ଆଗକୁ ଯାଇ ହୁଏନାହିଁ। ଅଗ୍ରଗତି ହିଁ ପ୍ରଗତିର ଅନ୍ୟନାମ। କେବଳ ଗତି ଯଥେଷ୍ଟ ନୁହେଁ ପ୍ରଗତି ଆମର କାମ୍ୟ। ତେବେ ବିଜ୍ଞାନ ଯେ ସବୁବେଳେ ଛାୟାରେ ଅଟକେ ତାହା ନୁହେଁ, ଅତିକ୍ରମ ମଧ୍ୟ କରିବାକୁ ପ୍ରୟାସ କରିଥାଏ।

ବିଜ୍ଞାନ ଛାୟାରେ ଅଟକିଗଲା ପରି ବୈରାଗ୍ୟ କାୟାରେ ଅଟକିଯାଏ। ଛାୟା ଉପରେ ଗୁରୁତ୍ୱ ଦିଏ ନାହିଁ। ଛାୟାକୁ ଅଲୋଡ଼ା ବୋଲି ବିଚାର କରେ। ଅର୍ଥାତ୍ ଏଇ ଜାଗତିକ ଜୀବନକୁ ଅଲୋଡ଼ା ଭାବି ଅବମାନନା କରି ବିଚାର କରେ। ଫଳରେ ତଥାକଥିତ ବୈରାଗ୍ୟ ଦ୍ୱାରା ଭଗବତ ସତ୍ତାର ସାମଗ୍ରିକ ସ୍ୱରୂପ ଉପଲବ୍ଧ ହୋଇପାରେ ନାହିଁ।

ଏଠାରେ ପ୍ରତିପାଦ୍ୟ ଏହା ଯେ, ଜାଗତିକ ଜୀବନକୁ ସମ୍ମାନ ଓ ଶ୍ରଦ୍ଧା ଜଣାଇ ତା'ର ପ୍ରଚ୍ଛଦପଟରେ ବା ତାକୁ ଧରିଥିବା ଅସଲ ସତ୍ୟର ସନ୍ଧାନ କରିବା ଓ ତାଙ୍କୁ ପ୍ରାପ୍ତ କରିବା।

କେବଳ ଦୃଶ୍ୟ ଓ ବସ୍ତୁ ଦ୍ୱାରା ନୁହେଁ, ଇନ୍ଦ୍ରିୟ ଗ୍ରାହ୍ୟ ପ୍ରତ୍ୟେକ ଉପାଦାନ ଦ୍ୱାରା କାୟାର ଆବିଷ୍କାର କରି ହେବ। ଉଦାହରଣସ୍ୱରୂପ ମଲ୍ଲୀଫୁଲର ବାସ୍ନା ହେଉଛି ଭଗବତ ସୁବାସର ଏକ ଛାୟା। ଏଇ ଛାୟାରୁ ଯାତ୍ରା ଆରମ୍ଭ କରେ ସେଇ ମଲ୍ଲୀ ଫୁଲ ନିକଟରେ ପହଞ୍ଚି ହେବ। କୋଇଲିର ମିଠାମିଠା ସ୍ୱରତାନ ସେଇ ଭଗବତ ସୁରତାନର ଏକ ଛାୟା, ଏଇ ଛାୟାରୁ ଯାତ୍ରା ଆରମ୍ଭ କରେ ସେଇ ସ୍ୱରତାନରେ ଦିନେ ନା ଦିନେ ପହଞ୍ଚି ହେବ। ସ୍ୱାଦ କ୍ଷେତ୍ରରେ ଓ ସ୍ପର୍ଶ କ୍ଷେତ୍ରରେ ମଧ୍ୟ କଥାଟି ଅନୁରୂପ ଭାବରେ ପ୍ରଯୁଜ୍ୟ।

ଏକ ଅନୁସନ୍ଧାନୀ ଦୃଷ୍ଟିକୋଣରେ ଆମର ରହିବା ଦରକାର ଏକ ସମନ୍ୱୟଧର୍ମୀ ମାନସିକତାରେ ରହିବା ଆମର ଦରକାର। ସମନ୍ୱୟ ମୂଲ୍ୟ ଓ ମୂଲ୍ୟବୋଧ ଭିତରେ,



Digitized by PPRACHIN, SOA

ବସ୍ତୁ ଓ ଚେତନା ଭିତରେ, ବହିଃଜୀବନ ଓ ଅନ୍ତଃଜୀବନ ଭିତରେ, କଥା ଓ କର୍ମ ଭିତରେ ଭାବ ଓ ଭାବନା ଭିତରେ, ରହିବା ବାଞ୍ଛନୀୟ ।

ବର୍ତ୍ତମାନ ଆଉ ଏକଦିଗଦର୍ଶିତାର ସମୟ ନାହିଁ । ବହୁଦିଗ୍‌ଦର୍ଶିତାର ସମୟ ଆସିଛି । ସାମଗ୍ରିକତା ହେଉଛି ବର୍ତ୍ତମାନ ସମୟର ଭାବାଦର୍ଶ । ପ୍ରାଚ୍ୟ ଚେତନା ଓ ପାଶ୍ଚାତ୍ୟ ଚେତନାର ସମନ୍ୱୟରେ ସଂଗଠିତ ହେବ ନୂତନ ଏକ ଚେତନା ଯାହାକୁ ଭିତ୍ତିକରି ଗଢ଼ିଉଠିବ ନୂଆ ଏକ ପୃଥିବୀ ଯାହା ଆକୃତିରେ ପୂର୍ବପରି ଥିଲେ ହେଁ ପ୍ରକୃତିରେ ଭିନ୍ନ୍ ହେବ । ସମନ୍ୱିତ ଚେତନା ଭିତରେ ସଂକୀର୍ଣ୍ଣତା ହ୍ରାସ ପାଇବ । ନିଜ ଦେଶ ପ୍ରତି ଆନ୍ତରିକତା ଅଧିକ ବଢ଼ିବ, ନିଜ ଦେଶକୁ ଜାତିକୁ ଗୁରୁତ୍ୱ ଦିଆଯିବ । ଏଥିସହିତ ଅନ୍ୟ ଦେଶ ଓ ଜାତି ଉପରେ ଆବଶ୍ୟକୀୟ ଗୁରୁତ୍ୱ ମଧ୍ୟ ପ୍ରଦାନ କରାଯିବ । ପୃଥିବୀରେ ପ୍ରଚଳିତ ସମସ୍ତ ଭାଷା ଓ ଚଳଣି ଉପରେ ଯଥାର୍ଥ ଗୁରୁତ୍ୱ ପ୍ରଦତ୍ତ ହେବ । ମନୁଷ୍ୟ ମନୁଷ୍ୟ ଭିତରେ ପାରସ୍ପରିକ ଶ୍ରଦ୍ଧା ଓ ସମ୍ମାନ ବଢ଼ିବ । ପାରସ୍ପରିକ ଅନୁମୋଦନ ଅଧିକରୁ ଅଧିକ ରହିବ । ଜୀବନ ହେବ ସମନ୍ୱିତ ଚେତନାର ଭିତ୍ତିରେ ଦିବ୍ୟ ଭାବନାର ଲୀଳାନଗରୀ, ସୁରମ୍ୟ ଶିବିର । ସେଠାରେ ନଥିବ ଦ୍ୱନ୍ଦ୍ୱ, ଅବିଶ୍ୱାସ, କଳହ, ଈର୍ଷା, ହିଂସା ଛଳନା, ପ୍ରତାରଣା, ପ୍ରଭୃତି ବିରୋଧୀ ଶକ୍ତିର ପ୍ରାଦୁର୍ଭାବ । ମର୍ତ୍ତ୍ୟ ହେବ ସ୍ୱର୍ଗର ଲାବଣ୍ୟରେ ବିମଣ୍ଡିତ, ଦେବତାମାନଙ୍କର ମନୋଜ୍ଞ ମହଲ । କବିଙ୍କ ଭାଷାରେ –

"ଦିବ୍ୟ ଭାବନା ଆସି କରିବ ଲୀଳା
ଆସିବ ଧରା ବୁକେ ମାହେନ୍ଦ୍ର ବେଳା,
ଦେବତା ଆଉ ସ୍ୱର୍ଗେ ରହିବେ ନାହିଁ
ଆସିବେ ସରାଗରେ ମରତ ଭୂଇଁ ।"





Digitized by PPRACHIN, SOA

# ବ୍ୟକ୍ତିତ୍ୱ ଓ ଅହଂକାର

କ'ଣ ହୋଇଛି କେଜାଣି ଆଜିକାଲି ଲାଭ ଲାଳସା ନ ଥିଲେ କେହି କାହାକୁ ଭଲ କଥା ପଦେ କହିବାର ଶୁଣାଯାଉ ନାହିଁ। ବହୁ କ୍ଷେତ୍ରରେ ନିଜର କର୍ତ୍ତବ୍ୟ କର୍ମ ଯଥାଯଥ ଭାବେ କରାଯାଉନାହିଁ। ଅନ୍ୟପର ପ୍ରତିଦାନର ଆଶା ପ୍ରବଳ ରହୁଛି। ଅନ୍ୟଠାରୁ ଝାମ୍ପି କରି କିଛି କିଛି ନେଇଯିବା ବା ଠକିକରି ନେଇଯିବା ଚତୁରତାର ଚିହ୍ନ ହୋଇଛି। କର୍ତ୍ତବ୍ୟରେ ଅବହେଳା ହେତୁ ବୃତ୍ତିଗତ ଜୀବନ ସମୃଦ୍ଧ ହୋଇପାରୁନାହିଁ। ଯିଏ ଯେଉଁ କାର୍ଯ୍ୟରେ ଅଛନ୍ତି ସିଏ ସେ କାର୍ଯ୍ୟରେ ,ସେ ସନ୍ତୁଷ୍ଟ ଥିଲା ପରି ଜଣାପଡୁ ନାହିଁ ଅବା ସେ କାର୍ଯ୍ୟରୁ ଆନନ୍ଦ ପାଇଲା ପରି ମନେହେଉନାହିଁ। ସବୁ ଚାଲିଛି, ମାତ୍ର ଯେପରି ଚାଲିବା କଥା ସେପରି ଚାଲି ନାହିଁ। କେଉଁଠି କ'ଣ ଗୋଟାଏ ଖଟକା ରହିଯାଇଛି।

କାର୍ଯ୍ୟରେ ଅମନଯୋଗିତା ଓ ଅନାଗ୍ରହ ଭାବ ସମସ୍ତଙ୍କୁ ଏକ ପ୍ରକାର ଆୟତ୍ତ କରି ସାରିଲାଣି। ଏହାର ମୂଳକାରଣ ହେଉଛି ଚେତନାର ଅଭାବ ଓ ଅହଂକାରର ପ୍ରଭାବ। ଏଥିଯୋଗୁଁ ମନରେ ଆସୁଛି ଏପରି ଚିନ୍ତାଧାରା ଯେ ସେ ସବୁ କଥା ଜାଣିଛି, ସେ ଯେତିକି ବୁଝିଛି ତାହା ଯଥେଷ୍ଟ, ଆଉ କିଛି ବୁଝିବାର ନାହିଁ ଇତ୍ୟାଦି ଇତ୍ୟାଦି।

କେବଳ ମୁଁ... ମୁଁ ଭାବନାରେ ରହି ସମୟ କଟିଯାଉଛି। 'ଆମେ' ଶବ୍ଦଟି କେବଳ ବହି ପତ୍ରରେ ରହିଯାଉଛି, ଜୀବନ କ୍ଷେତ୍ରରେ ବିଶେଷ ଲାଗୁନାହିଁ। ସାମାଜିକ ସ୍ତରରେ ପ୍ରାୟତଃ ସୁଦୂର ପରାହତ ହୋଇ ରହିଯାଉଛି 'ଆମେ' ଶବ୍ଦଟି। ଅହଂକାରକୁ ଆଜିକାଲି ବ୍ୟକ୍ତିତ୍ୱ ବୋଲି କେମିତି କେଜାଣି ବୁଝାଯାଉଛି। ପ୍ରକୃତରେ ଏହା ଗୋଟିଏ ଭ୍ରମ। ଅହଂକାର ହେଉଛି ବ୍ୟକ୍ତିତ୍ୱର ପରିପନ୍ଥୀ। ବ୍ୟକ୍ତିତ୍ୱ ଆଣିଦିଏ ସ୍ୱାଭିମାନ, ଅହଂକାର ଆଣିଦିଏ ଦମ୍ଭ ଗର୍ବ। ବ୍ୟକ୍ତିତ୍ୱ ନିଜକୁ ଅନ୍ୟମାନଙ୍କ ସହ ମିଶାଇବାକୁ ଇଚ୍ଛାକଲା ବେଳେ ଅନ୍ୟକୁ ତଥା ସମାଜକୁ କିଛି ଉପକୃତ କରିବାକୁ ଚାହିଁଲା ବେଳେ ଅହଂକାର ଅନ୍ୟଠାରୁ ତଥା ସମାଜ ଠାରୁ ସବୁକଥା ଛଡ଼ାଇ ନେବାକୁ ଚେଷ୍ଟା କରେ। ଅହଂକାର କାର୍ଯ୍ୟକାରୀ ହେଲା ବେଳେ ସ୍ଥାନ-କାଳ-ପାତ୍ରର ଜ୍ଞାନ ରହେ ନାହିଁ ମାତ୍ର ବ୍ୟକ୍ତିତ୍ୱ କ୍ରିୟାଶୀଳ ହେଲାବେଳେ ଆସିଥାଏ ରୁଚିବୋଧ, ମାର୍ଜିତ ଚେତନା ଓ ତ୍ୟାଗ ତିତିକ୍ଷାର ଭାବ। ଅହଂକାର ଦିଏ କେବଳ ମୂଲ୍ୟ ଉପରେ ଗୁରୁତ୍ୱ ଦିଏ ମାତ୍ର ବ୍ୟକ୍ତିତ୍ୱ ମୂଲ୍ୟକୁ ଅତିକ୍ରମ କରିଥିବା ମୂଲ୍ୟବୋଧ ଉପରେ ଗୁରୁତ୍ୱ ଦିଏ। ଅତିକ୍ରମ କରିବାକୁ ଅବମାନନା କରିବା ବୋଲି ଆମେ ବୁଝିବା ନାହିଁ। ଅହଂକାର ମଣିଷକୁ ସଙ୍କୁଚିତ କଲା ବେଳେ ବ୍ୟକ୍ତିତ୍ୱ କରିଥାଏ ଚେତନାରେ ପ୍ରଶସ୍ତ ଓ ପରିବ୍ୟାପ୍ତ।



Digitized by PPRACHIN, SOA

ବ୍ୟକ୍ତିତ୍ୱର ବିକାଶ ପାଇଁ ଆନୁଷ୍ଠାନିକ ଶିକ୍ଷା ଅପେକ୍ଷା ପାରିବାରିକ ଶିକ୍ଷାର ଅବଦାନ ଅଧିକ। ବ୍ୟକ୍ତି ଚରିତ୍ର ଗଠନ ହୋଇଥାଏ ପରିବାରରୁ। ଏକାଠି ଚଳିବା, ଅନ୍ୟ ପାଇଁ କର୍ତ୍ତବ୍ୟ କରିବା, ଅନ୍ୟର ଜାଗାରେ ନିଜକୁ ରଖି ବିଚାର କରିବାର ଶିକ୍ଷା ସୃଷ୍ଟି ହୋଇଥାଏ ପରିବାରରୁ। ଅନ୍ୟର ସୁଖ ଦୁଃଖରେ ସମଭାଗୀ ହେବାର ପରିବେଶ ପ୍ରଥମେ ମିଳିଥାଏ ପରିବାରରୁ । ଯେଉଁଠାରେ ପାରିବାରିକ ଚେତନା ମାର୍ଜିତ ନୁହେଁ, ପାରିବାରିକ ଶିକ୍ଷା ବଳିଷ୍ଠ ନୁହେଁ, ସେଠାରେ ଯେତେ ଆନୁଷ୍ଠାନିକ ଡିଗ୍ରୀ ଡିପ୍ଲୋମା ଥିଲେ ମଧ୍ୟ ତାହା ଯଥେଷ୍ଟ ନୁହେଁ। ଯେଉଁ ପରିବାରରେ ପିଲାଟିଏ କେବଳ ମୂଲ୍ୟର କେନ୍ଦ୍ରବିନ୍ଦୁରେ ବଞ୍ଚେ ଓ ବଢ଼େ, ସେ ପିଲାଟିକୁ ମୂଲ୍ୟବୋଧର କଥା ବୁଝାଇବା କଷ୍ଟକର ହୋଇଥାଏ। ମୂଳରୁ ତା'ର ମାନସିକତା ଏପରି ତିଆରି ହୋଇଥାଏ ଯେ ସେ ନିଜକୁ ମାପେ ମୂଲ୍ୟରେ ଏବଂ ଅନ୍ୟକୁ ମଧ୍ୟ ମୂଲ୍ୟରେ ମାପେ। ସେଇ ପିଲାଟି ପରେ ପରେ ବସ୍ତୁବାଦୀ ହୋଇ ସମାଜ ଆଗରେ ଠିଆ ହୁଏ। ଏଇ ବସ୍ତୁବାଦୀ ଭାବନା ତା' ଭିତରେ ଭରିଦିଏ ମେଞ୍ଚା ମେଞ୍ଚା ଅହଂକାର। ସେ ଅହଂକାରୀ ହୋଇ ନିଜ ବ୍ୟତୀତ ଆଉ କାହାକୁ ଦେଖିପାରେ ନାହିଁ, ଆଉ ଯଦି ଦେଖେ ତେବେ ବସ୍ତୁର ମାନଦଣ୍ଡରେ ତଉଲିକରି ଦେଖେ।

ସମୟର ବେଳାଭୂମିରେ ବ୍ୟକ୍ତିତ୍ୱର ପାଦଚିହ୍ନ ରହେ, ମାତ୍ର ଅହଂକାରର ପାଦ ଚିହ୍ନ ରହେ ନାହିଁ। ବ୍ୟକ୍ତିତ୍ୱ ପ୍ରତ୍ୟେକ ବ୍ୟକ୍ତି ଭିତରେ ଥାଏ, ମାତ୍ର ତାହା ଅହଂକାରର ଚାପରେ ଚାପି ହୋଇଯାଏ। ଅହଂକାର ରୂପକ ପଥର ତଳେ ବ୍ୟକ୍ତିତ୍ୱ ରୂପକ ଚାରାଗଛଟି ଚାପ ପଡ଼ିରହିଯାଏ। ସେ ପଥରଟି ମନକୁ ମନ ହଟିଯାଏ ନାହିଁ, ତାକୁ ହଟାଇବାକୁ ପଡ଼େ ଅର୍ଥାତ୍ ଅହଂକାର ପଥରଟିକୁ ହଟାଇବାକୁ ପ୍ରୟାସ ଓ ପ୍ରଚେଷ୍ଟା କରିବାକୁ ପଡ଼େ।

ଅତଏବ ଆମ ଭିତରେ ଥିବା ଅହଂକାରକୁ ଆମକୁ ଖୋଜିବାକୁ ହେବ ଏବଂ ତାକୁ ବାହାର କରି ଦେବାପାଇଁ ପ୍ରଯତ୍ନ କରିବାକୁ ହେବ। ଅହଂକାରକୁ ବାଦ୍ ଦେଲେ ଅସଲ ବ୍ୟକ୍ତିତ୍ୱ ବିକଶିତ ହେବ ଏବଂ ସେହି ବ୍ୟକ୍ତିତ୍ୱ ହେବ ଜାତି ଓ ଦେଶର ରକ୍ଷା କବଚ। ଏହି ବ୍ୟକ୍ତିତ୍ୱ ଦେବ ଆମକୁ ବିଶ୍ୱ ନାଗରିକର ଅମ୍ଳାନ ଗୌରବ। ଏହାର ଫଳସ୍ୱରୂପ ଆମେ ଏକ ସମୟରେ ଆମ ପାଇଁ, ଆମ ସମାଜ, ଦେଶ ଏବଂ ସମଗ୍ର ବିଶ୍ୱ ପାଇଁ ଅମୂଲ୍ୟ ସମ୍ପଦ ହୋଇ ରହିପାରିବା।





Digitized by PPRACHIN, SOA

# ଆତ୍ମ ମିତ୍ରତା

ମଣିଷ ମନରେ ଫୁଲ ଅଛି, କଣ୍ଟା ମଧ୍ୟ ଅଛି। ମାତ୍ର ଦେଖାଯାଉଛି ଯେ ଆଜିକାଲି ଫୁଲ ସବୁ କ୍ରମେକ୍ରମେ ମଉଳିଯାଉଛି, ଆଉ କଣ୍ଟାର ମୁନ ବଢ଼ି ବଢ଼ି ଯାଉଛି। ଆଗରୁ ଫୁଲ ଭିତରେ କଣ୍ଟା ଲୁଚି ଯାଉଥିଲା, ଏବେ କଣ୍ଟା ଭିତରେ ଫୁଲ ଲୁଚି ଯାଉଛି। ସେ କଣ୍ଟାରେ ଅନ୍ୟମାନେ କ୍ଷତବିକ୍ଷତ ହେବା ସହିତ ନିଜକୁ ମଧ୍ୟ କ୍ଷତବିକ୍ଷତ ହେବାକୁ ପଡୁଛି। ଅନ୍ୟର କ୍ଷତ ବିକ୍ଷତ ହେବା ହୁଏତ ଦିଶୁଛି ମାତ୍ର ନିଜର କ୍ଷତ ଦିଶୁନାହିଁ। ନିଜର କ୍ଷତ ଅନ୍ୟର କ୍ଷତ ଠାରୁ ଊଣା ନୁହେଁ, ଏକଥା ଜାଣି ହେଉନାହିଁ। କଥାଟିରେ ଓଟ ନାଗଫେଣୀ କଣ୍ଟା ଚୋବାଇବା ନ୍ୟାୟ ରହିଛି।

ଓଟ ନାଗଫେଣୀ କଣ୍ଟା ଚୋବାଏ, କଣ୍ଟା ସବୁ ତା'ର ମାଢ଼ିକୁ ଚିରିଦିଏ ଓ ମାଢ଼ିରୁ ରକ୍ତ ଝରେ। ଓଟ ବିଚାରେ ନାଗଫେଣୀ କଣ୍ଟାରୁ ରସ ଝରୁଛି। ଠିକ୍ ସେହିପରି ମଣିଷ ଭାବୁଛି ଅନ୍ୟକୁ ଅସୁବିଧାରେ ପକାଇ ମୁଁ ସୁବିଧାରେ ରହିବି। ମାତ୍ର ତାହା ଆଦୌ ସମ୍ଭବ ନୁହେଁ। ଓଟର ମାଢ଼ି ଦରଜ ଓ ବିନ୍ଧାରେ କ୍ଷତିଗ୍ରସ୍ତ ହେଲାପରି ଅନ୍ୟର କ୍ଷତିକାରୀ ମଣିଷ କ୍ଷତିରେ ପଡ଼େ। ନିଜକୁ ବହୁ ଭାବରେ କ୍ଷତିଗ୍ରସ୍ତ ହେବାକୁ ପଡ଼େ। ଏସବୁ ସତ୍ତ୍ୱେ ବୁଝି ହୁଏନାହିଁ କେଉଁଟି ଭୁଲ ଆଉ କେଉଁଟି ଠିକ୍, କେଉଁଟି ଭଲ ଓ ଆଉ କେଉଁଟି ମନ୍ଦ। ଭଲ ମନ୍ଦ ଓ ଭୁଲ ଠିକ୍ ଜାଣିବା ପାଇଁ ଟିକିଏ ଗହୀରିଆ ଚିନ୍ତା ଦରକାର। ସେତିକି ପାଇଁ ଆଜିକାଲି କାହାର ସମୟ ନାହିଁ ଯଦି ବା କିଛି ସମୟ ଅଛି ତେବେ ଆଗ୍ରହ ନାହିଁ।

ଆଗ୍ରହକୁ ଭାଙ୍ଗି ଦେଉଛି ଯୁକ୍ତି। ଯଦି କେତେବେଳେ ବିବେକ କହିଲା ଯେ ଅନ୍ୟର କ୍ଷତି କଲେ ନିଜର କ୍ଷତିହୁଏ, ଅନ୍ୟ ପାଇଁ ବିପଦ ରୂପୀ ଗାତ ଖୋଳିଲେ ସେହି ଗାତରେ ନିଜକୁ ପଡ଼ିବାକୁ ହୁଏ, ତେବେ ମନ ତାକୁ ଯୁକ୍ତିରେ କାଟିଦଏ। କହେ ଏମିତି କିଛି ମାନେ ନାହିଁ, ଏହା ଏକ ଆପ୍ତବାକ୍ୟ, ଋଷି ବାକ୍ୟ, ପୁରୁଣାକାଳିଆ କଥା ଓ ଦୁର୍ବଳିଆ କଥା। ମନ ଯୁକ୍ତି କରି କହେ ଯେ ଟିକିଏ ଅଧିକ ଚତୁରତା ପ୍ରୟୋଗ କଲେ ଅନ୍ୟର ସବୁ କ୍ଷତି କରିହେବ, ମାତ୍ର ନିଜର କିଛି କ୍ଷତି ଘଟିବ ନାହିଁ। ପ୍ରକୃତରେ କଥାଟି ଏପରି ନୁହେଁ। କଥାଟି ହେଉଛି ଉଧାର ମାଣକ ପାଞ୍ଚ ପା', ଏହା ଚିରନ୍ତନ ସତ୍ୟ, ଏହା ବଦଳି ନାହିଁ କି ବଦଳିବ ନାହିଁ। ମନ ପୁଣି ବେଳେ ବେଳେ ଯୁକ୍ତିକରି କହେ ଯେ ଅନ୍ୟର କ୍ଷତି ନ କଲେ ଆଉ କେହି ଡରିବେ ନାହିଁ, ସମ୍ମାନ ଦେବେ ନାହିଁ। ଜୀବନଟା ସରଳିଆ ସରଳିଆ ସାଧା ସାଧା ହୋଇଯିବ। ପ୍ରକୃତରେ କଥାଟି ଏପରି ନୁହେଁ। କଥାଟ



Digitized by PPRACHIN, SOA

ହେଉଛି ଭୟରୁ ଆସୁଥିବା ଭକ୍ତି ଆଦୌ ଭକ୍ତି ପଦବାଚ୍ୟ ନୁହେଁ, ଶ୍ରଦ୍ଧାରୁ ଆସୁଥିବା ଭକ୍ତି ହିଁ ଯଥାର୍ଥରେ ଭକ୍ତି ପଦବାଚ୍ୟ। ଭୟରୁ ମିଳୁଥିବା ସମ୍ମାନ ଆଦୌ ସମ୍ମାନ ନୁହେଁ, ଅସମ୍ମାନର ଅନ୍ୟ ନାମ ମାତ୍ର। ଅନ୍ୟର କ୍ଷତି ଘଟାଇବା ବୀରତ୍ୱର ଚିହ୍ନ - ଏକଥା କିଏ କେମିତି କେତେବେଳେ ବୁଝାଇ ଦେଇଛି କେଜାଣି ? ତେବେ ଏକଥା ଠିକ୍ ଯେ କେହି ବୁଝାଇବା ଆଗରୁ ଅହଂ ବୁଝାଇ ଦେଇଛି। ନିଜକୁ ଜାହିର କରିବା ପାଇଁ ଅହଂ ଏମିତି ପ୍ରରୋଚନା ଦେଇଛି, ତାହା ଜାଣି ହେଉନାହିଁ, ବୁଝି ହେଉନାହିଁ।

ଶ୍ରୀମଦ୍ ଭଗବଦ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି ଯେ ମଣିଷ ଅଜ୍ଞାନତା ଯୋଗୁଁ ନିଜେ ନିଜର ଶତ୍ରୁ ହୋଇଥାଏ ଓ ଜ୍ଞାନ ଯୋଗୁଁ ନିଜେ ନିଜର ମିତ୍ର ହୋଇଥାଏ। ବାସ୍ତବରେ ଶତ୍ରୁ ସଂଖ୍ୟା ବାହାର ଅପେକ୍ଷା ଭିତରେ ଅଧିକ, ଆଉ ଭିତରର ଶତ୍ରୁଙ୍କର ଶତ୍ରୁତା ସାଂଘାତିକ, ଏହା ଜାଣିବା ଦରକାର। ଅନ୍ୟ ବିରୁଦ୍ଧରେ ଯୁଦ୍ଧ ଘୋଷଣା ଯେ ନିଜ ବିରୁଦ୍ଧରେ ଯୁଦ୍ଧ ଘୋଷଣା, ଏହା ବୁଝିବା ବାଞ୍ଛନୀୟ।

ସର୍ବଦା ଅନ୍ୟ ସହିତ ନିଜକୁ ତୁଳନା କରି ମଣିଷ ନିଜକୁ ଭାରାକ୍ରାନ୍ତ କରିଥାଏ। ତୁଳନା ବାଟ ଦେଇ ଦୁଃଖ, କ୍ରୋଧ, ବିଦ୍ରୋହ ସମେତ କେତେ ବିରୋଧୀ ଶକ୍ତି ପଶିଆସନ୍ତି। ଏହା ହେଉଛି ଏକ ପ୍ରକାର ଆତ୍ମଶତ୍ରୁତା। ତୁଳନା ଡାକି ଆଣେ ନିଜ ଭିତରକୁ ହତାଶା, ହୀନମନ୍ୟତା, ଅଶାନ୍ତି, ଅସନ୍ତୋଷ ସମେତ ବହୁ ଅପଶକ୍ତିର ପଟୁଆରକୁ। ସମସ୍ତ ପ୍ରକାର ନକାରାତ୍ମକ ଚିନ୍ତା ଆସେ ଏହି ପ୍ରକାର ତୁଳନା ଯୋଗୁଁ, ଫଳତଃ ଶାରୀରିକ କ୍ଲାନ୍ତି ଓ ମାନସିକ ଅବସାଦ ଆସେ। କେବଳ ଆସେ ନାହିଁ, ବେଳକୁ ବେଳ ବଢ଼େ। ପ୍ରକୃତ ପକ୍ଷେ ଅନ୍ୟ ସହିତ ନିଜକୁ ତୁଳନା ନ କରି ନିଜ ସହିତ ନିଜକୁ ତୁଳନା କରିବା ଉଚିତ। ନିଜକୁ ନିଜ ସହ ତୁଳନା କରି ନିଜର ପ୍ରଗତି ଓ ଚେତନାର ବିକାଶ କରିବା ଏକାନ୍ତ କାମ୍ୟ।

ଆତ୍ମଶତ୍ରୁତାର ଆଉ ଏକ ଉପାଦାନ ହେଉଛି କ୍ରୋଧ। କ୍ରୋଧ ପ୍ରକଟିତ ହେଲେ ପରିବେଶ ଅଶାନ୍ତ ହୁଏ, ବିପର୍ଯ୍ୟସ୍ତ ହୁଏ। ଅଘଟଣ ଘଟି ସାରିଲା ପରେ ଦେଖିହୁଏ କ୍ରୋଧର ପରିଣତିକୁ। କ୍ରୋଧକୁ ବଳୁଆ ଲୋକର ଧାରୁଆ ଅସ୍ତ୍ର ବୋଲି କେତେଲୋକ କହିଥାନ୍ତି, ମାତ୍ର ଏହା ଏକ ଭ୍ରମ। କ୍ରୋଧ ଦ୍ୱାରା କୌଣସି ସମସ୍ୟାର ସମାଧାନ ହୁଏ ନାହିଁ, ବରଂ ମୂଳରୁ ବହୁ ଡାଳ ବାହାରି ବାତାବରଣକୁ ଜଟିଳରୁ ଜଟିଳତର କରିଦିଏ। କ୍ରୋଧ ଯେ ଦୁର୍ବଳ ମାନସିକତାର ଚିହ୍ନ-ଏକଥା ମନସ୍ତତ୍ତ୍ୱବିଦ୍ ମାନେ କହିଥାନ୍ତି। କ୍ରୋଧ ଆମେ ଦୁର୍ବଳ ବୋଲି ଚିହ୍ନାଇ ଦିଏ। କ୍ରୋଧ ଆମକୁ ଦୁର୍ବଳ ବୋଲି ଚିହ୍ନାଇବା ଆଗରୁ ତାକୁ ଚିହ୍ନିଗଲେ ସେ ଆଉ ନଚାଇ ପାରେ ନାହିଁ।

ଆତ୍ମମିତ୍ରତା ପାଇଁ ଯଥେଷ୍ଟ ସଚେତନତା ଦରକାର। ଅନ୍ୟ ପ୍ରତି ଶ୍ରଦ୍ଧା, ସମ୍ମାନ, ସହାନୁଭୂତି, ମମତ୍ୱବୋଧ, ଆତ୍ମୀୟତା, ଉଦାରତା, ସହନଶୀଳତା, ଆବଶ୍ୟକତା ଅନୁସାରେ



Digitized by PPRACHIN, SOA

କୃତଜ୍ଞତା, ସମେତ ବହୁ ସଦ୍‌ଗୁଣ ଏହାର ଅନ୍ତର୍ଭୁକ୍ତ। ଅନ୍ୟର କଲ୍ୟାଣ କାମନା ଯେ ନିଜର ମାନସିକ ଶାନ୍ତି ପାଇଁ ଅମୂଲ୍ୟ ସମ୍ପଦ, ଏହା ଜାଣିବା ବାଞ୍ଛନୀୟ। କେବଳ ଜାଣିବା ଯଥେଷ୍ଟ ନୁହେଁ, ଜାଣିବା ପରେ ଏହାର ପ୍ରୟୋଗ ବରଣୀୟ ଓ ଅଭିନନ୍ଦନୀୟ।

ବାସ୍ତବରେ ଭଲରେ ବଞ୍ଚିବା ପାଇଁ କଳାତ୍ମକତା ଆବଶ୍ୟକ ଯାହାକୁ ସାଧାରଣ ଭାବରେ ବଞ୍ଚିବାର କଳା ବୋଲି କୁହାଯାଏ। ଏହି କଳାକୁ ପ୍ରୟୋଗ ନ କରି ଯନ୍ତ୍ରଣାରେ ଜର୍ଜରିତ ହେବା ଆଦୌ ବୁଦ୍ଧିମାନର କାର୍ଯ୍ୟ ନୁହେଁ। ଏହି କଳାକୁ ପ୍ରୟୋଗ ନ କରିବା ଅର୍ଥ ଚାଲି ନ ଜାଣି ବାଟର ଦୋଷ ଦେବା, କାଟି ନ ଜାଣି କଟୁରୀର ଦୋଷ ଦେବା। ସତରେ ମଣିଷ ଆକାଶରେ ପକ୍ଷୀ ପରି ଉଡ଼ିପାରୁଛି, ଜଳରେ ମାଛ ପରି ବୁଡ଼ି ପାରୁଛି, ମାତ୍ର ମାଟିରେ ଠିକ୍ ଭାବରେ ବଞ୍ଚିପାରୁ ନାହିଁ। ବଞ୍ଚିବାର କଳା ହିଁ ଅସଲ ଜୀବନଧର୍ମୀ କଳା। ଏହି କଳାକୁ ଯଥାଯଥ ଭାବରେ ପ୍ରୟୋଗ କରି ଜୀବନ ବଞ୍ଚିବା ହିଁ ଯଥାର୍ଥ ଜୀବନ ବଞ୍ଚିବା।





Digitized by PPRACHIN, SOA

# ଭଲ କାମ ଆମେ କରିବା କେମିତି

ମଣିଷ ରୂପରେ ଜନ୍ମ ହେଲେ କିଛି ନା କିଛି କର୍ମ ଅବଶ୍ୟ କରିବାକୁ ପଡ଼େ। ଅକର୍ମା ହୋଇ କେହି ଏ ସଂସାରରେ ରହିପାରନ୍ତି ନାହିଁ। କର୍ମ ହେଉଛି ଏକ ପୂଜାଫୁଲ ଭଗବାନଙ୍କ ଅର୍ଚ୍ଚନା ନିମନ୍ତେ। ଜୀବନର ଚିହ୍ନ ହେଉଛି କର୍ମ। କର୍ମ ନାହିଁ ତ ଜୀବନ ନାହିଁ। କର୍ମ ଅଛି ତ ଜୀବନ ଅଛି। କର୍ମହୀନତାକୁ ମୃତ୍ୟୁ ସହ ସମାନ ବୋଲି କୁହାଯାଇଛି।

କର୍ମରେ ଆମର ଅଧିକାର ଅଛି, ମାତ୍ର କର୍ମଫଳରେ ନୁହେଁ, ଏକଥା ଶାସ୍ତ୍ରରେ ଉଲ୍ଲେଖ କରାଯାଇଛି। କର୍ମ ହୁଏ କୁକର୍ମ ସେତେବେଳେ ଯେତେବେଳେ ତାହା କୁତ୍ସିତ ଭାବନା ସହ ଯୁକ୍ତ ହୋଇଥାଏ। ପ୍ରତ୍ୟେକ କର୍ମର ପଶ୍ଚାତରେ ଏକ ଏକ ଭାବନା ନିହିତ ଥାଏ। ଭାବନା ନ ଥାଇ କର୍ମ ନାହିଁ। ଭାବନା ବିହୀନ କର୍ମ ହେଉଛି ପାଗଳାମିର ଅନ୍ୟ ନାମ।

ଭାବନା ଯଦି ସୁଭାବନା ହୋଇଥାଏ ତେବେ କର୍ମ ସୁକର୍ମ ହୋଇଥାଏ। ଭାବନା ଯଦି କଦାକାର ଓ ମନ୍ଦ ହୋଇଥାଏ, ତେବେ କର୍ମଟି ମନ୍ଦ ହେବାକୁ ବାଧ୍ୟ ହୋଇଥାଏ। ରୁଚିକର, ଶୃଙ୍ଖଳିତ ପୁଣି ଜନ କଲ୍ୟାଣକାରୀ କର୍ମଟିଏ ଯୋଗ ପଦବାଚ୍ୟ। ତେଣୁ ତ କୁହାଯାଇଛି 'ଯୋଗ କର୍ମସୁ କୌଶଳମ୍'।

କର୍ମ ଆମର ଆୟତ୍ତାଧୀନ, କର୍ମ କରିବାର ସ୍ୱାଧୀନତା ଆମର ଅଛି। ସ୍ୱାଧୀନତାର ବ୍ୟବହାର ଆମ ଉପରେ ନିର୍ଭର କରେ। ସ୍ୱାଧୀନତାର ଅସଦ୍‌ବ୍ୟବହାର ଫଳରେ ସ୍ୱେଚ୍ଛାଧୀନତାର ସୃଷ୍ଟି ହୁଏ ଏବଂ ସ୍ୱେଚ୍ଛାଧୀନ ମନୋଭାବକୁ ଭିତ୍ତିକରି ସଂଗଠିତ କର୍ମ ହୋଇଥାଏ ସ୍ୱେଚ୍ଛାଧୀନ କର୍ମ। ସ୍ୱେଚ୍ଛାଧୀନ କର୍ମ ହିଁ ମନ୍ଦ କର୍ମ ପଦବାଚ୍ୟ ଏବଂ ସ୍ୱାଧୀନ-କର୍ମ ହେଉଛି ଭଲ କର୍ମ ପଦବାଚ୍ୟ।

ଆମ ଭିତରେ ଥିବା ଅହଂଭାବ ଆମକୁ ମନ୍ଦକର୍ମ କରିବାକୁ ପ୍ରବର୍ତ୍ତାଏ ଏବଂ ଆମକୁ ବିପଥଗାମୀ କରିଥାଏ, ମନ୍ଦ କର୍ମରୁ ମନ୍ଦ ଫଳ ମିଳିଥାଏ ଯାହା ଆମକୁ ହିଁ ଭୋଗିବାକୁ ପଡ଼ିଥାଏ। ଆମେ ମନ୍ଦ ଫଳ ଜନିତ ଦୁଃଖ, କଷ୍ଟ ଓ ଯନ୍ତ୍ରଣା ପାଇଥାଉ। ଯନ୍ତ୍ରଣା ପାଇଲେ କହୁ ଯେ ଈଶ୍ୱର ଆମପାଇଁ ନିଷ୍ଠୁର, କଠୋର ଓ କୃପଣ ବୋଲି। ଏହା ଗୋଟିଏ ଭ୍ରମ। ଈଶ୍ୱର ଆଦୌ ନିଷ୍ଠୁର, କଠୋର ନୁହନ୍ତି ସେ ସର୍ବଦା ମଙ୍ଗଳମୟ, ଉଦାର ଓ ମହାଦାନୀ। ଆମର କଷ୍ଟ ହେଉଛି କର୍ମ ଫଳର ଅନ୍ୟନାମ। କର୍ମ ହିଁ ନିଜେ ଫଳ ପ୍ରଦାନ ନିମନ୍ତେ ସମର୍ଥ। ଗୀତାର ଶ୍ଲୋକ



Digitized by PPRACHIN, SOA

ଆମକୁ ବିବେକ ଓ ବିଚାର ଦିଆଯାଇଛି। ଆମେ କେଉଁ ପ୍ରକାର କର୍ମ କରିବା ତାହା ଆମ ଉପରେ ନିର୍ଭର କରେ। ବିବେକ ଓ ବିଚାର ଦ୍ୱାରା ଆମେ ଭଲମନ୍ଦ ବାଛି ପାରିବା ଏବଂ ଇଚ୍ଛା କଲେ ଆମେ ଭଲ ଭଲ କାମ କରିପାରିବା। ଅହଂ ଦ୍ୱାରା ପରିଚାଳିତ ହୋଇ ମନ୍ଦ କାମ କଲେ ଆମେ ଦୋଷ ଦେବା କାହାକୁ ? ଆମେ ନିଜେ ତ ନିଜର କ୍ଷତି ଘଟାଇବା ମନ୍ଦ କାମ ମାଧ୍ୟମରେ। ମଣିଷ ନିଜେ ନିଜର ଶତ୍ରୁ, ପୁଣି ନିଜେ ନିଜର ମିତ୍ର ବୋଲି ଶାସ୍ତ୍ରରେ କୁହାଯାଇଛି।

ଆମେ ଶାନ୍ତିରେ ରହିବାକୁ ଚାହିଁଲେ ରହିପାରିବା। ଆମର ଭଲ ଭଲ କାମ ଆମକୁ ଶାନ୍ତି ଓ ସନ୍ତୋଷ ପ୍ରଦାନ କରିବ। ଅହଂରୁ ଯେତେ ମୁକ୍ତ ହେବା ଶାନ୍ତି ସେତେ ମିଳିବ। ଅବଶ୍ୟ ଅହଂକୁ ଚିହ୍ନିବା କଷ୍ଟସାଧ ବ୍ୟାପାର। ସେ ଏତେ ବହୁରୂପୀ ଓ ଛଦ୍ମବେଶୀ ଯେ ତାକୁ ଚିହ୍ନିବା କଷ୍ଟକର। ସେ ଅତି ଚତୁରତାର ସହିତ ଆମକୁ କୁକର୍ମରେ ଲିପ୍ତ କରାଏ। ଆମେ ଦୁଃଖକଷ୍ଟ ପାଇଲେ ସେ ଖୁସି ହୁଏ। ଅହଂକୁ ଚିହ୍ନିଲା ବେଳକୁ ଅଘଟଣ ଘଟି ସାରିଥାଏ, ଅସୁବିଧାରେ ଆମେ ପଡ଼ିସାରିଥାଉ। ଲୋଭ, କ୍ରୋଧ, ହିଂସା, ହିଂସ୍ରତା, ଈର୍ଷା, ଛଳନା, ମିଥ୍ୟା, ସ୍ୱାର୍ଥପରତା ଏଇସବୁ ହେଉଛି ଅହଂରୂପୀ ସେନାପତିଙ୍କର ଏକ ଏକ ସୈନିକ। ଅହଂକୁ ଚିହ୍ନିବା ପାଇଁ ସୂକ୍ଷ୍ମ ଦୃଷ୍ଟି ବିଶେଷତଃ ଅଧ୍ୟାତ୍ମଦୃଷ୍ଟି ଆବଶ୍ୟକ। ପ୍ରେୟ ପଥକୁ ଛାଡ଼ି ଶ୍ରେୟ ପଥ ଗ୍ରହଣ କରିବାର ଦୃଷ୍ଟି ଦରକାର।

ଭଲ ଭଲ କାମ କରିବା ପାଇଁ ମନରେ 'ମୁଁ' 'ମୁଁ' ଭାବ ପରିବର୍ତ୍ତେ 'ଆମେ' ଭାବ ଆବଶ୍ୟକ। ଅନ୍ୟ ପ୍ରକାରେ ଏହାକୁ ଉଦାରତା ବୋଲି କୁହାଯାଇପାରିବ। ଉଦାରତା ହିଁ ଜୀବନ ଏବଂ ସଂକୀର୍ଣ୍ଣତା ହିଁ ମୃତ୍ୟୁ ବୋଲି ସ୍ୱାମୀ ବିବେକାନନ୍ଦ କହିଛନ୍ତି। ମୋର ସୁବିଧା ହେଉ ଏବଂ ଅନ୍ୟମାନଙ୍କର ମଧ୍ୟ ସୁବିଧା ହେଉ - ଏହା ହେଉଛି ଉଦାରତାରର ଚିହ୍ନ। ମୋର କଲ୍ୟାଣ ହେଉ ଏବଂ ଅନ୍ୟମାନଙ୍କର ମଧ୍ୟ କଲ୍ୟାଣ ହେଉ - ଏହାହିଁ ଉଦାରତା। ଏହି ଭାବନା ମନରେ ଆସିଲେ କୌଣସି ମନ୍ଦକର୍ମ କରିବାର ପ୍ରବୃତ୍ତି ସୃଷ୍ଟି ହେବ ନାହିଁ।

ପ୍ରତ୍ୟେକ କର୍ମ କରିବା ପୂର୍ବରୁ ପାଦଟିଏ ପଛଟିଏ ଘୁଞ୍ଚି ଆସିଲେ ମନ୍ଦକର୍ମ ଓ ଭଲକର୍ମର ସ୍ୱରୂପଟିକୁ ଚିହ୍ନି ହୁଏ। ଚିହ୍ନିଲା ପରେ ମନ୍ଦ କର୍ମରୁ ନିବୃତ୍ତ ରହିବା ସହଜ ହୁଏ ଏବଂ ଭଲ କାମରେ ଆଗେଇ ଯିବା ପାଇଁ ଅଧିକ ଶକ୍ତି ମିଳେ। ଏହା ବହୁ ଆଗରୁ ଭାଗବତ ଶାସ୍ତ୍ରରେ କୁହାଯାଇଛି। କୁହାଯାଇଛି 'ଆପଣା କଲା କର୍ମ ମାନ। ଆଗୁଁ ହୋଇବ ସାବଧାନ। ବିଶିଷ୍ଟ ଚିନ୍ତାବିତ୍‌ମାନେ ଆଜିକାଲି ଏହାକୁ 'ଷ୍ଟେପ୍ ବ୍ୟାକ୍ ଥିଓରୀ' ବୋଲି କହୁଛନ୍ତି।



Digitized by PPRACHIN, SOA

କର୍ମ ମାଧ୍ୟମରେ ଜଣେ ଉଚ୍ଚଚେତନାକୁ ଯାଇପାରିବ। ମହାଯୋଗୀ ଶ୍ରୀ ଅରବିନ୍ଦ କହନ୍ତି, "କର୍ମ ହେଉଛି ଭଗବାନଙ୍କୁ ଶରୀରର ପ୍ରାର୍ଥନା।" ଭଲ ଭଲ କର୍ମ କରିବାଫଳରେ ଚେତନାର ବିକାଶ ଘଟିବା ସହିତ ଜୀବନ ଧନ୍ୟ ହୁଏ, ସାର୍ଥକ ହୁଏ। ଜୀବନର ଲକ୍ଷ୍ୟ ହେଉଛି ଶାନ୍ତି, ଆନନ୍ଦ, ସନ୍ତୋଷ, ସ୍ଥିରତା ପ୍ରଭୃତିକୁ ପ୍ରାପ୍ତ ହେବା। ଭଲ ଭଲ କାମ ଆମକୁ ଏସବୁକଥା ଦେଇପାରିବାକୁ ସମର୍ଥ ହୋଇଥିବାରୁ ସେ ଆମର ପରମବନ୍ଧୁ ବୋଲି ଆମେ ମୁକ୍ତ କଣ୍ଠରେ ସ୍ୱୀକାର କରିବା।





Digitized by PPRACHIN, SOA

# ଆତ୍ମବିଶ୍ଳେଷଣ

ମନୁଷ୍ୟର ଶରୀର ଅତି ଚତୁରତାରେ ଗଢ଼ା ହୋଇଛି । ଲକ୍ଷ ଲକ୍ଷ ସ୍ନାୟୁ ଓ ଶିରା ଜାଲପରି ବିଛାଇ ହୋଇ ପଡ଼ିଛି ଭିତରେ ଭିତରେ ସାରା ଶରୀରରେ, ଗୋଟିଏ ମୂଳରେ ସବୁ ବନ୍ଧା ହୋଇଛନ୍ତି ଓ ଝୁଲିପଡ଼ି ଶରୀରର ଚାରିଆଡ଼କୁ ମେଲିଯାଇଛନ୍ତି । ତେଣୁ ତ ଶରୀରକୁ ଓଲଟବୃକ୍ଷର ଉପମା ପ୍ରଦାନ କରାଯାଇଛି । ଚିକିତ୍ସା ତତ୍ତ୍ୱବିତ୍ ଓ ଚିକିତ୍ସା ଶାସ୍ତ୍ରବିତ୍ ତନ୍ନ ତନ୍ନ **କରି ସେମାନେ** ସ୍ନାୟୁ ଶିରାର ଅନୁଶୀଳନ କରିଛନ୍ତି । କେତେ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରି**ଛନ୍ତି ଶରୀର** ତତ୍ତ୍ୱକୁ, ପାଇଛନ୍ତି କେତେ ତଥ୍ୟ । ତଥାପି ଅନୁସନ୍ଧାନ ସରି ନାହିଁ, ଚାଲିଛି । ଏ ପର୍ଯ୍ୟନ୍ତ ଯେତେ ତତ୍ତ୍ୱ ଓ ତଥ୍ୟ ମନୁଷ୍ୟର ଶରୀରର କ୍ରିୟା ପ୍ରକ୍ରିୟା ଓ ପ୍ରତିକ୍ରିୟା ସମ୍ବନ୍ଧରେ ଜ୍ଞାତ ହୋଇଛି ତାହା ସମୁଦାୟର ଏକ ଦଶମାଂଶ ମାତ୍ର, ଆହୁରି ନବ ଦଶମାଂସ ବାକି ରହିଛି ଜାଣିବା ପାଇଁ । ତଥାପି ବହୁ କଷ୍ଟ ପଡ଼ିଛି ଏତିକି ଅଧ୍ୟୟନ ଓ ଅନୁଧ୍ୟାନ କରିବା ପାଇଁ ଯେତିକି ଏଯାବତ୍ ଜଣାପଡ଼ିଛି । ଏଇ ଅବକାଶରେ ମୁଁ ଡାକ୍ତର ବନ୍ଧୁମାନଙ୍କୁ ଓ ଗବେଷକମାନଙ୍କୁ ଅନେକ ଅନେକ କୃତଜ୍ଞତା ଜଣାଉଛି । ଖାଲି ଜାଣିନାହାନ୍ତି, ପ୍ରୟୋଗ କରୁଛନ୍ତି ମଧ୍ୟ । ବହୁ ପ୍ରକାର ଅସୁସ୍ଥତା ଭିତରୁ ବାହାରୁ ଶରୀରକୁ ଆକ୍ରାନ୍ତ କରୁଛି । ତାହାର ପ୍ରତିକାର ମଧ କରିବା ପାଇଁ ସତତ ଚେଷ୍ଟିତ ଅଛନ୍ତି । ମନରେ ସେବାର ଭାବ ନଥିଲେ ଜଣେ ଆଦୌ ଭଲ ଡାକ୍ତର ହୋଇ ପାରିବ ନାହିଁ । ଆମେ ଯେତେ ଗର୍ବରେ ଫାଟିପଡ଼ିଲେ ମଧ ସଙ୍ଗୀନ କରି ଅସୁସ୍ଥତାର ଶିକାର ହେଲେ ପିଳେହି ପାଣି । ଶରୀର ଏକ ସଫଳ ମାଧ୍ୟମ, ବ୍ୟକ୍ତି ଚେତନାର ସ୍ଥିତି ପାଇଁ । ମଣିଷର ଜୀବନ ଶରୀର ଚେତନା, ପ୍ରାଣ ଚେତନା, ମନଚେତନା ଓ ଚୈତ୍ୟ ଚେତନାର ସମନ୍ୱୟରେ ଗଠିତ । ତେବେ ଶରୀର ହେଉଛି ମୂଳଭିତ୍ତି ଯାହା ଉପରେ ପ୍ରାଣ ଓ ମନର ସ୍ଥିତି । ଶରୀର ଚେତନାର ସଂକଟ ରହିବା ସହିତ ପ୍ରାଣ ଚେତନାର କଷ୍ଟ ଓ ମନଚେତନାର ସଂଘର୍ଷ ରହି ଜୀବନକୁ ଦୁଃଖର ଆଳୟ କରିଥାନ୍ତି । ପଶୁ ଜୀବନରେ କଷ୍ଟ ଅଛି । ସେ କଷ୍ଟ ଶରୀରର ଓ ପ୍ରାଣର । ମନ ନଥିବାରୁ ମନର କଷ୍ଟ ନାହିଁ । ଭାବନା, ନ ଥିବାରୁ କଷ୍ଟ ବହୁଗୁଣିତ ହେବାର ସମ୍ଭାବନା ନାହିଁ । ମାତ୍ର ମଣିଷ ପାଖରେ ଏସବୁ ଅଛି । ବ୍ୟାଧି ଅଛି ଶରୀର କ୍ଷେତ୍ରରେ ପୁଣି ଆଧି ଅଛି ମନର କ୍ଷେତ୍ରରେ । ତେଣୁ ଆଧି ବ୍ୟାଧିର କ୍ଷେତ୍ର ମଣିଷ ଜୀବନ ।

କଷ୍ଟ ଆସେ ଲହରୀ ପରି । ବେଳେବେଳେ ମଣିଷକୁ ଲହରୀ ଭାଙ୍ଗିଦିଏ ଆଉ ବେଳେ ବେଳେ ଲହରୀକୁ ମଣିଷ ଭାଙ୍ଗିଦିଏ । ଧୈର୍ଯ୍ୟ, ସାହସ, ସହନଶୀଳତା, ଉଦାରତା,



Digitized by PPRACHIN, SOA

ତ୍ୟାଗ ଓ ତିତିକ୍ଷା ସମେତ ବହୁ ସଦ୍‌ଗୁଣ ତା' ଭିତରେ ଥାଇ ଲହରୀକୁ ଭାଙ୍ଗିଦିଅନ୍ତି। ପାଦତଳୁ ମାଟି ଖସି ଯାଉଥିଲେ ହେଁ ସେ ଏକ ଅଦୃଶ୍ୟ ଶକ୍ତିକୁ ଧରି ରହିଯାଏ। ଗୋଟିଏ ଲହରୀକୁ ଭାଙ୍ଗିସାରିଲା ପରେ ଆଉ ଗୋଟିଏ ଲହରୀ ଯେ ନ ଆସେ ଏପରି ନୁହେଁ। ଗୋଟିକ ପରେ ଗୋଟିଏ ଲହରୀ ତାକୁ ଭାଙ୍ଗିବାକୁ ପଡ଼େ। ଗୋଟିଏ ଲହରୀ ଭାଙ୍ଗିସାରି ସେ ଯଦି ଆତ୍ମ ସମୀକ୍ଷା କରେ, ତେବେ ବୁଝିପାରେ ଯେ ଲହରୀ ଭାଙ୍ଗିବା ପାଇଁ ଶକ୍ତି କିପରି ଓ କେଉଁଠୁ ଆସିଲା ?

ମନେପଡୁଛି ସେଦିନର କଥା ଯେଉଁଦିନ ଜଣେ ବୟସ୍କ ବ୍ୟକ୍ତି ଏମିତି ଏମିତି ଚିହ୍ନା ହେଲେ। କଥା ପ୍ରସଙ୍ଗରେ ଜାଣିଲି ଯେ ସେ ଜଣେ ଅବସର ପ୍ରାପ୍ତ ହୃଦରୋଗ ବିଶେଷଜ୍ଞ। ଅବସର ପରେ କେଉଁ କାର୍ଯ୍ୟ କରୁଛନ୍ତି ବୋଲି ପ୍ରଶ୍ନ କଲାରୁ ସେ ମତେ ଯାହା କହିଲେ ତାହା ମୁଁ ଆଜି ମଧ୍ୟ ଭୁଲିନାହିଁ। କଥାଟି ଏହିପରି "ଡାକ୍ତରୀ ପାଠପଢ଼ା ଓ ଚାକିରି କାଳ ଭିତରେ ହୃତପିଣ୍ଡ ଚାଲିବାର ଦେଖିଲି। ଏବେ ଖୋଜୁଛି କିଏ ତାକୁ ଚଲାଉଛି, ସେ କେଉଁଠି ଅଛି। ତାକୁ ମନେ ମନେ କେତେ ଖୋଜୁଛି ଆଉ ଖୋଜୁଛି।"

କିଏ ସେ ଶକ୍ତି କାହାକୁ ସେ ଏତେ ଖୋଜୁଛନ୍ତି। ସେ ଏକ ଅଦୃଶ୍ୟ ସର୍ବଶକ୍ତିମାନ ସତ୍ତା। ସବୁଠାରେ ରହି ସବୁ ଦେଖନ୍ତି, ସବୁ ବୁଝନ୍ତି, ଅନୁଭବ କରନ୍ତି। ସେ ସମସ୍ତଙ୍କୁ ଦେଖିପାରନ୍ତି ମାତ୍ର ତାଙ୍କୁ କେହି ଦେଖି ପାରିନ୍ତି ନାହିଁ। ସେ ସମସ୍ତଙ୍କ କଥା ଶୁଣିପାରନ୍ତି ମାତ୍ର ତାଙ୍କୁ କେହି ଶୁଣିପାରନ୍ତିନାହିଁ। ଦେଖିପାରନ୍ତି ନାହିଁ ଅର୍ଥାତ୍ ଚର୍ମଚକ୍ଷୁରେ ଦେଖିପାରନ୍ତି ନାହିଁ। ତାଙ୍କୁ ଦେଖିବା ପାଇଁ ମର୍ମ ଚକ୍ଷୁ ଆବଶ୍ୟକ ହୋଇଥାଏ। ବୈଜ୍ଞାନିକମାନେ ବିଜ୍ଞାନ ବିଦ୍ୟାର ଗୋଟିଏ ଉଚ୍ଚତମ ଉଚ୍ଚତାରେ ପହଞ୍ଚିଲେ ସୂକ୍ଷ୍ମ ଭୌତିକ ରାଜ୍ୟରେ ଥିବା ଅସୀମ ଚେତନାର କଥା ଅଳ୍ପ କେତେଜଣ କହିପାରନ୍ତି। ବୈଜ୍ଞାନିକ ଆଇନଷ୍ଟାଇନଙ୍କ କଥା ଏଇ ପରିପ୍ରେକ୍ଷୀରେ ସ୍ମରଣକୁ ଆସେ। ସେ କହିଛନ୍ତି ଯେ ଏକ ବିରାଟ ମହାଶକ୍ତି ଯିଏ କି ସମଗ୍ର ଜଗତକୁ ଚଳାଉଛନ୍ତି, ସେ ହେଉଛନ୍ତି ଭଗବାନ। ସେହି ବିରାଟ ମହାଶକ୍ତି ଅଦୃଶ୍ୟ ମାତ୍ର ପ୍ରଯତ୍ନରେ ଦୃଶ୍ୟ। ଏହି ପ୍ରଯତ୍ନର ମୂଳ ଶବ୍ଦ ହେଉଛି ସାଧନା। ସାଧନା ବଳରେ ଗୋଟିଏ ଦ୍ୱାର ଭିତରେ ଖୋଲିଯାଏ ଏବଂ ତାଙ୍କୁ ସେଠାରେ ଦେଖିହୁଏ। ସେ ଆମର ଆତ୍ମା ସ୍ୱରୂପ ଅନ୍ତର ସ୍ତରରେ ବିଦ୍ୟମାନ। ତାଙ୍କ ନିକଟରେ ପହଞ୍ଚିବାକୁ ଯେଉଁ ପ୍ରୟାସ ରହିବା ଏକାନ୍ତ ଆବଶ୍ୟକ ତାହା କେବଳ ଆମର ଆଗ୍ରହ ଓ ଆନ୍ତରିକତା।

ସେହି ବିରାଟ ଶକ୍ତି ବାହାରେ ଅଛନ୍ତି ଏବଂ ଆମ ଅନ୍ତରରେ ମଧ୍ୟ ରହିଛନ୍ତି। ଅନ୍ତରରେ ଆବିଷ୍କାର କରିବା ପାଇଁ ଆମେ ଆସିଛୁ। ସୁଖଦୁଃଖର ଅନୁଭବ ବ୍ୟତୀତ ଆଉ ଅନେକ ଅନୁଭବ ଆଣିବାକୁ ଆମକୁ ଅଛି। ସେହି ବିରାଟ ଶକ୍ତିଙ୍କର ସାକ୍ଷାତ



Digitized by PPRACHIN, SOA

ଚେତନାସ୍ତରରେ ଘଟିବାର ଲକ୍ଷ୍ୟ ନେଇ ଆମର ସୃଷ୍ଟି। ସେ ଆମକୁ ଦେଖାଦେବାକୁ ଆଗ୍ରହୀ କିନ୍ତୁ ଆମେ ତାଙ୍କୁ ଦେଖିଲା ଭଳି ଆଖିର ଅଧିକାରୀ ହୋଇନାହୁଁ। ଦେଖିପାରୁନାହୁଁ ବୋଲି ଯେ ସେ ଦେଖା ଦେବେ ନାହିଁ ଏପରି ନୁହେଁ। ଆମକୁ ସେପରି ଚକ୍ଷୁ, କର୍ଣ୍ଣ ଓ ତ୍ୱଚାର ଅଧିକାରୀ ହେବାକୁ ହେବ। ଏଥିପାଇଁ ନିଜେ ନିଜକୁ ଯୋଗ୍ୟ କରିବାକୁ ହେବ। ବ୍ୟକ୍ତି ଚେତନାକୁ ବିଶ୍ୱଚେତନାରେ ପ୍ରଭାବିତ ଓ ଯୁକ୍ତ କରିବାକୁ ଆମର ଜନ୍ମ। ବସି ଶୋଇ ମରିବାକୁ ଆମ ଜନ୍ମ ନୁହେଁ। ଶରୀର ତ ମାଟିରେ ମିଶିବ ଯେକୌଣସି ପ୍ରକାରେ। ପ୍ରାଣ ତ ପ୍ରାଣଭୂମିକୁ ଚାଲିଯିବ ଏବଂ ମନ ଚାଲିଯିବ ମନଭୂମିକୁ। ରହିଯିବ ଚୈତ୍ୟସତ୍ତା। ଯେତିକି ଆନନ୍ଦ, ଆତ୍ମସନ୍ତୋଷ, ଆଗକୁ ଯିବା ପାଇଁ ପ୍ରୟାସ ଓ ପ୍ରଯତ୍ନର ଅଧିକାରୀ ହୋଇଥିବ ତାହାକୁ ସେ ନେଇଯିବ। ଆଉ ଏକ ଜନ୍ମ ପାଇଁ ବହୁ ସୂକ୍ଷ୍ମ ଉପାଦାନକୁ ପୁଞ୍ଜିକରି ସେ ଜନ୍ମ ନେବ।

ଆମକୁ ପଡ଼ିଉଠି ଚାଲିବାକୁ ହେବ ବିଶ୍ୱଚେତନାରେ ରୂପାନ୍ତରିତ ହେବା ପର୍ଯ୍ୟନ୍ତ। ସେତେଦିନ ପର୍ଯ୍ୟନ୍ତ ଆମକୁ ସାହସର ସହିତ ଚାଲିବାକୁ ହେବ।





Digitized by PPRACHIN, SOA

# ମନବଳର ମହତ୍ତ୍ୱ

ବଞ୍ଚିରହିବା ପାଇଁ ବଳର ଆବଶ୍ୟକତା ରହିଛି। ଏଇ ବଳ ଭିତରେ ରହିଛି ଧନ ବଳ, ଜନ ବଳ, କ୍ଷମତା ବଳ, ବାହୁବଳ ଇତ୍ୟାଦି ଇତ୍ୟାଦି। ସବୁ ବଳ ଭିତରେ ମନ ବଳ ଶ୍ରେଷ୍ଠ ଓ ବଳିଷ୍ଠ। ମନ ବଳରେ ଅସମ୍ଭବ ହୋଇପାରେ ସମ୍ଭବ। ସଂସାରରେ ଏପରି ବହୁ ବ୍ୟକ୍ତି ଅଛନ୍ତି ଯେଉଁମାନେ ଧନବଳ ନ ଥାଇ, ଜନ ବଳ ନ ଥାଇ କ୍ଷମତା ତଥା ବାହୁବଳ ନ ଥାଇ ମନ ବଳକୁ ଖଟାଇ ଅସାଧ୍ୟ ସାଧନ କରିଛନ୍ତି। ଏପରି ହୋଇଛି ଯେ ନିଜ ସଫଳତାରେ ନିଜେ ବେଳେ ବେଳେ ବିସ୍ମିତ ହୋଇଥାନ୍ତି ଓ ବହୁ ବେଳେ ଅନ୍ୟମାନଙ୍କର ଈର୍ଷାର ଶିକାର ହୋଇଥାନ୍ତି। ମନର ସ୍ଥିରତା, ଏକାଗ୍ରତା, ଅଧ୍ୟବସାୟ ଏହି ମନ ବଳକୁ ବଢ଼ାଏ। ଦୂରଦୃଷ୍ଟି ଓ ସୂକ୍ଷ୍ମଦୃଷ୍ଟି ଏହି ବଳକୁ ସମୃଦ୍ଧ କରେ।

ବିପଦ ଆସେ ସମୁଦ୍ରର ଲହରୀ ପରି। ଅନ୍ୟମାନଙ୍କୁ ସେଇ ଲହରୀ ଅଙ୍କେ ବହୁତେ ଦାବି ଦିଏ ମାତ୍ର ମନବଳଥିବା ଲୋକ ପାଖରେ ହାରିଯାଏ। ବିପଦ ଡରେ ସାହସକୁ ଓ ସାହସୀ ଲୋକକୁ।

ମନରେ ବଳ ଥିଲେ ପାଦରେ ଶକ୍ତି ଆସେ ଦୁର୍ଗମ ପଥରେ ବାଟ ଚାଲିବା ପାଇଁ। ସୁଡ଼ଙ୍ଗ ଭିତର ଦେଇ ଚାଲିବାକୁ ପଡ଼େ, ସୁଡ଼ଙ୍ଗ ଶେଷରେ ଥାଏ ଆଲୋକର ରେଖା। ସାହସରେ ଜୀବନର ବାଟ ଚାଲିଲେ ବାଟରେ ଥିବା କଣ୍ଟାଝଣ୍ଟା ମଥାନୁଆଁଇ ଦିଅନ୍ତି। ଏପରି ଲୋକ ପାଖରେ ଥାଏ ବିବେକ ବିଚାର, ଆତ୍ମସମୀକ୍ଷା, ନୈତିକତା ସର୍ବୋପରି ମାନବିକ ମୂଲ୍ୟବୋଧ।

ମନ ବଳର ମୂଳରେ ଥାଏ ଆତ୍ମବିଶ୍ୱାସ। ଆତ୍ମବିଶ୍ୱାସ ଏବଂ ଅହଂକାର ଏକା କଥା ନୁହେଁ। ପରସ୍ପର ଠାରୁ ଭିନ୍ନ ଏପରିକି ପରସ୍ପରର ବିପରୀତଧର୍ମୀ ମଧ୍ୟ। ଆତ୍ମବିଶ୍ୱାସର ମୂଳରେ ଥାଏ ଭଗବତ ବିଶ୍ୱାସ। ସ୍ୱାମୀ ବିବେକାନନ୍ଦଙ୍କ ମତରେ ଯାହାର ଆତ୍ମବିଶ୍ୱାସ ନାହିଁ ତା'ର ଭଗବତ ବିଶ୍ୱାସ ନାହିଁ, ପୁଣି ଯାହାର ଭଗବତ ବିଶ୍ୱାସ ନାହିଁ ତାହାର ଆତ୍ମବିଶ୍ୱାସ ନାହିଁ। ଅତଏବ ଦୁଇଟି କଥା ପରସ୍ପରର ପରିପୂରକ ବୋଲି କୁହାଯାଇପାରେ। ଗୋଟିଏ ମୁଦ୍ରାର ଦୁଇପାଖ ପରି ପରସ୍ପର ଓତଃପ୍ରୋତ ଭାବରେ ଜଡ଼ିତ। କେବଳ ଭଗବତ ବିଶ୍ୱାସ ନୁହେଁ, ଏଥି ସହିତ ଭରସା ଥିବା ଦରକାର। ଭରସାର ଗୁଣ ଓ ପରିମାଣ ଅନୁସାରେ ଭଗବତକୃପା ଝରିଆସେ। ପୁରାଣ ପୃଷ୍ଠାରୁ ଏହି ପ୍ରସଙ୍ଗରେ କଥାଟିଏ କୁହାଯାଇପାରେ। ଦ୍ରୌପଦୀଙ୍କ ଭଗବାନ ଶ୍ରୀକୃଷ୍ଣଙ୍କ ପ୍ରତି ବିଶ୍ୱାସଥିଲା, ଦୃଢ଼ ବିଶ୍ୱାସ ଥିଲା, ମାତ୍ର କୁର



Digitized by PPRACHIN, SOA

ରାଜସଭାରେ ପଞ୍ଚପାଣ୍ଡବଙ୍କ ସମେତ ଆଉ କିଛି ଗୁରୁଜନଙ୍କ ଉପରେ ଭରସା ଥିବା ପର୍ଯ୍ୟନ୍ତ ତାଙ୍କ ସମସ୍ୟାର ସମାଧାନ ହେଲା ନାହିଁ। ଯେତେବେଳେ ସବୁ ଭରସା ଅନ୍ୟମାନଙ୍କ ଉପରୁ ତୁଟି ଯାଇ ଭଗବାନଙ୍କ ଚରଣରେ ନିବେଦିତ ହୋଇଗଲା, ସେତେବେଳେ ଅନାୟାସରେ ସମସ୍ୟାର ସମାଧାନ ହୋଇଗଲା।

ଅତଏବ ବିଶ୍ୱାସ ଓ ଭରସା ଏକାଠି ହେଲେ ଯଥାଶୀଘ୍ର ବିପଦ ଦୂରୀଭୂତ ହୁଏ। ବାସ୍ତବରେ ଭରସାର ଶକ୍ତି ଅସାଧାରଣ, ଏହାର ତୁଳନା ନାହିଁ। ଭଗବାନଙ୍କ ଉପରେ ପୂର୍ଣ୍ଣ ଭରସା ଆସିଲେ ଅନ୍ତରର ଗଭୀରତମ ପ୍ରଦେଶରେ ଏକ ପ୍ରତ୍ୟୟ ଜାତ ହୁଏ। ସେହି ପ୍ରତ୍ୟୟର ନାମ ହେଉଛି ଆତ୍ମପ୍ରତ୍ୟୟ। ସେହି ଆତ୍ମପ୍ରତ୍ୟୟରୁ ଆସେ ମନର ବଳ।

ମନର ବଳରେ ବୈଜ୍ଞାନିକମାନେ କେତେ କେତେ ଆବିଷ୍କାର ଓ ଉଦ୍‌ଭାବନ କରିଛନ୍ତି। ବହୁ ବିଫଳତାକୁ ପାରି ହୋଇ ସେମାନେ ସଫଳତା ପାଇଛନ୍ତି। ବିଫଳତା ତାଙ୍କୁ ହତୋତ୍ସାହ କରି ପାରିନାହିଁ, ମନର ବଳରେ, ସେମାନେ ଆଗକୁ ଯାଇଛନ୍ତି ଏବଂ ସଫଳତା ପାଇଛନ୍ତି। ଏହାର ବହୁ ଉଦାହରଣ ଆମ ପାଖରେ ରହିଛି। ଥମାସ୍ ଏଡ଼ିସନ୍ କେତେ କେତେଥର ବିଫଳହୋଇ ଶେଷରେ ବିଦ୍ୟୁତବଲ୍‌ବର ଉଦ୍‌ଭାବନ କରିଛନ୍ତି। ଜନବୟେଡ଼ କେତେ କେତେ ବାର ବିଫଳ ହୋଇ ଶେଷରେ ଦୂରଦର୍ଶନର ଉଦ୍‌ଭାବନ କରିଛନ୍ତି।

କେବଳ ବୈଜ୍ଞାନିକମାନେ ନୁହନ୍ତି, ବହୁ ଦାର୍ଶନିକ, ଶିଳ୍ପୀ, କଳାକାର ତାଙ୍କ ନିଜ ନିଜ କ୍ଷେତ୍ରରେ ବିଫଳତାର ପାହାଚ ଚଢ଼ି ଚଢ଼ି ଶେଷରେ ସଫଳତାର ଛାତରେ ପହଞ୍ଚିଛନ୍ତି। ଏଥିପାଇଁ ଲୋଡ଼ାହୁଏ ଆଶାର ଆଲୋକ। ନିରାଶାର ଅନ୍ଧକାରକୁ ଦୂର କରିପାରେ ଏଇ ଆଶାର ଆଲୋକ। ଅତଏବ ମନବଳର ଏକ ବଡ଼ ଉପାଦାନ ହେଉଛି ଆଶା। ଯାହାର ଆଶା ଅଛି, ତା'ପାଇଁ ବହୁ ଭଲ କଥାର ସମ୍ଭାବନା ଅଛି। ମନବଳ ଥିବା ଲୋକମାନେ ଏକ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପଥରେ ଅଗ୍ରସର ହୋଇଥାନ୍ତି। ସାଧାରଣ ଜୀବନର ତଥାକଥିତ ସୁଖ ଦୁଃଖ ସେମାନଙ୍କୁ ଅଧିକ ଭାବରେ ଆକ୍ରାନ୍ତ କରିପାରନ୍ତି ନାହିଁ।

କେବଳ ବୈଜ୍ଞାନିକ, ଦାର୍ଶନିକ, କଳାକାର ନୁହନ୍ତି, ସାଧାରଣ ଜୀବନରେ ବହୁ ବ୍ୟକ୍ତି ମନର ବଳରେ ବହୁ ବଡ଼ ବଡ଼ କାର୍ଯ୍ୟ କରିଥାନ୍ତି, ବହୁ ଅଗ୍ରଗତି କରିଥାନ୍ତି। ବିପଦକୁ ସାମ୍ନା କରିବାର ଶକ୍ତି ସେମାନେ ଅର୍ଜନ କରିଥାନ୍ତି। ସାଧାରଣ ଜୀବନରେ ଆସୁଥିବା ବାଧାବିଘ୍ନକୁ ସେମାନେ ଅତିକ୍ରମ କରିଯାନ୍ତି।

ସେମାନେ ବୁଝିଥାନ୍ତି ଯେ ଜୀବନ ଅଛି ତ କ୍ଷୟ କ୍ଷତି ହେବ, କ୍ଷୟ କ୍ଷତି ହେଲା ବୋଲି ଏତେ ଭାଙ୍ଗିପଡ଼ିଲେ ଚଳିବ ନାହିଁ। ଆମକୁ ତାଙ୍କ ପରି ମନେ ରଖିବାକୁ ହେବ ଯେ ପ୍ରତ୍ୟେକ ରାତିର ଏକ ପାହାନ୍ତି ଅଛି, ପ୍ରତ୍ୟେକ ଶୀତପଛରେ ଏକ ବସନ୍ତ ଲାଗିକରି



Digitized by PPRACHIN, SOA

ରହିଛି । ଏହା କଥାର କଥା ନୁହେଁ, ଚିରନ୍ତନ ସତ୍ୟ । ଏହି ସତ୍ୟକୁ ଗ୍ରହଣ କରି ଆମେ ମନବଳର ପୂଜାଫୁଲରେ ଜୀବନର ନିରାଜନା କରିବା ଏବଂ ପଛକୁ ନ ଚାହିଁ ଅଧାବାଟରେ ଅଟକି ନ ଯାଇ ଆଗକୁ ଯିବା । ଆମେ ସ୍ମରଣରେ ରଖିବା ସ୍ୱାମୀ ବିବେକାନନ୍ଦଙ୍କ କଥା "କୁହ ଅସ୍ତି, ଅସ୍ତି- ନାସ୍ତି, ନାସ୍ତି କହି ସବୁ ଗଲା ।" ମନେପକାଇବା ଶ୍ରୀମାଙ୍କ କଥା- "ତୁ କଣ ଭଗବାନଙ୍କୁ ଜାତକଠାରୁ ଅଧିକ ଶକ୍ତିଶାଳୀ ହେବାକୁ ଦେବୁନାହିଁ ? ଭଗବାନଙ୍କ ନିମନ୍ତେ କୌଣସି ଅପରିବର୍ତ୍ତନୀୟ ଜାତକ ନାହିଁ ।" ଆଶା ଆଣିଦେବ ପାଦରେ ଶକ୍ତି, ପ୍ରାଣରେ ଉତ୍ସାହ, ଅନ୍ତରରେ ସାହସ ଏବଂ ମନରେ ବଳ । ମନ ବଳକୁ ଆଶ୍ରୟ କରି ଆମେ ଗିରି ଲଙ୍ଘନ କରିବା, ଏଥିରେ ସନ୍ଦେହ ନାହିଁ ।





Digitized by PPRACHIN, SOA

# ଅନ୍ୱେଷଣ

ମୁଁ, ଆମେ ଓ ଆମେମାନେ ସମସ୍ତେ ଭଗବାନଙ୍କୁ ଖୋଜିବା ପାଇଁ ଏଇ ପୃଥିବୀକୁ ଆସିଛୁ। ଭଗବାନ କ'ଣ ହଜି ଯାଇଛନ୍ତି କି ? ନା, ହଜିଯାଇନାହାନ୍ତି, ଲୁଚି ଯାଇଛନ୍ତି, ନିଜକୁ ଲୁଚାଇ ଦେଇଛନ୍ତି। ଲୀଳା ପାଇଁ ଆମ ସହ ଲୁଚକାଳି ଖେଳିବାରେ ତାଙ୍କର ପ୍ରବଳ ଆନନ୍ଦ। ତାଙ୍କ ଆନନ୍ଦର ସୀମା ନାହିଁ। ଅତଏବ ମଣିଷ ଜୀବନର ଏକମାତ୍ର ଲକ୍ଷ୍ୟ ହେଉଛି ଭଗବାନଙ୍କୁ ଖୋଜିବା। ଯିଏ ଯେତେ ଖୋଜି ପାରିବ, ତା' ଜୀବନ ସେତେ ସାର୍ଥକ ହେବ। ଖୋଜିଲେ ସେ ମିଳିବେ, ଆଜି ନ ହେଲେ କାଲି ମିଳିବେ। ନଖୋଜିଲେ ଆଦୌ ମିଳିବାର ଅବକାଶ ହିଁ ନାହିଁ। ସେ ତ ସେପରି ନୁହନ୍ତି ଯେ ଆପଣାଛାଏଁ ମିଳିଯିବେ, ହାତରେ ଆସି ଖସିପଡ଼ିବେ।

ଯଦି ଏହା ଜୀବନର ଏକମାତ୍ର ଲକ୍ଷ୍ୟ, ତେବେ ସେ ଲକ୍ଷ୍ୟ ସାଧିତ ହେବ କିପରି, ତାହା ଜାଣିବା ନିତାନ୍ତ ଆବଶ୍ୟକ। ଏଥିପାଇଁ ବହୁ ମତ ଅଛି ପୁଣି ବହୁ ପଥ ଅଛି। ତେଣୁ ତ କୁହାଯାଇଛି ଯେ, ଯେତେ ମତ ସେତେ ପଥ। ବାରମ୍ବାର ଜନ୍ମମୃତ୍ୟୁର ଚକ୍ରରେ ନଘୂରି ମୁକ୍ତି ପାଇଯିବାର ମତ ରହିଛି, ସେଥିପାଇଁ ପୁଣି କୃଚ୍ଛ୍ର ସାଧନାର ପଥ ରହିଛି। ବୈରାଗ୍ୟର ଅସ୍ତ୍ରରେ କାମନା ବାସନାର ବୃକ୍ଷକୁ ଛେଦନ କରିବାର କଥା ବହୁ ପୂର୍ବରୁ ପ୍ରଚଳିତ ହୋଇରହିଛି। ଏଥିପାଇଁ ଘରଦ୍ୱାର ଛାଡ଼ି ବଣ ଗମନ କରାଯାଇପାରେ, ସେ ପରମ୍ପରା ମଧ୍ୟ ରହିଛି। ଜଟାଜୁଟ ଧାରଣ କରି ଗୁମ୍ଫା ଗୁମୁଟରେ ବସି ପରମପ୍ରଭୁଙ୍କ ପାଦରେ ଲୟ ଲଗାଇଲେ ଏହି ମୁକ୍ତି ମିଳେ ବୋଲି ଶାସ୍ତ୍ରରେ କଥିତ ଅଛି। ଏ ପଥ ମଧ୍ୟ ବିସ୍ତୃତ ତଥା ପ୍ରଶସ୍ତ ହୋଇ ରହିଛି ବହୁ ଆଗରୁ। ମାତ୍ର ଏବେ ଘରଦ୍ୱାର ନଛାଡ଼ି ମଧ୍ୟ ଭଗବାନଙ୍କୁ ଖୋଜାଯାଇପାରେ, ଏପରି ଏକ ପଥ ରହିଛି। ଏହାହିଁ ପୂର୍ଣ୍ଣ ଯୋଗର ପଥ। ସେତେବେଳେ ଘରଦ୍ୱାର ବନ୍ଧୁବର୍ଗ, ଧନ ସମ୍ପଦ ବାଧକ ନହୋଇ ବରଂ ସହାୟକ ହୋଇପାରନ୍ତି ଚଲାବାଟରେ। ଏସବୁକୁ ଭଗବାନଙ୍କର ଦାନ ବୋଲି ଭାବିଲେ ଏସବୁର ଭୂମିକା ମଧ୍ୟ ଭିନ୍ନ ହୋଇଯାଏ। ପିତାମାତା, ଭାଇଭଉଣୀ, ବନ୍ଧୁବାନ୍ଧବ ସାଧନାର ପଥରେ ସୁଯୋଗର ମାଧ୍ୟମ ହୋଇଯାନ୍ତି, କାରଣ ଏସବୁ ତ ପରମ ପ୍ରଭୁଙ୍କର ଦିବ୍ୟ ଦାନ, ସେହି ଦାନକୁ ଅବମାନନା କରାଯାଇ ନପାରେ। ଧନ ସମ୍ପଦ ଆଗକୁ ଯିବାରେ ସହଯୋଗର ଉପାଦାନ ହୁଏ। ଗର୍ବ, ଅହଂକାରକୁ ବାଦ୍ ଦେଲେ ଧନ ସମ୍ପଦ ହୁଅନ୍ତି ଚେତନାର ବିକାଶ ନିମନ୍ତେ ଆବଶ୍ୟକ ଉପାଦାନ। ଏଇ ପରିପ୍ରେକ୍ଷୀରେ ମନେପଡ଼େ ଭକ୍ତକବି ମଧୁସୂଦନ ରାଓଙ୍କର ପ୍ରାର୍ଥନାର ପଂକ୍ତିଟିଏ।



Digitized by PPRACHIN, SOA

'ଜନକ ଜନନୀ ସୁତ ସୁତା ଜାୟାଧବ
ସହୋଦର ସହୋଦରା ଆତ୍ମୀୟ ବାନ୍ଧବ
ପ୍ରଭୁ, ଏ ସର୍ବ ସମ୍ପଦ
ତୋର ଦୟା ନିଦର୍ଶନ ଆହେ ଆଦିକନ୍ଦ।".

ମଣିଷର ତିନିଗୋଟି ସତ୍ତା ବିକଶିତ ହୋଇଛି। ତାହା ହେଲା ଦେହ, ପ୍ରାଣ ଓ ମନ। ଦେହ ଅପେକ୍ଷା ପ୍ରାଣ ଓ ମନର ଧର୍ମ ହେଉଛି ପ୍ରମତ୍ତତା। ଏ ଦୁଇ ଉପାଦାନ ସହଜରେ ଆୟତ୍ତ ହୁଅନ୍ତି ନାହିଁ। ଏମାନଙ୍କୁ ଧ୍ୱଂସ କରିଦେବା ନୁହେଁ ବରଂ ନିଜ ଆୟତ୍ତକୁ ଆଣିବା ଆମର କର୍ତ୍ତବ୍ୟ। ଆୟତ୍ତକୁ ଆସିଲେ ଏ ଦୁହେଁ ସଫଳ ମାଧ୍ୟମ ହେବେ ଆମର ଅଗ୍ରଗତି ନିମନ୍ତେ। ଦେହ ମଧ୍ୟ ଯଥେଷ୍ଟ ସହଯୋଗ କରିବ ଯୋଗ ସାଧନାରେ। ଭଗବାନଙ୍କୁ ଖୋଜିବା ଦିଗରେ ମନର ଭୂମିକା ସର୍ବାପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ କାରଣ ଏହା ହେଉଛି ମଣିଷର ନିୟାମକ ତଥା ନିୟନ୍ତ୍ରକ ସତ୍ତା। ସ୍ଥିତିରେ ଅତ୍ୟନ୍ତ ସୂକ୍ଷ୍ମ ମାତ୍ର ଗତିରେ ଅତୀବ ଚଞ୍ଚଳ। ଭକ୍ତକବିଙ୍କ ଭକ୍ତିରେ -

"ଆହା କିବା ଅଦ୍‌ଭୁତ ମନର ଗତି
ଅଚିନ୍ତନୀୟ ଅଟେ ତାର ଶକତି
କ୍ଷଣ ମାତ୍ରକେ ମନ କରେ ଦର୍ଶନ
ଏହି ଅପରିସୀମ ବିଶ୍ୱଭୁବନ।"

ଏଇ ମନ ଯଦି ସହଯୋଗୀ ହୁଏ ଅର୍ଥାତ୍ ଭଗବାନଙ୍କୁ ଖୋଜିବା ଦିଗରେ ମାଧ୍ୟମ ହୁଏ, ତେବେ ଖୋଜିବା କାର୍ଯ୍ୟଟି ସହଜ ହୁଏ, ସରଳ ହୁଏ। ମନର କାମ ହେଉଛି ସବୁକଥାକୁ ଭାଙ୍ଗି ଭାଙ୍ଗି ଦେଖିବା, ସହଯୋଗୀ ହେଲେ ସେ ଆଉ ନ ଭାଙ୍ଗି ବରଂ ଯୋଡ଼ିବାକୁ ଆରମ୍ଭ କରେ। ବୁଝିବାରେ ସାହାଯ୍ୟ କରେ ଜୀବନର ରହସ୍ୟ, ଜୀବନର ଲକ୍ଷ୍ୟ। ଉଚ୍ଚ ମନରେ ମିଳେ ଅମୃତର ସନ୍ଧାନ, ବୈକୁଣ୍ଠର ସ୍ଥିତି ଜନିତ ସନ୍ତୋଷ ଥାଏ ଉଚ୍ଚମନରେ। ମନ ଏକ ରବର ସଦୃଶ, ଏହାକୁ ଭିଡ଼ିଲେ ଏହା ପ୍ରଶସ୍ତ ହୁଏ, ଟିକିଏ କଷ୍ଟ ଅବଶ୍ୟ ଭିଡ଼ିବା ପାଇଁ ପଡ଼େ। ମନେପଡ଼େ ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ରଚନାରୁ ପଂକ୍ତିଟିଏ,

'ଯା ମନ ଯେପରି ତା ପାଇଁ ସେପରି
ଫଳ ଥୋଇଥାଏ ବିଶ୍ୱ
ଉଚ୍ଚ ମନା ଉଚ୍ଚେ ଅମୃତ ଲଭଇ
ନୀଚମନା ଲଭେ ବିଷ।'

ଜଳରେ ସ୍ଥଳରେ ଆକାଶରେ ବତାସରେ ସର୍ବତ୍ର ଭଗବାନଙ୍କୁ ଖୋଜିବାକୁ ପ୍ରେରଣା ଦିଏ ମନ, ଆଗେଇ ଆସେ ମନ। ନୀଳ ଆକାଶର ନିହାରିକାଠାରୁ ଧରିତ୍ରୀର ଧୂଳିକଣା



Digitized by PPRACHIN, SOA

ପର୍ଯ୍ୟନ୍ତ ତା'ର ଗତି ଅବ୍ୟାହତ। ତେଣୁ ସର୍ବତ୍ର ଭଗବାନଙ୍କୁ ଖୋଜିବାର ସାମର୍ଥ୍ୟ କେତେକାଂଶରେ ତାହାର ରହିଛି। ଅବଶ୍ୟ କେବଳ ତା'ର ସାମର୍ଥ୍ୟରେ ଭଗବତ ପ୍ରାପ୍ତି ସମ୍ଭବ ନ ହୋଇପାରେ, ମାତ୍ର ବିଭୁକୃପାର ଅବତରଣ ପାଇଁ ପଥ ପ୍ରସ୍ତୁତ ହୋଇଯାଇପାରେ। ଭଗବାନ ଉପଯୁକ୍ତ ପାତ୍ରରେ ଭକ୍ତ ମନର ବ୍ୟାକୁଳତା ଦ୍ୱାରା ନିଜକୁ ଦେଇ ଦିଅନ୍ତି। ଅର୍ଥାତ୍ ଭକ୍ତ ହାତରେ ଧରାଦିଅନ୍ତି। ବ୍ୟାକୁଳତାର ସ୍ଥିତି ହେଉଛି ମନରେ। ଯଦି ବ୍ୟାକୁଳତା ନାହିଁ, ତେବେ ଭଗବତ ପ୍ରାପ୍ତି ସମ୍ଭବ ନୁହେଁ। ମନହେଉଛି ଚିନ୍ତାର ଗନ୍ତାଘର। ନିଜ ଚିନ୍ତାକୁ ନିମ୍ନମୁଖୀ ନ କରି ଊର୍ଦ୍ଧ୍ୱମୁଖୀ କରିବା ଦ୍ୱାରା ସତ୍‌ଚିନ୍ତା ମନରେ ଆସେ। ଏହି ସତ୍‌ଚିନ୍ତା ଭଗବାନଙ୍କ ପ୍ରାପ୍ତି ମାର୍ଗକୁ ପ୍ରଶସ୍ତ କରିଥାଏ। ଭଗବତ ଲାଭ ପାଇଁ ବ୍ୟାକୁଳତାର ଅନ୍ୟନାମ ଅଭୀପ୍‌ସା। ଅଭୀପ୍‌ସା ଆସିଲେ ମନର ଅବସ୍ଥା ବଦଳିଯାଏ। ମନରେ ଆସେ ବିଶ୍ୱାସ, ବିଶ୍ୱାସ ହିଁ ଭଗବତ ପ୍ରାପ୍ତି ପାଇଁ ଏକ ଅନୁକୂଳ ପରିବେଶ ସୃଷ୍ଟି କରେ। ଭରସା ଆସେ ଭଗବାନଙ୍କ ଉପରେ ଏଇ ମନରୁ। ଉଚ୍ଚମନ ହୁଏ ପ୍ରାଣସତ୍ତାର ଗୁରୁ, ଦେହ ସତ୍ତାର ଦିଗ୍‌ଦ୍ରଷ୍ଟା ମଧ୍ୟ। ଉଦ୍ଦାମ ପ୍ରାଣକୁ ଯଥାଯୋଗ୍ୟ ପଥରେ ପରିଚାଳିତ କରିବାର ଦକ୍ଷତା ତାହାର ରହିଛି। ଦେହକୁ ମଧ୍ୟ ଯଥାଯଥ ମାର୍ଗ ଦର୍ଶନ ତାଦ୍ୱାରା ସମ୍ଭବ ହୋଇପାରେ। ମନର ସ୍ଥିରତା, ପ୍ରଶାନ୍ତି, ପ୍ରସାରତା ଏଥିପାଇଁ ନିତାନ୍ତ ଆବଶ୍ୟକ। ଚଞ୍ଚଳ ମନକୁ ଅଭ୍ୟାସ ଦ୍ୱାରା ସ୍ଥିର କରାଯାଇପାରେ ବୋଲି ବହୁ ଶାସ୍ତ୍ରରେ ବହୁ ପୂର୍ବରୁ ଉଲ୍ଲେଖ କରାଯାଇଛି। ଶ୍ରୀମଦ୍ ଭଗବଦ୍ ଗୀତାରେ ଶ୍ରୀକୃଷ୍ଣ ହେଉଛନ୍ତି -

'ଅସଂଶୟଂ ମହାବାହୋ ମନୋ ଦୁର୍ନିଗ୍ରହଂ ଚଳମ୍
ଅଭ୍ୟାସେନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟ ତେ।
(୬ଷ୍ଠ ଅଧ୍ୟାୟ, ଶ୍ଳୋକନଂ୩୫)

ଏହାର ଆକ୍ଷରିକ ଅନୁବାଦ ଏହିପରି -

ମନ ଦୁଃସାଧ୍ୟ, ଚଞ୍ଚଳ ମହାବାହୋ ! ନିଃସଂଶୟ
ଅଭ୍ୟାସେ, ବୈରାଗ୍ୟ ବଳେ ହୁଅଇ ତା'ର ନିଗ୍ରହ।'

ମନରେ ସ୍ଥିରତା ଆସିଲେ ଲକ୍ଷ୍ୟ ସାଧନର ମାର୍ଗ ସହଜ ହୁଏ। ମନର ସ୍ଥିରତାରୁ ଆସେ ଶ୍ରଦ୍ଧା ବା ଭକ୍ତି। ଭକ୍ତି ହେଉଛି ହୃଦୟ କପିଳାସର ନିର୍ମଳ ନିର୍ଝର ଯାହା ଭଗବତ ମହିମାକୁ ଅହରହ ଗାନ କରୁଥାଏ, ଏବଂ ଧ୍ୟାନ କରୁଥାଏ। ନାରଦ ଭକ୍ତି ସୂତ୍ରରେ କୁହାଯାଇଛି 'ସାନୁରକ୍ତିରୀଶ୍ୱରେ। ଅର୍ଥାତ୍ ଭଗବାନଙ୍କ ଠାରେ ଏକାନ୍ତ ଅନୁରକ୍ତି ହିଁ ଭକ୍ତି। ପ୍ରେମରସରେ ରସାଣିତ ଏଇ ଭକ୍ତି କରେ ଚିତ୍ତକୁ ନିର୍ମଳ ଓ ବିଶୁଦ୍ଧ। ଭଗବାନଙ୍କର ସାନ୍ନିଧ୍ୟ ପ୍ରାପ୍ତ କରାଇପାରେ ଏଇ ଭକ୍ତି। ମଣିଷ ନିଜ ନାମ, ଯଶ, ଗୁଣ, ରୂପ, କ୍ଷମତା ଓ ଆସକ୍ତିରେ ବୁଡ଼ିଥିବା ପର୍ଯ୍ୟନ୍ତ ମନରେ ଭକ୍ତି ଆସେ ନାହିଁ। ଭକ୍ତିର ମୂଳରେ ରହିଛି



Digitized by PPRACHIN, SOA

କୃତଜ୍ଞତା, ଭଗବାନଙ୍କ ପ୍ରତି ଏଇ କୃତଜ୍ଞତା ଉଦ୍ଦିଷ୍ଟ। ଯାହା ଆମକୁ ମିଳିଛି ସେଥିରେ ଆମର ସହାସ୍ୟ ସ୍ୱୀକୃତି ହିଁ କୃତଜ୍ଞତା। ଭଗବତ ଦାନକୁ ସାଦରେ ଗ୍ରହଣ କରିବା ପୂର୍ବକ ତାଙ୍କ ପ୍ରତି ନମ୍ରତା ପ୍ରଦର୍ଶନ ହିଁ କୃତଜ୍ଞତା। କୃତଜ୍ଞତାରୁ ଶ୍ରଦ୍ଧା ବା ଭକ୍ତି, ଭକ୍ତିରୁ ବିଶ୍ୱାସ, ବିଶ୍ୱାସରୁ ଭରସା ପ୍ରଭୃତିର ସୃଷ୍ଟି ହୁଏ। ସେଇ ଭରସା ଅତୁଟ ଓ ଅଖଣ୍ଡ ହେବା ଆବଶ୍ୟକ। ଶ୍ରୀଅରବିନ୍ଦ କହନ୍ତି 'Have faith and He will do everything for your', ଅତଏବ ମୂଳକଥାଟି ଶ୍ରଦ୍ଧା ବା ଭକ୍ତି। ଯାହାର ଭଗବାନଙ୍କ ପ୍ରତି ଶ୍ରଦ୍ଧା ନାହିଁ ତା' ଜୀବନ ନୀରସ ଓ ଶୁଷ୍କ। ସେ ଲକ୍ଷ୍ୟହରା ବିହଙ୍ଗ ସମ ଉଦ୍‌ଭ୍ରାନ୍ତ। ଭଗବାନଙ୍କ ପ୍ରତି ଶ୍ରଦ୍ଧା ଆସିଲେ ସମଗ୍ର ଜଗତ ପ୍ରତି ଶ୍ରଦ୍ଧା ଆସିବ କାରଣ ଏ ଜଗତ ହେଉଛି ତାଙ୍କର ଆତ୍ମାଭିବ୍ୟକ୍ତି। ପ୍ରତ୍ୟେକ ବସ୍ତୁ ବା ବ୍ୟକ୍ତି ତାଙ୍କର ଅଭିବ୍ୟକ୍ତିର ଏକ ଏକ ପ୍ରକାଶ। ସ୍ୱାମୀ ବିବେକାନନ୍ଦଙ୍କ କଥାରେ- "ଭଗବତ ପ୍ରେମ ଆସିଲେ ତାହା ସାଙ୍ଗେ ସାଙ୍ଗେ ତା'ର ନିଶ୍ଚିତ ଫଳ ସ୍ୱରୂପ ସର୍ବଭୂତଠାରେ ପ୍ରେମ ଆସିବ।" ଅନ୍ତରରେ ପ୍ରେମ ଭକ୍ତି ଆସିଲେ ପ୍ରେମ, ପ୍ରେମିକ ଓ ପ୍ରେମାସ୍ପଦ ଏକ ହୋଇଯାଆନ୍ତି। କ୍ଷଣେ ତାଙ୍କ କଥା ନ ଭାବିଲେ ମନ ଯଦି ଅଥୟ ହୁଏ, ବିବ୍ରତ ହୁଏ ତେବେ ବୁଝିବାକୁ ହେବ ପ୍ରେମ ଆସିଛି। ଏହି ବିରହ ଜନିତ ଯନ୍ତ୍ରଣାକୁ ଶାସ୍ତ୍ରରେ ମଧୁର ଯନ୍ତ୍ରଣା ବୋଲି କୁହାଯାଏ। ନାମ ଜପରେ ମଧ ଆମେ ତାଙ୍କୁ ଖୋଜି ପାରିବା। ନାମ ଓ ନାମୀ ଅଭେଦ ବୋଲି କୁହାଯାଇଛି ବହୁଶାସ୍ତ୍ରରେ। ନାମୀଠାରେ ଯେତିକି ଶକ୍ତି ରହିଛି ତା'ର ନାମରେ ସେତିକି ବା ତା'ଠାରୁ ଅଧିକ ଶକ୍ତି ନିହିତ ବୋଲି କୁହାଯାଇଛି। କଳିଯୁଗରେ ନାମକୁ ଅଧିକ ପ୍ରାଧାନ୍ୟ ଦିଆଯାଇଛି। କଲୌ ନାମୈବ କେବଳମ୍ ଅର୍ଥାତ୍ କଳିଯୁଗରେ କେବଳ ନାମର ମହତ୍ତ୍ୱ ସର୍ବାପେକ୍ଷା ଅଧିକ। ଯେତେ ନାମରେ ଡାକିଲେ ମଧ ପ୍ରତ୍ୟେକ ଡାକ ସେହି ଏକ ଅଦ୍ୱିତୀୟଙ୍କ ନିକଟରେ ପହଞ୍ଚିଯାଏ। ତେଣୁ କୁହାଯାଏ ସର୍ବଦେବ ନମସ୍କାର କେଶବଂ ପ୍ରତିଗଚ୍ଛତି'। ଯଜ୍ଞ ମଧରେ ଜପଯଜ୍ଞ ଶ୍ରେଷ୍ଠ ବୋଲି ଶ୍ରୀମଦ୍ ଭଗବଦ୍ ଗୀତା ଗ୍ରନ୍ଥରେ ଉଲ୍ଲେଖ କରାଯାଇଛି -

'ମହର୍ଷୀଣାଂ ଭୃଗୁରହଂ ଗିରାମସ୍ମ୍ୟେ କମକ୍ଷରମ୍
ଯଜ୍ଞାନାଂ ଜପ ଯଜ୍ଞୋସ୍ମି ସ୍ଥାବରାଣାଂ ହିମାଳୟଃ।'

(ଦଶମ ଅଧ୍ୟାୟ, ୨୫ ଶ୍ଳୋକ)

ଏହାର ଆକ୍ଷରିକ ଅନୁବାଦ ଏହିପରି -

ମହର୍ଷିକୁଳେ ମୁଁ ଭୃଗୁ, ଓଁକାର ମୁହିଁ ବଚନେ
ଯଜ୍ଞ ମଧେ ଜପଯଜ୍ଞ ହିମାଦ୍ରି ସ୍ଥାବର ଗଣେ।

ଶ୍ରୀ ଅରବିନ୍ଦ କହିଛନ୍ତି - 'Nama japa has a great power in it'. ଯେଉଁ ଦେବତାଙ୍କ ନାମ ଉଚ୍ଚାରଣ କରାଯାଏ, ସେହି ଦେବତା ହିଁ ପ୍ରକଟ ହୁଅନ୍ତି। ଶ୍ରୀଅରବିନ୍ଦଙ୍କ



Digitized by PPRACHIN, SOA

ପୂର୍ଣ୍ଣଯୋଗରେ ନାମ ଜପ ଉପରେ ବହୁତ ଗୁରୁତ୍ୱ ପ୍ରଦତ୍ତ ହୋଇଛି। ମନ ଓ ପ୍ରାଣର କଳୁଷ ବା ଅପୂର୍ଣ୍ଣତାକୁ ଦୂର କରିବା ପାଇଁ ନାମ ଜପ ଅଧିକ ସମର୍ଥ। ଶରୀରର ରୂପାନ୍ତର କ୍ଷେତ୍ରରେ ନାମଜପ ଅନିବାର୍ଯ୍ୟ। ଏକଥା ଶ୍ରୀମା କହିଛନ୍ତି। ଏହା ସହିତ ସେ କହିଛନ୍ତି- "ମୁଁ ଦେଖିଛି ଜପର ଅବଚେତନ ଉପରେ, ନିଶ୍ଚେତନା ଉପରେ, ଜଡ଼ ଉପରେ, ଶରୀରର କୋଷ ଉପରେ ଏକ ସଂଗଠନକାରୀ ପ୍ରଭାବ ରହିଛି।" ଶ୍ରୀମା କହିଛନ୍ତି - If something wrong happens, at once repeat my name - ma-ma- ଅର୍ଥାତ୍ ଯଦି କୌଣସି ଅସୁବିଧା ଦେଖାଦିଏ, ତତ୍କ୍ଷଣାତ୍ ମୋର ନାମ 'ମା' 'ମା' ଜପ କର।

ଧ୍ୟାନ ମାଧ୍ୟମରେ ମଧ୍ୟ ଭଗବାନଙ୍କୁ ଅନୁସନ୍ଧାନ କରାଯାଇପାରେ ଧ୍ୟାନ ଆଣେ ଏକାଗ୍ରତା, ଭଗବାନଙ୍କ ସହ ଯୁକ୍ତ ହୋଇ ରହିବାର ଏକ ମାନସିକତା। ଅବଶ୍ୟ ଧ୍ୟାନ କରିବାକୁ ଆଖିବୁଜିଲେ ହିଁ ନାନା ରକମର ଯାନ୍ତ୍ରିକ ଚିନ୍ତା ମନ ଭିତରକୁ ଆସେ। ସେ କ୍ଷେତ୍ରରେ ମନକୁ ଶୂନ୍ୟ କରି ଦେବାକୁ ହେବ ଯାହାଫଳରେ କି ଯାନ୍ତ୍ରିକ ଚିନ୍ତା ମନ ଭିତରକୁ ପଶିପାରିବ ନାହିଁ। ଆଖି ଖୋଲି ମଧ୍ୟ ଧ୍ୟାନ କରାଯାଇପାରେ। ଧ୍ୟାନ ପାଇଁ ଭିତରୁ ପ୍ରେରଣା ଆସିବା ଦରକାର। କେବଳ ଘଣ୍ଟା ଘଣ୍ଟା ବସିଲେ ଧ୍ୟାନ ହୁଏ ନାହିଁ। ଶ୍ରୀମା କହନ୍ତି ଧ୍ୟାନ ଆପେ ଆପେ ହୁଏ, ଯଦି ଧ୍ୟାନ ଭାଙ୍ଗିବାକୁ ଅର୍ଥାତ୍ ଧ୍ୟାନରୁ ଉଠିବାକୁ ନିଜକୁ କଷ୍ଟ ଲାଗେ, ତେବେ ଯଥାର୍ଥ ଧ୍ୟାନ ହେଲା ବୋଲି କୁହାଯିବ। ଧ୍ୟାନ ଦ୍ୱାରା ଦୃଷ୍ଟି ଅନ୍ତର୍ମୁଖୀ ହୁଏ ଏବଂ ହୃଦ୍‌କେନ୍ଦ୍ରରେ ଭଗବତ ଉପସ୍ଥିତି ଅନୁଭୂତ ହୁଏ। ଧ୍ୟାନ କରାଯାଇପାରେ ମସ୍ତକରେ ପୁଣି ହୃଦୟରେ। ମାତ୍ର ହୃଦୟରେ ଧ୍ୟାନ ଅଧିକ ସଫଳ ଓ ଉପକାରୀ ହୋଇଥାଏ। ଏହାଦ୍ୱାରା ହୃଦୟର ପଶ୍ଚାତରେ ଥିବା ପରଦାଟି ଖୋଲିଯାଏ ଏବଂ ଭଗବାନଙ୍କ ସହିତ ସାକ୍ଷାତକାର ସହଜ ହୁଏ। ବିକ୍ଷିପ୍ତ ମନକୁ ଏକାଗ୍ର କରିବା ପାଇଁ ତଥା ଭଗବତ ଅଭିମୁଖୀ କରିବାକୁ ଧ୍ୟାନ ଏକାନ୍ତ କାମ୍ୟ। ତେବେ ଜୋର୍ ଜବରଦସ୍ତି ଧ୍ୟାନ କରିବା ଉଚିତ ନୁହେଁ। ସ୍ୱତସ୍ଫୁର୍ତ୍ତ ଭାବରେ ଧ୍ୟାନ ହେବା ଆବଶ୍ୟକ। ପ୍ରାର୍ଥନା ଦ୍ୱାରା ଭଗବତ ସାନ୍ନିଧ ମିଳେ। ମଣିଷ ଆଉ ଭଗବାନଙ୍କ ଭିତରେ ପ୍ରାର୍ଥନା ଏକ ସୁବର୍ଣ୍ଣ ସେତୁ। ପ୍ରାର୍ଥନା ମାଧ୍ୟମରେ ଆମ କଥା ଭଗବାନଙ୍କ ନିକଟରେ ପହଞ୍ଚେ ଏବଂ ଭଗବାନ ଯାହା ଦେବାକୁ ଚାହାନ୍ତି ତାହା ପ୍ରାର୍ଥନାର ଉତ୍ତର ସ୍ୱରୂପ ଆମ ନିକଟରେ ଆସି ପହଞ୍ଚେ। ପ୍ରାୟ ପ୍ରତ୍ୟେକ ମଣିଷ ଅନେ୍କ ବହୁତେ ପ୍ରାର୍ଥନା ଜଣାଇଥାନ୍ତି। ପ୍ରାର୍ଥନାର ଅର୍ଥ କିଛି ଚାହିଁବା। ଧନ, ଜନ, ସୁଖ, ଶାନ୍ତି, ଯଶ, ପ୍ରଶଂସା, ଆୟୁ ଆରୋଗ୍ୟ ପ୍ରଭୃତି ଲାଗି ପ୍ରାର୍ଥନା କରାଯାଇଥାଏ। କୌଣସି ବିପଦ ଆପଦରେ ଉଦ୍ଧାର ପାଇବା ପାଇଁ ଆମେ ପ୍ରାର୍ଥନା କରୁ। ସେଦିନ ଶ୍ରୀରାମକୃଷ୍ଣ ପ୍ରାର୍ଥନା କରି କହିଥିଲେ ଯେ ମାଆ, ନିଅ ତୁମର ଟଙ୍କା ପଇସା, ମାନ ଯଶ ଇତ୍ୟାଦି ଇତ୍ୟାଦି। ସ୍ୱାମୀ ବିବେକାନନ୍ଦ ମା'ଙ୍କୁ ପ୍ରାର୍ଥନାପୂର୍ବକ



Digitized by PPRACHIN, SOA

ମାଗିଥିଲେ ବିବେକ ବୈରାଗ୍ୟ। ପ୍ରତ୍ୟେକ ଚେତନାର ବିକାଶ ପାଇଁ ପ୍ରାର୍ଥନା ହିଁ ଯଥାର୍ଥ ପ୍ରାର୍ଥନା, ଶ୍ରୀମା କହନ୍ତି- "ଯେତେବେଳେ ପ୍ରାର୍ଥନା କରିବ ସେତେବେଳେ କହିବ- ମୁଁ ଆଜି ପର୍ଯ୍ୟନ୍ତ ଯାହାସବୁ ଜାଣିନାହିଁ, ତାହା ଯେପରି ଜାଣିପାରେ, ଯାହା କରିପାରୁନାହିଁ, ତାହା ଯେପରି କରିପାରେ, ମୁଁ ଯେପରି ଉତ୍ତରୋତ୍ତର ଏହି ଶକ୍ତି ଲାଭ କରିପାରେ।" ପ୍ରାର୍ଥନାରୁ ମିଳେ ଶକ୍ତି, ଶାନ୍ତି, ନିର୍ଭରତା, ନିର୍ଭୟତା। ମନରେ ଧୈର୍ଯ୍ୟ ଆସେ, ଭାଙ୍ଗି ପଡୁଥିବା ମନ ଟାଣ ହୁଏ। ଅନୁଭବ ହୁଏ ଯେ କିଏ ଜଣେ ମୋର ଡାକ ଶୁଣୁଛନ୍ତି, ମତେ ଦମ୍ଭ ଦେଉଛନ୍ତି, ମୋର ଅତି ଆପଣାର କିଏ ଜଣେ ନିଶ୍ଚୟ ଅଛନ୍ତି। ଶ୍ରୀମା କହନ୍ତି ଯେ ପ୍ରତ୍ୟେକ ଆନ୍ତରିକ ପ୍ରାର୍ଥନାର ଉତ୍ତର ନିଶ୍ଚୟ ମିଳେ। ପ୍ରାର୍ଥନାର ଅନ୍ୟନାମ ଭଗବାନଙ୍କ ସହ କଥାବାର୍ତ୍ତା। ପ୍ରାର୍ଥନା ଯାନ୍ତ୍ରିକ ନ ହୋଇ ଆନ୍ତରିକ ହେବା ଦରକାର। ଧ୍ୟାନ କରିନପାରିଲେ ଦୁଃଖ ନକରି ଆମେ ପ୍ରାର୍ଥନା କରିଚାଲିବା, ଅନ୍ତରରୁ ଡାକି ଚାଲିବା, ଛୋଟ ବଡ଼ ସବୁ ସମସ୍ୟା ଭଗବାନଙ୍କୁ ପ୍ରାର୍ଥନା ମାଧ୍ୟମରେ ଜଣାଇବା। କଳ୍ପନା ଶକ୍ତିର ପ୍ରୟୋଗ କରି ମଧ୍ୟ ଭଗବାଙ୍କୁ ଖୋଜାଯାଇପାରେ। କଳ୍ପନାର ପ୍ରଭୂତ ଶକ୍ତି ରହିଛି। ଭଗବାନ ମୋ ପାଖରେ ଅଛନ୍ତି, ମୋ ସହ ଚାଲୁଛନ୍ତି, ମୋ ସହ ବସିଛନ୍ତି ଇତ୍ୟାଦି ଭାବିଲେ ତାହାର ଅନୁଭୂତି କେତେକାଂଶରେ ହେବ। ତାଙ୍କୁ ଦୟାଳୁ ବୋଲି କଳ୍ପନା କଲେ ତଦନୁସାରୀ ଫଳ ଆମକୁ ମିଳିବ। ଆମେ ଯଦି ତାଙ୍କୁ ନିଷ୍ଠୁର ବୋଲି କଳ୍ପନା କରିବା ତେବେ ନିଷ୍ଠୁରତାର ଭାବତରଙ୍ଗ ଦ୍ୱାରା ଆମେ ଆକ୍ରାନ୍ତ ହେବା। ସେ ଗଛ ଭିତରେ ଅଛନ୍ତି ଭାବିଲେ ସେ ଗଛ ଭିତରେ ଥିବାର ଅନୁଭବ ଆମର ହେବ। ପ୍ରହ୍ଲାଦ ସେଦିନ ଭଗବାନ ଅଛନ୍ତି ସ୍ତମ୍ଭ ଭିତରେ ବୋଲି କଳ୍ପନା କରନ୍ତେ, ଭଗବାନ ତହିଁରୁ ଉଦ୍‌ଭୂତ ହେଲେ। କବି କଳାକାରମାନେ ପ୍ରବଳ ଭାବରେ କଳ୍ପନାଶକ୍ତିର ଅଧିକାରୀ। ତେଣୁ କୁହାଯାଇଛି -

'କଳ୍ପନା ନାମ ସେ ଧରନ୍ତି ସୁନ୍ଦରୀ
ବୀଣାପାଣିଙ୍କର ଚିର ସହଚରୀ।'

ମନେପଡ଼େ ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗର ବିଶିଷ୍ଟ କବି ପଦ୍ମ ଚରଣ ପଟ୍ଟନାୟକଙ୍କ କଥା, ଏହି କଳ୍ପନା ପ୍ରସଙ୍ଗରେ। ତାଙ୍କ ଭାଷାରେ, ତାଙ୍କ କଳ୍ପନାରେ ଭଗବାନଙ୍କର ସ୍ଥିତି ଏହିପରି -

"କିଏ ତୁମେ ବନ୍ଧୁ     କେଉଁଠି ରହିଛ
କିଛି ନାହିଁ ମୁହିଁ ଜାଣି
କାନ ପାରି କେବେ     ବସି ଶୁଣି ନାହିଁ
ତବ ବୀଣା ଜିଣା ବାଣୀ



Digitized by PPRACHIN, SOA

କିଏ ତୁମେ ବନ୍ଧୁ କେଉଁଠି ରହିଛ
କେଉଁ କୁଞ୍ଜେ ଅଛ ବଢ଼ି
ରହିଛ କି ତୁମେ ବସନ୍ତ କୁସୁମେ
ଅବା ମଧୁ ମାସ କଢ଼ି
ଫୁଲରେ କେଶର ରୂପେ ଶୋହୁଅଛ
ଅବା କେଶରରେ ମଧୁ
ଯହିଁ ଥାଅ ତହିଁ ଦେଖେ କି ନ ଦେଖେ
ତୁମେ ମୋ ପରାଣ ବନ୍ଧୁ ।।

ଭଗବାନଙ୍କୁ ଖୋଜିବାର ଅନ୍ୟ ଏକ ବାଟ ହେଉଛି ପ୍ରତ୍ୟାଖ୍ୟାନ । ପ୍ରତ୍ୟାଖ୍ୟାନ ଅର୍ଥ ହେଉଛି ଆମ ଭିତରେ ଥିବା ଅମାର୍ଜିତ ଚିନ୍ତା, ଚେତନା, ରୁଚି ଓ ଅଭ୍ୟାସର ପ୍ରତ୍ୟାଖ୍ୟାନ ବା ବର୍ଜନ । ଆମ ଭିତରେ ଓ ବାହାରେ ବହୁ ଅଦିବ୍ୟ ଶକ୍ତି ରହିଛନ୍ତି ଯେଉଁମାନେ କି ଆମକୁ ଭଗବତ୍ ଅନ୍ୱେଷଣ ମାତ୍ରେ ବିରୋଧ କରନ୍ତି । ତେଣୁ କହନ୍ତି- ମନ, ପ୍ରାଣ ଓ ଶରୀର ଭିତରେ ଥିବା ଅପରା ପ୍ରକୃତି ଓ ପ୍ରବୃତ୍ତିର ପ୍ରତ୍ୟାଖ୍ୟାନ ଏକାନ୍ତ ଜରୁରୀ । ଶ୍ରୀଅରବିନ୍ଦଙ୍କ କଥାରେ, "ପ୍ରତ୍ୟାଖ୍ୟାନ କରିବାକୁ ହେବ ପ୍ରାଣ ପ୍ରକୃତିର ବାସନା, ଦାବି, କ୍ଷୁଧା, ଉତ୍ତେଜନା, ଆବେଗ, ସ୍ୱାର୍ଥପରତା, ଅହଂକାର, ଗର୍ବ, କାମ, ଲୋଭ, ଈର୍ଷା, ଅସୂୟା, ସତ୍ୟ ପ୍ରତି ବିରୁଦ୍ଧାଚାର ଇତ୍ୟାଦି ।" ଭଗବାନଙ୍କ ପ୍ରତି ବିଶ୍ୱାସ ଆସିଲା ମାତ୍ରକେ ଅବିଶ୍ୱାସ ଆସିଯାଏ । ସେତେବେଳେ ଦୃଢ଼ ଚିତ୍ତରେ ଅବିଶ୍ୱାସକୁ ଦୂରେଇ ଦେବା ଆବଶ୍ୟକ ହୁଏ । ଭଗବାନଙ୍କ ଆଡ଼କୁ ଟିକିଏ ଆଗ୍ରହ ପ୍ରକଟ କଲେ ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନ ଏବଂ ପ୍ରତିବେଶୀମାନଙ୍କ ଆଡୁ ବହୁ ଅନ୍ତରାୟ ଆସିଥାଏ । କିଏ ଆମ ଆଚରଣର ନିନ୍ଦା କରନ୍ତି ତ କିଏ ବ୍ୟଙ୍ଗ ବିଦ୍ରୂପ ତଥା ଉପହାସ କରିଥାନ୍ତି । ଆମକୁ ଏଥିରେ ବିଚଳିତ ନ ହୋଇ ଏସବୁକୁ ପ୍ରତ୍ୟାଖ୍ୟାନ କରିବାକୁ ପଡ଼ିବ ।

ଭଗବତ୍ ଅନ୍ୱେଷଣର ଅନ୍ୟ ଏକ ବାଟ ହେଉଛି ସମର୍ପଣ । ସମର୍ପଣର ଅର୍ଥ ହେଉଛି ନିବେଦନ । ଶ୍ରୀରାମକୃଷ୍ଣ କହୁଥିଲେ 'ବକଲମା' ଲେଖିଦିଅ ଅର୍ଥାତ୍ ଭଗବାନଙ୍କୁ ସମ୍ପୂର୍ଣ୍ଣ ଭାର ସମର୍ପଣ କରିଦିଅ । ଆମ ସତ୍ତାର ଗୋଟିଏ ଅଂଶ ଭଗବାନଙ୍କୁ ନିଜକୁ ସମର୍ପଣ କଲେ ମଧ୍ୟ ଅନ୍ୟ ଅଂଶଟି ନିଜକୁ ସମର୍ପଣ କରେ ନାହିଁ । ଶ୍ରୀଅରବିନ୍ଦ କହନ୍ତି ଯେ ଏପରି କଲେ ଚଳିବ ନାହିଁ । ସମସ୍ତ ସତ୍ତାର ସାମଗ୍ରିକ ଅଂଶର ପ୍ରୟୋଜନ ଆବଶ୍ୟକ । ସମର୍ପଣ ଯେତେ ଅଧିକ ହେବ ଭଗବାନଙ୍କ କୃପା ସେତେ ଅଧିକ କ୍ରିୟାଶୀଳ ହେବ । ଅତଏବ ସମର୍ପଣ ହେବ ସର୍ବାଙ୍ଗୀନ ଓ ପରିପୂର୍ଣ୍ଣ, ନିଜର ଯାହାକିଛି ଅଛି ତାହା ସହିତ ନିଜକୁ ପୂର୍ଣ୍ଣ ରୂପେ ଦେଇ ଦେବାକୁ ହେବ । ଶରୀର ଦେବ ତା'ର କର୍ମ, ପ୍ରାଣ ଦେବ ତା'ର



Digitized by PPRACHIN, SOA

କାମନାବାସନା ଓ ମନ ଦେବ ତା'ର ସମସ୍ତ ଚିନ୍ତା । ଏପରି ସ୍ତର ପର୍ଯ୍ୟନ୍ତ ସମର୍ପଣ ଉତ୍‌ଥିତ ହେବ ଯେତେବେଳେ ଶରୀରର ପ୍ରତି ରକ୍ତ ବିନ୍ଦୁ ମଧ୍ୟ ନମ୍ରନତ ହୋଇ ନିଜକୁ ସମର୍ପଣ କରିବେ । ମା'ଙ୍କ କଥାରେ 'I am absolutely and altogether. Thine, Thine without reserve' ଅବଶ୍ୟ ସମର୍ପଣ ପ୍ରଥମେ ଆଂଶିକ ଭାବରେ ହୁଏ, ପରେ ଏହାର ମାତ୍ରା ବଢ଼ି ବଢ଼ି ପୂର୍ଣ୍ଣତା ପ୍ରାପ୍ତ ହୁଏ । ଏପରି ହୁଏଯେ ମନ ଆଗ ସମର୍ପଣ କରେ ତାପରେ ପ୍ରାଣ ନିଜକୁ ସମର୍ପଣ କରେ ଏବଂ ଶେଷରେ ଶରୀର ନିଜକୁ ସମର୍ପଣ କରେ ।

ଭଗବତ ଅନ୍ୱେଷଣ ପାଇଁ ଅନ୍ୟ ଏକ ମାଧ୍ୟମ ହେଉଛି କୃତଜ୍ଞତା । କୃତଜ୍ଞତା ଏକଦେବ ସୁଲଭ ଗୁଣ । ସମସ୍ତେ ଏହାର ଅଧିକାରୀ ନୁହନ୍ତି । ସଂସାରରେ ଅକୃତଜ୍ଞଙ୍କ ମାନଙ୍କ ସଂଖ୍ୟା ଅଧିକ । ଯେଉଁମାନେ ଅକୃତଜ୍ଞ ସେମାନେ କେବେ ବି ସୁଖୀ ହୋଇ ପାରନ୍ତି ନାହିଁ । ସେମାନଙ୍କ ଅନ୍ତର ସର୍ବଦା ଅଶାନ୍ତ ଓ ଅତୃପ୍ତ ରହିଥାଏ । ଶ୍ରୀମା କହନ୍ତି ଯେ ଜୀବନରେ ଯଦି ଜଣେ ସୁଖ ପାଇବାକୁ ଚାହେଁ, ତେବେ ସେ କୃତଜ୍ଞ ହୋଇ ରହିବ, ବିଶେଷତଃ ଭଗବାନଙ୍କ ପାଖରେ କୃତଜ୍ଞ ହୋଇ ରହିବ । ଶ୍ରୀମାଙ୍କ କଥାରେ 'For your heart to remain happay, keep it always filled with gratefulness. Gratefulness is the surest way to the Divine.' ଯେ ସୁଖୀ ହେବାକୁ ଚାହେଁ ସେ ତା' ଜୀବନରେ କିଛି ଭଲ କଥା ଘଟିଲେ ତାହା Bychance ଘଟିଲା ବୋଲି ନ କହି By grace ଘଟିଲା ବୋଲି କହିବ । କୃତଜ୍ଞତା ଏକ ବିଶିଷ୍ଟ ସମ୍ପଦ ଯାହାଦ୍ୱାରା ମନରେ ଆସେ ଶାନ୍ତି, ଶକ୍ତି, ଆଲୋକ ଓ ସନ୍ତୋଷ, ଆସେ ଖୁସି ଭାବ, ବିନୟ ଭାବ ଓ ଶାନ୍ତସ୍ୱଭାବ । ମା' କହନ୍ତି ଯେ ଭଗବାନ ଆମକୁ ଯାହା ଦେଇଛନ୍ତି ତାହାର ସହାସ୍ୟ ସ୍ୱୀକୃତିର ଅନ୍ୟ ନାମ କୃତଜ୍ଞତା । ଅନ୍ତରରୁ ସ୍ୱତଃସ୍ଫୁର୍ତ୍ତ ଭାବରେ ଝରି ଆସିବ -

'ତୁମେ ମତେ କେତେ ଦେଇଛ ହେ ପ୍ରଭୁ
ମୁଁ କିଛି ପାରିନି ଦେଇ
କିଛି ଦେବି ବୋଲି ଭାବିଲା ବେଳକୁ
ମନ କରେ 'ନାହିଁ' 'ନାହିଁ' ।

ସବୁ ବେଳେ ଖୁସି ରହିବା ହିଁ କୃତଜ୍ଞତାର ଚିହ୍ନ । କୃତଜ୍ଞତା ହିଁ ମହାନତାର ସୁବର୍ଣ୍ଣ ସ୍ମାରକୀ । ଜଣେ କେତେ ମହାନ୍, ତାହା ଜଣାପଡ଼େ ତାଙ୍କ କୃତଜ୍ଞ ସ୍ୱଭାବରୁ ।

ଏସବୁ କଥା ସହିତ ଭଗବାନଙ୍କୁ ଆମ ଘରର ମାଲିକ ବୋଲି ମନେ କରିବା ଉଚିତ । ତାଙ୍କୁ ଘରର ମୁରବି ବୋଲି ଭାବି ଦୁଃଖସୁଖ ସବୁ କିଛି ତାଙ୍କ ଆଗରେ ସରଳ



Digitized by PPRACHIN, SOA

ଚିତ୍ତରେ କହିଦେବା ଆବଶ୍ୟକ। ଭଗବାନଙ୍କ ପାଖରେ ସରଳତା ସର୍ବାଦୌ ଆବଶ୍ୟକ। ମନର ସ୍ୱଚ୍ଛତା ଓ ଅନ୍ତରର ନିର୍ମଳତା ଭଗବତ ପ୍ରାପ୍ତି ପାଇଁ ଏକାନ୍ତ ଅପରିହାର୍ଯ୍ୟ ଉପାଦାନ। ଅନ୍ୟମାନଙ୍କ ପ୍ରତି ଶ୍ରଦ୍ଧା ଏକ ବିଶିଷ୍ଟ ସମ୍ପଦ ଯାହାର ଅଧିକାରୀ ହେଲେ ଆମକୁ ଶାନ୍ତି ମିଳିବ। ସମଗ୍ର ଜଗତ ପ୍ରତି ଶୁଭେଚ୍ଛା ଓ ସଦିଚ୍ଛା ଦ୍ୱାରା ଆମ ସତ୍ତାର ଉତ୍ତରଣ ଘଟିବ ଓ ଆମେ ଭଗବତ ପ୍ରାପ୍ତି ପାଇଁ ଯୋଗ୍ୟତା ଅର୍ଜନ କରିପାରିବା। ଏଇସବୁ କଥା ଆମେ ଜାଣିବା ଯେତିକି ଦରକାର, ଅଭ୍ୟାସ କରିବା ସେତିକି ଦରକାର, ଏଥିରେ ସନ୍ଦେହ ନାହିଁ।





Digitized by PPRACHIN, SOA

# ଚିନ୍ତା, ଚେତନା ଓ ଆଚରଣ

ସେ ଅବତାର ହୁଅନ୍ତୁ, ମହାତ୍ମା ଅବା ମହାପୁରୁଷ ହୁଅନ୍ତୁ, ପ୍ରତ୍ୟେକ ନିଜ ପାଇଁ ନୁହେଁ ଅନ୍ୟମାନଙ୍କ ପାଇଁ ଅର୍ଥାତ୍ ସାରା ପୃଥିବୀ ପାଇଁ ନିଜର ଶକ୍ତି ଓ ସମୟ ଦେଇଥାଆନ୍ତି । ଶକ୍ତି ଓ ସମୟ ଦାନର ଅନ୍ୟନାମ ସେମାନଙ୍କ କ୍ଷେତ୍ରରେ ସାଧନା । ସେହି ସାଧନାର ଫଳ ସମସ୍ତଙ୍କ ପାଇଁ ଅଭିପ୍ରେତ । ନିଜର ମାଂସ ଓ ହାଡ଼ ପର୍ଯ୍ୟନ୍ତ ଆବଶ୍ୟକ ପଡ଼ିଲେ ସେମାନେ ଦେଇପାରନ୍ତି, ଦିଅନ୍ତି ମଧ୍ୟ । ସାରା ପୃଥିବୀ ପାଇଁ କରୁଣା ଓ କଲ୍ୟାଣ ସେମାନଙ୍କର ଅପରିସୀମ । ଅଧର୍ମର ବିନାଶ ଓ ଧର୍ମର ପ୍ରତିଷ୍ଠା ପାଇଁ ତଥା ମାନବିକ ମୂଲ୍ୟବୋଧର ସୁରକ୍ଷା ପାଇଁ ବହୁକଷ୍ଟ ସେମାନେ ପାଇଥାଆନ୍ତି । କେତେବେଳେ ବିଷପାନ କରନ୍ତି ତ ଆଉ କେତେବେଳେ, ନିଜର ବଂଶ ନାଶ ପାଇଁ ଅଭିଶାପକୁ ଅକାତରେ ଗ୍ରହଣ କରନ୍ତି, କେତେ ନିର୍ଯାତନା ଓ ଲାଞ୍ଛନା ସାଧାରଣ ଜନତା ଠାରୁ ସେମାନେ ପାଇଥାଆନ୍ତି ମାତ୍ର ବିନିମୟରେ ଦିଅନ୍ତି କରୁଣାର ଶୀତଳ ଚନ୍ଦନ ଧାରା ।

ଶରୀରରେ କାଳ କାଳ କେହି ରହିପାରନ୍ତି ନାହିଁ । ସେମାନେ ମଧ୍ୟ ରହିପାରନ୍ତି ନାହିଁ । ସେମାନଙ୍କର ପାଦ ସିନା ଚାଲିଯାଏ, ରହିଯାଏ ସମୟର ବେଳାଭୂମିରେ ପାଦଚିହ୍ନ, ଦାଉ ଦାଉ ହୋଇ ଜଳୁଥାଏ, ସେ ପାଦ ଚିହ୍ନ ଲିଭେ ନାହିଁ । କେତେ ଉତ୍ତର ଦାୟାଦ ଆସି ସେଇ ପାଦ ଚିହ୍ନକୁ ଦେଖି ନିଜକୁ ଧନ୍ୟ ମନେ କରନ୍ତି । ଖରା, ବର୍ଷା, ଶୀତ, କାକର ସେହି ଚହ୍ନକୁ ଲିଭାଇ ପାରେ ନାହିଁ ।

ଆମେ ସେମାନଙ୍କୁ ପୂଜା ଆରାଧନା କରୁ, ଅର୍ଚ୍ଚନା କରୁ, ସେମାନଙ୍କ ମହିମା ଗାନ କରୁ ମାତ୍ର ତାଙ୍କ ଦାନରେ ନିଜକୁ ସମୃଦ୍ଧ କରୁନାହିଁ । ତାଙ୍କ ନିକଟରେ ଋଣ ସ୍ୱୀକାର କରୁନାହିଁ, ଫଳତଃ ମନରେ କୃତଜ୍ଞତାର ଭାବ ପ୍ରକଟ ହୁଏ ନାହିଁ । ପୂଜାପାଠ, ଧ୍ୟାନ ଧାରଣା ଆମେ ଯାହାକିଛି କରୁ ତାହା ନିଜ ପାଇଁ । ନିଜ କଷ୍ଟକୁ ଲଘୁ କରିବାପାଇଁ ଧୂପଦୀପ ଚନ୍ଦନ ନୈବେଦ୍ୟ ଦେଉ । ତାହା ଫଳରେ ବ୍ୟକ୍ତିଗତ କଲ୍ୟାଣ ଆମର ହୁଏ । ଏହା ଦୋଷାବହ ନୁହେଁ, ମାତ୍ର ଏହାଦ୍ୱାରା ତାଙ୍କ ଭାବରେ ଭାବିତ ହବାର ବାଟ ଫିଟେ ନାହିଁ । କୃତଜ୍ଞତା ବିନା ସେମାନଙ୍କ ଭାବରେ ଭାବିତ ହେବାର ଅନ୍ୟବାଟ ନାହିଁ ।

କିଏ ଭକ୍ତି, କିଏ ଜ୍ଞାନ, କିଏ କର୍ମ, କିଏ ପ୍ରେମ, କିଏ କରୁଣା, କିଏ ଆନନ୍ଦ, କିଏ କ୍ଷମା, କିଏ ମର୍ଯ୍ୟାଦା, କିଏ ସତ୍ୟ ସନ୍ଧାନର ମାର୍ଗକୁ ପ୍ରଶସ୍ତ କରିବା ପାଇଁ ଉପଦେଶ



Digitized by PPRACHIN, SOA

ନୁହେଁ, ଉଦାହରଣ ହେଲେ। ଲକ୍ଷ୍ୟ ତାଙ୍କର ଉତ୍ତର ଦାୟାଦ ସେଇ ମାର୍ଗରେ ଚାଲିବେ ବୋଲି। ଆମ ତାଙ୍କ ଉତ୍ତର ଦାୟାଦ। ଆମେ କେତେ ଚାଲିଲେ ତାହା ଆଲୋଚନା ସାପେକ୍ଷ।

ଫଟୋ, ମୂର୍ତ୍ତି ବା ସଙ୍କେତକୁ ନମସ୍କାର ବା ପ୍ରଣାମ ଜଣାଇଲେ ଭକ୍ତି ବଢ଼େ, ସମ୍ମାନବୋଧ ତାଙ୍କ ପ୍ରତି ବଢ଼େ ମାତ୍ର କୃତଜ୍ଞତା ପୂର୍ଣ୍ଣତଃ ଆସେ ନାହିଁ। କୃତଜ୍ଞତା ଆସିଲେ ଅନ୍ତର ବିଗଳିତ ହୁଏ, ଗଭୀରତମ ଗଭୀରତାରେ ଅନ୍ତରରେ ସ୍ପନ୍ଦନ ଓ ଶିହରଣ ସୃଷ୍ଟି ହୁଏ; ପ୍ରାଣରେ ପୁଲକ ଓ ଦେହରେ ରୋମାଞ୍ଚ ସୃଷ୍ଟି ହୁଏ।

ଭାରତବର୍ଷ ଦେବଦେବୀଙ୍କର ଦେଶ, ଦିବ୍ୟଚେତନାର ନିର୍ବାଚିତ ଦେଶ। ଭଗବାନ ବହୁଥର ଏଠାରେ ଅବତାର ଗ୍ରହଣ କରନ୍ତି। ମାନବ ଜାତିକୁ ନୂତନ ଦିଗ୍‌ଦର୍ଶନ ଦେବା ପାଇଁ ସେମାନଙ୍କର ଅବତରଣ ଘଟେ। ଅବତାର, ମହାପୁରୁଷ, ବିଭୂତି ସମସ୍ତେ ମଣିଷ ଜାତିକୁ ଭଲପାଆନ୍ତି, ତାଙ୍କ ପାଖରେ ଧର୍ମଗତ ବିଭେଦ, ଚଳଣିଗତ ବିଭେଦ ନଥାଏ। ସମସ୍ତେ ତାଙ୍କ ନିକଟରେ ସମାନ, ସାନବଡ଼ ସାମାନ୍ୟ ଅସାମାନ୍ୟ ବୋଲି ତାଙ୍କ ନିକଟରେ କିଛି ନଥାଏ। ସମଗ୍ର ମାନବ ଜାତିକୁ ନିଜର ଆତ୍ମୀୟତାରେ ସେମାନେ ବାନ୍ଧି ଦିଅନ୍ତି। ସମସ୍ତେ ତାଙ୍କର, ସେ ସମସ୍ତଙ୍କର - ଏହି ଐଶୀ ଚେତନା ହିଁ ସେମାନଙ୍କର ମହତ୍ତ୍ୱ। ସେମାନେ ନୂଆ ବାଟ ଫିଟାନ୍ତି ଚଳଣି କ୍ଷେତ୍ରରେ ତଥା ସାଧନା କ୍ଷେତ୍ରରେ। ଅନ୍ୟମାନେ ସେଇ ବାଟରେ ଚାଲନ୍ତୁ ବୋଲି ସେମାନେ ଚାହାନ୍ତି। ପୃଥିବୀକୁ ନୂଆ ଚେତନା ତଥା ସମୃଦ୍ଧ ଚେତନାର ମଣିଷ ଆସନ୍ତୁ, ଏହା ତାଙ୍କର ଇଚ୍ଛା। ଆମେ ସେଇ ବାଟ ଚାଲିବା କଥା ପ୍ରାୟତଃ ଭୁଲିଯାଇ ଧୂପଦୀପଦେଇ ପୂଜା କରିବାରେ ସନ୍ତୁଷ୍ଟ ରହୁ। ସମଗ୍ର ମାନବ ଜାତିର ଚେତନାର ବିକାଶ ପାଇଁ ବ୍ୟକ୍ତି ଚେତନାର ବିକାଶ ମାଧ୍ୟମ ହେଉ ବୋଲି ସେମାନେ ଚାହାନ୍ତି। ଆମେ ବାହ୍ୟ ଉପଚାର ଦ୍ୱାରା ସଫଳ ମାଧ୍ୟମ ହୋଇପାରିବା ନାହିଁ। ଅନ୍ତଃ ଚେତନାର ବିକାଶ ପାଇଁ ପ୍ରୟାସ ଓ ପ୍ରଯତ୍ନ ଆମର କାମ୍ୟ।

ଉଦାହରଣ ସ୍ୱରୂପ ଶ୍ରୀରାମ ଚନ୍ଦ୍ରଙ୍କର ଜନ୍ମଦିବସକୁ ଉପବାସ ରହି କିଛି ସମୟ ଭଜନ କୀର୍ତ୍ତନ କରି କଟାଇ ଦେଲେ ଯେତିକି ଉପକାର ମିଳେ, ତାଠାରୁ ଅଧିକ ଉପକାର ମିଳେ ଅନ୍ତର ଭିତରେ ଶ୍ରୀରାମଚନ୍ଦ୍ରଙ୍କୁ ସୂକ୍ଷ୍ମ ଭାବରେ ଅନୁଭବ କରିବା ଦ୍ୱାରା, ଶ୍ରୀରାମଙ୍କ ପାଦକୁ କଳ୍ପନା ନେତ୍ରରେ ଦେଖିବା ଦ୍ୱାରା। ଶ୍ରୀରାମଙ୍କ ଉପସ୍ଥିତିକୁ ଭିତରେ ବାହାରେ ଅନୁଭବ କରିବା ଦ୍ୱାରା ପ୍ରକୃତରେ ତାଙ୍କ ପ୍ରତି ଉନ୍ମୁକ୍ତ ରହିବା ସହଜ ହୁଏ। ସେହିପରି ଜନ୍ମାଷ୍ଟମୀ ତିଥିରେ ଉପବାସ ରହି ଭାଗବତ ପଢ଼ି ଦେବା ଯଥେଷ୍ଟ ନୁହେଁ, ବରଂ ଶ୍ରୀକୃଷ୍ଣଙ୍କ ଭାବରେ ଆନନ୍ଦ ମଗ୍ନ ହେବା ଏବଂ ସମଗ୍ର ବିଶ୍ୱକୁ ମଧୁମୟ ତଥା ଆନନ୍ଦମୟ ବୋଲି କଳ୍ପନା କରିବା ହେଉଛି ପ୍ରକୃତ ଆରାଧନା।



Digitized by PPRACHIN, SOA

ଅବତାର, ମହାତ୍ମା, ମହାପୁରୁଷ, ଅବତାର ବା ବିଭୂତି ମାନେ ଆସନ୍ତି ଦିବ୍ୟ ଲୋକରୁ ନର ଲୋକକୁ। ନରଲୋକରେ ଶିଡ଼ିଟିଏ ପ୍ରସ୍ତୁତ କରନ୍ତି ଆଉ ଆଶା କରନ୍ତି ଯେ ସେଇ ଶିଡ଼ି ବାଟ ଦେଇ ଲୋକମାନେ ଦିବ୍ୟଲୋକକୁ ଯାଆନ୍ତୁ। ସ୍ଥୁଳତାକୁ ଅତିକ୍ରମ କରି ସୂକ୍ଷ୍ମତାକୁ ଆମେ ଯାଉ, ଏହା ତାଙ୍କର ଇଚ୍ଛା। ସେମାନେ ଆଶା କରନ୍ତି ପୁଣି ଧୈର୍ଯ୍ୟ ସହ ଆମର ସମ୍ମତିକୁ ଅପେକ୍ଷା କରନ୍ତି। ଆମର ସହଯୋଗ ଲୋଡ଼ନ୍ତି ଭୂମିକୁ ଭୂମାଙ୍କ ସହ ଯୋଡ଼ି ଦେବାପାଇଁ, ବସ୍ତୁବାଦ ଓ ଭାବବାଦର ସମନ୍ୱୟ ପାଇଁ। ଆମ ଉପରେ ସେମାନଙ୍କର ଅନେକ ଭରସା। ଆମ ଉପରେ ବର୍ତ୍ତମାନ ନିର୍ଭର କରେ ଆମେ ସେହି ଭରସାର ଯଥାର୍ଥ ପାତ୍ର ହେବା କି ନାହିଁ ?





Digitized by PPRACHIN, SOA

# ଅଭାବ-କାଲି ଓ ଆଜିର

ସ୍ୱାଧୀନତା ପୂର୍ବ ଠାରୁ ସ୍ୱାଧୀନତାର ଅବ୍ୟବହିତ ପର ପର୍ଯ୍ୟନ୍ତ ଆମ ଦେଶରେ ବସ୍ତୁର ଅଭାବ ଥିଲା। ସ୍ୱଚ୍ଛନ୍ଦରେ ଚଳିବା ପାଇଁ ବହୁତ ସୁବିଧା ନ ଥିଲା। ବହୁ ପ୍ରକାରର ଖାଦ୍ୟ, ବସ୍ତ୍ର ଓ ସାଜ ସରଞ୍ଜାମ ନ ଥିଲା। ଗମନାଗମନର ବିଶେଷ ସୁବିଧା ନ ଥିଲା। ହାତ ପାଆନ୍ତାରେ ଏତେ ଦ୍ରବ୍ୟ, ଏତେ ଔଷଧ ପତ୍ର, ଏତେ ଚିକିତ୍ସା ସୁବିଧା, ଏତେ ଯାନବାହନ ନ ଥିଲା। ଏପରିକି ସେତେବେଳେ ସାଧାରଣ ଲୋକଙ୍କ ପାଇଁ ସୁଜି, ଚିନି, ଅଟା, ଚା' ପ୍ରଭୃତି ଜିନିଷ ଏତେ ସୁଲଭ ନଥିଲା।

ଆଜି ସମୟ ବଦଳି ଯାଇଛି। ଖାଦ୍ୟ, ବସ୍ତ୍ର, ବାସଗୃହ, ଶିକ୍ଷା, ସ୍ୱାସ୍ଥ୍ୟ ଓ ମନୋରଞ୍ଜନ ପାଇଁ ବହୁ ସାମଗ୍ରୀ ଓ ଉପାଦାନ ବଢ଼ିଛି। ଗମନାଗମନର ସୁବିଧା ପାଇଁ ରାସ୍ତାଘାଟ ବଢ଼ିଛି, ପୁଣି ବଢ଼ିଛି ଯାନବାହନର ସଂଖ୍ୟା। ଚିକିତ୍ସାଳୟର ସଂଖ୍ୟା ବଢ଼ିଛି ପୁଣି ଔଷଧ ପତ୍ରର ନାମ ତାଲିକା। ଯୋଗାଯୋଗର ସୁବିଧା ବଢ଼ିଛି। ସାରା ପୃଥିବୀ ବିଜ୍ଞାନ ବଳରେ ମଣିଷର ହାତମୁଠାକୁ ଗୋଟାଇ ହୋଇ ଆସିଲାଣି କହିଲେ ଭୁଲ ହେବ ନାହିଁ। ପ୍ରାଚ୍ୟ ଓ ପାଶ୍ଚାତ୍ୟ ଆଜି ଘରର ଏ କକ୍ଷକୁ ଆର କକ୍ଷ ପରି ହୋଇଛି। ଏ କଣର ଖବର ସେ କଣକୁ ବିଜୁଳି ବେଗରେ ପ୍ରସାରିତ ହୋଇଯାଉଛି। ଏପରି ହେଉଛି ପ୍ରାଚ୍ୟର କଣରେ ବସି ପାଶ୍ଚାତ୍ୟର କଣରେ ଥିବା ମଣିଷ ସହ କଥାବାର୍ତ୍ତା ସହ ଦେଖା ମଧ୍ୟ ହୋଇପାରୁଛି। ଏତେ ଦୂରରେ ଥିବା ମଣିଷଟିକୁ ତା' ଘରକୁ ଯାଇ ଦେଖା କରିବାକୁ ଆଉ ପଡୁନାହିଁ, ନିଜ ଘରେ ବସି ତାକୁ ଦେଖି ହେଉଛି। ଆଖି ପୂରିଯାଉଛି ତାକୁ ଦେଖି ଓ କାନ ଭରିଯାଉଛି ତା'ର କଥା ଶୁଣି। ଇଚ୍ଛା କଲାମାତ୍ରେ ଦେଖି ହେଉଛି, ଯାହାକୁ ଆମେ ଇଚ୍ଛା ଦର୍ଶନ ବୋଲି କହିପାରିବା। କୋଇଲି ଲୋ କେଶବ ଯେ... ଗୀତଟି କାନ ପାଖରେ ଆଉ ଶୁଭୁନାହିଁ।

ଖାଦ୍ୟ କଥା ନ କହିଲେ ଭଲ। ସେଦିନର ଅଦିନ ପରିବା ଆଜି ସବୁଦିନ ମିଳୁଛି। ରାତି ପାହିଲେ ଖାଦ୍ୟ ଚିନ୍ତା ଆଉ ପ୍ରାୟ ନାହିଁ। ଉତ୍ପାଦନର କଳା କୌଶଳ ବଢ଼ିଛି ଏବଂ ଉତ୍ପାଦନର ପରିମାଣ ମଧ୍ୟ ବଢ଼ିଛି, ଯଥେଷ୍ଟ ବଢ଼ିଛି। ପରିମାଣ ନ ବଢ଼ିଥିଲେ ଏତେ ଖାଦ୍ୟ ଏତେ ଲୋକଙ୍କୁ ଯୋଗାଇ ହୁଅନ୍ତା ନାହିଁ। ଗୋଟିଏ ବାକ୍ୟରେ ଆମେ କହିପାରିବା ଯେ ସାଧାରଣ ଜନ ଜୀବନ ଚଳିବା ଦିଗରେ ସହଜ ହୋଇଛି। ବାହାରର ଜୀବନ ଯେତେ ସହଜ ହୋଇଛି ଭିତରର ଜୀବନ ସେତେ ସହଜ ହୋଇ ନାହିଁ। ଜୀବନରେ



Digitized by PPRACHIN, SOA

ଯେତେ ଶାନ୍ତି, ସନ୍ତୋଷ, ଆନନ୍ଦ ମିଳିବା କଥା ମିଳୁନାହିଁ। ବରଂ ଭିତରେ ବଢ଼ିଛି ଅଶାନ୍ତି, ଅସନ୍ତୋଷ, କ୍ରୋଧ, ଈର୍ଷା, ହିଂସା, ସ୍ୱାର୍ଥପରତା, ପ୍ରତିଶୋଧ ପରାୟଣତା, ଇତ୍ୟାଦି ଅନେକ ଆସୁରିକ ଗୁଣ। ଏସବୁର ମୂଳ ଉତ୍ସ ହେଉଛି ପ୍ରବଳ ଅହଂକାର। ସ୍ଥାନ କାଳପାତ୍ର ବିଚାର ଦୁର୍ବଳତାର ଚିହ୍ନ ହୋଇଗଲାଣି। କଥା ପଦେ ସହିବା ତ ଦୂରର କଥା, ଶୁଣିବାକୁ କାହାର ଧୈର୍ଯ୍ୟ ନାହିଁ। କଥା କଥାରେ ତୁଣ୍ଡରେ ଶୋଭା ପାଉଛି 'ମାରିଦେବି, ହାଣିଦେବି' ଇତ୍ୟାଦି ଇତ୍ୟାଦି ଶବ୍ଦମାନ। ଅନ୍ୟକୁ ଡରେଇ ଦବାର ମାନସିକତା ବଢ଼ିଛି।

ଏସବୁ ଘଟୁଛି କାରଣ ଭିତର ଜୀବନଟି ବାହାର ଜୀବନ ପରି ସମୃଦ୍ଧ ହୋଇନାହିଁ। ଉଭୟ ଜୀବନ ଭିତରେ ଭାରସାମ୍ୟ ରହୁନାହିଁ। ଏକଥା କହି ବାହାର ଜୀବନର ବିକାଶକୁ ମୁଁ ଅବମାନନା କରୁନାହିଁ, ମାତ୍ର ସମାନ ଭାବରେ ଭିତର ଜୀବନର ବିକାଶ ଆବଶ୍ୟକ ବୋଲି କହୁଛି। ଏଥିପାଇଁ ପ୍ରୟାସ ସର୍ବାଦୌ ଆବଶ୍ୟକ ଏବଂ ପ୍ରଯତ୍ନ ଏକାନ୍ତ କାମ୍ୟ। ଏଥି ନିମନ୍ତେ ପିତାମାତାଙ୍କର ବିଶେଷତଃ ଭୂମିକା ସର୍ବାଧିକ। ପିଲାଟିକୁ ଘରେ ଯଥାଯଥ ଚାଲିଚଳଣ, ଜୀବନର ମହତ୍ତ୍ୱ ଓ ମୂଲ୍ୟବୋଧ, ଆମ ଦେଶର ଐତିହ୍ୟ ଓ ଗୌରବ, ବସ୍ତୁର ଯଥାର୍ଥ ବ୍ୟବହାର ଓ ସୁରକ୍ଷା ବିଷୟରେ ଜଣାଇବା ଏକାନ୍ତ ଜରୁରୀ। ତା' ଭିତରେ ସାନମାନଙ୍କ ପ୍ରତି ଶ୍ରଦ୍ଧା ଓ ବଡ଼ମାନଙ୍କ ପ୍ରତି ସମ୍ମାନ ବୋଧ ବଢ଼ାଇବା ପାଇଁ ପ୍ରଚେଷ୍ଟା ଦରକାର। ପିଲାଟି କିପରି ବିପଦରେ ଭାଙ୍ଗିନପଡ଼ି ବିପଦକୁ ଭାଙ୍ଗିବ - ସେ ତାଲିମ ତାକୁ ଦେବାକୁ ହେବ। ପିଲାଟି କିପରି ଜୀବନରେ ବାସ୍ତବତାର ସାମ୍ନା କରିବ, ତାକୁ ତାହା ଶିଖାଇବାକୁ ହେବ। ସର୍ବୋପରି ବଞ୍ଚିବାର କଳାଟିକ ତାକୁ ଶିଖାଇବାକୁ ହେବ। ସେଥିପାଇଁ ଆବଶ୍ୟକୀୟ ସମୟ, ଆଗ୍ରହ ଓ ଆନ୍ତରିକତା ଦେବାକୁ ହେବ। ଶିଶୁ ଓ କିଶୋରମାନଙ୍କର ବହୁ ପ୍ରଶ୍ନର ଯଥାର୍ଥ ଉତ୍ତର ଧୈର୍ଯ୍ୟର ସହ ଦେବାକୁ ହେବ, ଚିଡ଼ିଚିଡ଼ି ହେଲେ ଚଳିବ ନାହିଁ। ଏସବୁ ସତ୍ତ୍ୱେ ମୋନେ ଭୁଲ କରିଦେଲେ ସେମାନଙ୍କୁ ବୁଝାଇବାକୁ ହେବ, ଗାଳିମାଡ଼ ନ ଦେଇ ବାରମ୍ବାର ବୁଝାଇବାକୁ ହେବ। ଆମେ ସେମାନଙ୍କୁ ଯେତେ ଅବୁଝା ବୋଲି ଭାବୁଛୁ, ସତରେ ସେମାନେ ସେତେ ଅବୁଝା ନୁହନ୍ତି। କେବଳ ବୁଝାଇ ଜାଣିବା ଦରକାର। ବାସ୍ତବରେ ଆମେ ସେମାନଙ୍କଠାରୁ ବେଶୀ ଅବୁଝା।

ସେଇ ଶିଶୁ ଓ କିଶୋରମାନେ ଅତୀତର ସ୍ମୃତିରେଖା, ବର୍ତ୍ତମାନର ପ୍ରୟୋଗଶାଳା ଓ ଭବିଷ୍ୟତର କର୍ଣ୍ଣଧାର। ଗୋଟିଏ ପିଲା ଠିକ୍ ଭାବରେ ଗଢ଼ି ହୋଇଗଲେ ସୁନାର ସେତୁବନ୍ଧ ନିର୍ମାଣ ଆରମ୍ଭ ହୋଇଯିବ। ଗୋଟିଏ ପିଢ଼ି ଗଢ଼ି ହୋଇଗଲେ ସକାଳର ସୂର୍ଯ୍ୟୋଦୟ ପାଖେଇ ଆସିବ। ଗୋଟିଏ ବୋଲି ତାହା ଅପାଂକ୍ତେୟ ନୁହେଁ, ବରଂ କୋଟିଏର ଶୁଭଙ୍କର ସ୍ୱାଗତ ତୋରଣ। ଗୋଟିଏ ଦୀପ ଜଳିଲେ ସେହି ଦୀପ ଶିଖାରୁ ଲକ୍ଷ ଲକ୍ଷ ଦୀପ ଜଳିପାରିବ। ଅତଏବ ଗୋଟିଏ ପିଲାକୁ ସଜାଡ଼ିବା ଅର୍ଥ କୋଟିଏ ପିଲାଙ୍କୁ



Digitized by PPRACHIN, SOA

ସଜାଡ଼ିବାର କ୍ଷେତ୍ର ପ୍ରସ୍ତୁତ କରିବା। ଏକଥା କହିବା ଦ୍ୱାରା ପିଲାକୁ ପୁରୁଣାକାଳିଆ ମାନସିକତାରେ ଗଢ଼ିବା କଥା କୁହାଯାଉନାହିଁ, ବରଂ ଆହୁରି ପ୍ରଗତିଶୀଳ ମାନଦଣ୍ଡରେ ଗଢ଼ିବା କଥା କୁହାଯାଉଛି। ପିଲାଟି ଆଧୁନିକ କେବଳ ନୁହେଁ ଅତ୍ୟାଧୁନିକ ହେବାକଥା କୁହାଯାଉଛି ଯାହାର ଗୋଟିଏ ହାତରେ ଥିବ ବସ୍ତୁ ଓ ଅନ୍ୟ ହାତରେ ଥିବ ଭାବ, ଗୋଟିଏ ହାତରେ ଥିବ ବୈଜ୍ଞାନିକ କଳାକୌଶଳ ଓ ଅନ୍ୟ ହାତରେ ଥିବ ସୁକୁମାର ମାନସିକତା ସର୍ବୋପରି ଗୋଟିଏ ହାତରେ ଥିବ ମୂଲ୍ୟ ଓ ଅନ୍ୟହାତରେ ଥିବ ମୂଲ୍ୟବୋଧ। ଏ କଥାଟିକୁ ବୁଝିବାର ସମୟ ଆସିଛି।

ବିଶ୍ୱସଂସ୍କୃତିର ମାନଚିତ୍ରରେ ଆମ ଦେଶର ସଂସ୍କୃତିର ସ୍ଥାନ ସ୍ୱତନ୍ତ୍ର। 'ସର୍ବେଭବନ୍ତୁ ସୁଖୀନଃ' ମନ୍ତ୍ରର ପ୍ରଭାବ ଏବେ ମଧ୍ୟ ଆମ ବାତାବରଣରେ ଅନ୍ତେ ବହୁତେ ଗୁଞ୍ଜରିତ। ଆମଦେଶ ପୃଥିବୀର କୌଣସି ଦେଶକୁ ଆଗୁଆ ଆକ୍ରମଣ କରିନାହିଁ - ଏକଥା ବିଶ୍ୱ ଇତିହାସ ମୁକ୍ତକଣ୍ଠରେ କହିବାକୁ ବାଧ୍ୟ। ଚେତନା ଦିଗରୁ ବିଚାର କଲେ ଆମ ଦେଶ ହେଉଛି ସାରା ବିଶ୍ୱର ମଉଡ଼ମଣି। ମନେପଡ଼େ ସ୍ୱାମୀ ବିବେକାନନ୍ଦଙ୍କ ଆଲେଖ୍ୟ, "ଭାରତ ଏକ ଭୂମି ମାତ୍ର ନୁହେଁ, ଭାଷାର ଏକ ଅଳଂକାର ନୁହେଁ, ଏହା ଏକ ଜାଗ୍ରତ ଚେତନା।" ମନେପଡ଼େ ମହାଯୋଗୀ ଶ୍ରୀଅରବିନ୍ଦଙ୍କ କଥା, "ଭାରତ ହେଉଛି ପୃଥିବୀର ଆତ୍ମା। ଭାରତ ବଞ୍ଚିଲେ ପୃଥିବୀ ବଞ୍ଚିବ। ସାରା ବିଶ୍ୱ ଯେଉଁ ଯେଉଁ ସମସ୍ୟାରେ ଜର୍ଜରିତ, କେବଳ ଭାରତ ଦେଇପାରେ ତାହାର ଯଥାର୍ଥ ସମାଧାନ।"

ଅତଏବ ସାରା ବିଶ୍ୱ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ, ଲକ୍ଷ୍ୟରେ ହେଉ ଅଥବା ଅଲକ୍ଷ୍ୟରେ ହେଉ ନିଜର ପୂର୍ଣ୍ଣ ବିକାଶ ପାଇଁ ଭାରତବର୍ଷ ଆଡ଼କୁ ଚାହିଁ ରହିଛି ଯେଉଁଠାରେ କି ବସ୍ତୁବାଦ ଓ ଅଧ୍ୟାତ୍ମବାଦର ପବିତ୍ର ସମନ୍ୱୟ ପ୍ରଥମ କରି ଘଟିବ, ଯେଉଁଠାରୁ କି ପୂର୍ଣ୍ଣ ଜଗତୀକରଣର ପ୍ରକ୍ରିୟା ଆରମ୍ଭ ହେବ। ଆମେ କେଡ଼େ ଭାଗ୍ୟବାନ, ଆମ ସୌଭାଗ୍ୟର ଚନ୍ଦନ ବାସକୁ ଆମେ ଏତେ ବେଳେ ଆଘ୍ରାଣ କରିବା ନାହିଁ କି ?





Digitized by PPRACHIN, SOA

# ବିଦ୍ୟା ଓ ଅବିଦ୍ୟା

ଆଜିକାଲି ବିଦ୍ୟାର ମାପ ଡିଗ୍ରୀର ମାପକାଠିରେ ଏକ ପ୍ରକାର ଚାଲିଛି । ମୁଁ ଏକଥା କହିବା ଦ୍ୱାରା ଡିଗ୍ରୀର ନିନ୍ଦା କରୁନାହିଁ, ବରଂ ଡିଗ୍ରୀ ସହିତ ବିଦ୍ୟାର ସମ୍ବନ୍ଧ ଆଂଶିକ ବୋଲି କହୁଛି । ବିଦ୍ୟା ଅତିକମ୍‌ରେ ସଂସ୍କାର ସୃଷ୍ଟି କରେ, ବିନମ୍ରତା, ଭଦ୍ରତା ଓ ଶୃଙ୍ଖଳା ସମେତ ବହୁ ଭଲକଥା ଦିଏ । ହିଂସ୍ରତା, ଉଗ୍ରତା, ଜଟିଳତା, ସ୍ୱାର୍ଥପରତା, ଛଳନା ସମେତ ବହୁ ବଦ୍‌ଗୁଣକୁ ଦୂରେଇ ଦିଏ । ଡିଗ୍ରୀ ନଥାଇ ବ୍ୟକ୍ତି ବିଦ୍ୱାନ ହୋଇପାରେ । ଡିଗ୍ରୀ ଥାଇ ମଧ୍ୟ ବ୍ୟକ୍ତି ମୂର୍ଖ ହୋଇପାରେ ।

ବିଦ୍ୟାଦ୍ୱାରା ଜୀବନ ଓ ଜଗତକୁ ଆକଳନ କରିହୁଏ । ବିଦ୍ୟା ଆଣେ ଏକ ପ୍ରଶସ୍ତ ଦୃଷ୍ଟିଭଙ୍ଗୀ ଯାହା ମାଧ୍ୟମରେ ନିଜକୁ ତଥା ଅନ୍ୟକୁ ଦେଖିହୁଏ, ବୁଝି ହୁଏ । ବିଦ୍ୟା ନଥିଲେ ଯାହା ମଣିଷ ପାଖରେ ଥାଏ ତାହା ହେଉଛି ଅବିଦ୍ୟା, ଅବିଦ୍ୟାର ସରଳ ଅର୍ଥ ଅଜ୍ଞାନତା, ଅଚେତନତା, ଆତ୍ମମ୍ଭରିତା । ଏହି ବିଦ୍ୟା ଓ ଅବିଦ୍ୟା ସମ୍ବନ୍ଧରେ ମନେପଡୁଛି ଶ୍ରୀରାମକୃଷ୍ଣ ପରମହଂସଙ୍କ ଗୋଟିଏ କଥା । କଥାଟି ଏହିପରି ଦିନେ ଶ୍ରୀରାମକୃଷ୍ଣ କରୁଥିଲେ ଶିଷ୍ୟମାନଙ୍କ ଗହଣରେ ଅଧ୍ୟାତ୍ମଚର୍ଚ୍ଚା । ସେଦିନ ବହୁଦିନ ଅନୁପସ୍ଥିତ ରହିବା ପରେ ଜଣେ ଶିଷ୍ୟ ଲାଜ ଲାଜ ହୋଇ ପଛରେ ବସିଥାଆନ୍ତି । ଗୁରୁଦେବ ତାଙ୍କୁ ଦେଖିପକାଇ କାହିଁକି ସେ ଲାଜ ଲାଜ ହେଉଛନ୍ତି ବୋଲି ଅନ୍ୟମାନଙ୍କୁ ପଚାରନ୍ତେ ଅନ୍ୟମାନେ କହିଲେ ଯେ ସେ ବାହା ହୋଇଯାଇଛନ୍ତି ଏଥିଭିତରେ । ଏହାପରେ ସେ ତାଙ୍କୁ ପାଖକୁ ଡାକିଲେ ଓ ବୋହୂମାଆ ବିଦ୍ୟା କି ଅବିଦ୍ୟାର ଅଧିକାରୀ ବୋଲି ପଚାରିଲେ । ଶିଷ୍ୟଟି ତତ୍‌କ୍ଷଣାତ୍ ଉତ୍ତରଦେଲେ ଯେ ବୋହୂଟି ବି.ଏ ପାଶ୍ କରିଛି । ଗୁରୁଦେବ ଟିକିଏ ହସି କହିଲେ ଯେ ବି.ଏ. ପାଶ୍ କରିଛି ବୋଲି ଯେ ବିଦୂଷୀ ହୋଇଛି ଏପରି ନୁହେଁ, ତା'ର ଜୀବନ, ଜଗତ ଓ ଭଗବାନଙ୍କ ପ୍ରତି ଯଥାର୍ଥ ଦୃଷ୍ଟିଭଙ୍ଗୀ ଅଛି ତ । ତା ଥିଲେ ସେ ବିଦ୍ୟାର ଅଧିକାରିଣୀ ହୋଇଛି, ନ ହେଲେ ନୁହେଁ । ଏହି କଥାର ମର୍ମ ହେଉଛି ବିଦ୍ୟା କହିଲେ ମାନବିକ ମୂଲ୍ୟବୋଧକୁ ବୁଝାଏ ଯାହା ହେଉଛି ବ୍ୟକ୍ତିର ଅସଲ ବ୍ୟକ୍ତିତ୍ୱ ।

ବିଦ୍ୟାଥିଲେ ଜଣେ ନିଜକୁ କିଛି କିଛି ଜାଣିବା ସହ ଅନ୍ୟକୁ ମଧ୍ୟ କିଛି କିଛି ଜାଣିପାରେ । ଠକାଇ ହେବା ପୂର୍ବରୁ ଠକାମିକୁ ଚିହ୍ନିପାରେ । ଠକାମିଠାରୁ ଦୂରରେ ରହିବାକୁ ଚେଷ୍ଟା କରେ । ଆଉ କାହାର ଖୋସାମତି କଥାକୁ ସହଜରେ ବୁଝିପାରେ ଓ ତହିଁରେ



Digitized by PPRACHIN, SOA

ଆତ୍ମହରା ହୁଏ ନାହିଁ, ଅବାଟରେ ଯାଏନାହିଁ। ବିଦ୍ୟା ଆଣେ ଚିନ୍ତାଗତ ସ୍ଥିରତା ଅର୍ଥାତ୍ ମାନସିକ ଦୃଢ଼ତା। କର୍ତ୍ତବ୍ୟବୋଧର ଦ୍ୱାର ପ୍ରଶସ୍ତ ହୁଏ ଏବଂ ଦାୟିତ୍ୱବୋଧ ବଢ଼ିଯାଏ। କେଉଁଟା କରଣୀୟ ଏବଂ କେଉଁଟା ଅକରଣୀୟ, ତାହାର ବିଚାର ସହଜରେ କରିହୁଏ। କେଉଁଠି କେଉଁକଥା କିପରି କୁହାଯିବ, ତାହା ବୁଝିହୁଏ। ବିଦ୍ୟା ଯେପରି ହୀନ ମନ୍ୟତାକୁ ଦୂର କରେ ସେପରି ସବ୍‌ଜାନତା ଭାବକୁ ମଧ୍ୟ ଦୂର କରେ। ଅର୍ଥାତ୍ ବିଦ୍ୱାନ ବ୍ୟକ୍ତି ନିଜକୁ ସାନ ମନେ କରେନାହିଁ କି ବଡ଼ ମନେ କରେ ନାହିଁ। ନିଜେ ଯାହା ନିଜକୁ ତାହା ବୋଲି ବିଚାର କରେ।

ଭିତରେ ବିଦ୍ୟାଥିବା ବ୍ୟକ୍ତି ଲୋକଙ୍କ କଥାରେ ବିଚଳିତ ହୁଏ ନାହିଁ। ଲୋକ କଥା ଶୁଣି ଭୁଲ ଥିଲେ ନିଜକୁ ସଂଶୋଧନ କରେ ଆଉ ଭୁଲ ନ ଥିଲେ ସେ କଥାକୁ ଭ୍ରୂକ୍ଷେପ କରେ ନାହିଁ। ତେଣୁ ସେ କଥାରେ ସେ ଆକ୍ରମିତ ବା ଆକ୍ରାନ୍ତ ହୁଏ ନାହିଁ।

ବିଦ୍ୟା ଆଣେ ପାରସ୍ପରିକ ଅନୁମୋଦନ। ଅନ୍ୟଠାରେ ଭଲ ଗୁଣଟିଏ ଦେଖିଲେ ବିଦ୍ୟାଥିବା ବ୍ୟକ୍ତି ପ୍ରଶଂସା କରେ। ଅନ୍ୟର ପ୍ରତିଭାକୁ ଅନୁମୋଦନ କରିବା ସହ ପ୍ରତିଭାର ବିକାଶ ନିମନ୍ତେ ପ୍ରେରଣା ଦିଏ। ସମ୍ପ୍ରତି ସମାଜରେ ଏହି ଅନୁମୋଦନ ଓ ପ୍ରେରଣାର ହ୍ରାସ ଘଟୁଛି। ଏହା ଅବିଦ୍ୟାର କରାମତି। ଅବିଦ୍ୟାକୁ ପରିହାର କରି ବିଦ୍ୟାର ଆବାହନ ଏତେବେଳେ ଏକାନ୍ତ ଜରୁରୀ।

ମଣିଷର ପୂର୍ଣ୍ଣତା ପାଇଁ ଦୁଇଟି କଥା ଅତି ଆବଶ୍ୟକ। ଗୋଟିଏ ହେଲା ବୌଦ୍ଧିକତା ଓ ଅନ୍ୟଟି ହେଲା ହୃଦୟବତ୍ତା। ଦୁଇଟିର ଭାରସାମ୍ୟ ଏକାନ୍ତ ଆବଶ୍ୟକ। ଏଥିରୁ ଗୋଟିଏ ବଢ଼ିଗଲେ ଓ ଅନ୍ୟଟି କମିଗଲେ ଚଳିବ ନାହିଁ। ଦୁଇଟି କଥା ପାଖାପାଖି ସମାନ ଭାବରେ ଜଣେ ମଣିଷ ପାଖରେ ରହିବା ଦରକାର। ଅର୍ଥାତ୍ ଜଣକ ପାଖରେ ଯେମିତି ବୁଦ୍ଧି, ଜ୍ଞାନ, ବହିଃ ଜୀବନ ପ୍ରତି ଶ୍ରଦ୍ଧା, ବସ୍ତୁ ପ୍ରତି ଅନୁରକ୍ତି ପ୍ରଭୃତି ରହିବ ସେମିତି ରହବ ଦୟା, କ୍ଷମା, ସ୍ନେହ, ସହନଶୀଳତା, ଶ୍ରଦ୍ଧା, ସହାନୁଭୂତି ତଥା ଅନ୍ତଃଜୀବନ ପ୍ରତି ଶ୍ରଦ୍ଧା।

ସର୍ବୋପରି ବିଦ୍ୟା ଦିଏ ବ୍ୟକ୍ତିକୁ ଅହଂକାରରୁ ମୁକ୍ତି। ତେଣୁ ତ କୁହାଯାଏ 'ସା ବିଦ୍ୟା ଯା ବିମୁକ୍ତୟେ'। ଅହଂକାରର ସରଳ ଅର୍ଥ ହେଉଛି ନିଜକୁ ଜାହିର କରିବା। ଭୁଲ କଥାରେ ନିଜକୁ ଜାହିର କରିବା ଯେପରି ଅହଂକାର, ଠିକ୍ କଥାରେ ନିଜକୁ ଜାହିର କରିବା ମଧ୍ୟ ସେପରି ଅହଂକାର। ଜାହିର କଥାଟି ସାବ୍ୟସ୍ତ ନ ହେଲା ପର୍ଯ୍ୟନ୍ତ ଅନ୍ତର ଜଳୁଥାଏ। ଆଉ ସାବ୍ୟସ୍ତ ନ ହେଲେ ଅନ୍ତରର କ୍ରୋଧ ବଢ଼ିଯାଏ, କାର୍ଯ୍ୟରେ ନକାରାତ୍ମକତା ଆସେ। ସ୍ଥାନ କାଳ ପାତ୍ରର ବିବେଚନା ରହେ ନାହିଁ, ଫଳତଃ ବହୁ ଅକଥା କହି ହୋଇଯାଏ ଓ ବହୁ ଅକାର୍ଯ୍ୟ କରି ହୋଇଯାଏ।

ସମ୍ପ୍ରତି ବିଶ୍ୱରେ ଧନର ପରମାଣ ବେଶ୍ ବଢ଼ିଛି, ସମ୍ପଦ ବଢ଼ିଛି, ଜନସଂଖ୍ୟା ବଢ଼ିଛି, ବୈଜ୍ଞାନିକ ଆବିଷ୍କାର ଓ ଉଦ୍ଭାବନ ବଢ଼ିଛ ମାତ୍ର ମଣିଷ ମନରେ ଶାନ୍ତି ଓ



Digitized by PPRACHIN, SOA

ସନ୍ତୋଷ ଯେତେ ବଢ଼ିବା କଥା ସେତେ ବଢ଼ିନାହିଁ। ବହିଃ ଜୀବନର ସମୃଦ୍ଧି ଘଟିଛି ମାତ୍ର ଅନ୍ତଃଜୀବନର ବିକାଶ ବିଶେଷ ଘଟିନାହିଁ। ଅନ୍ତଃଜୀବନର ବିକାଶର ଅନ୍ତରାୟ ହେଉଛି ଅଜ୍ଞାନତା। ଏହି ଅଜ୍ଞାନତା ବିନାଶ କେବଳ ବିଦ୍ୟାର ପ୍ରଭାବରେ ଘଟିପାରେ। ଅଜ୍ଞାନତା କବଳରୁ ବ୍ୟକ୍ତି ମୁକ୍ତ ହେଲେ କ୍ରମଶଃ ସମାଜ, ରାଷ୍ଟ୍ର ଏବଂ ସମଗ୍ର ବିଶ୍ୱ ମୁକ୍ତ ହେବ। ଆଉ ଏହି ମୁକ୍ତ ବିଶ୍ୱ ହେବ ସ୍ୱର୍ଗ ପରି ସୁନ୍ଦର ଓ ଶୋଭନୀୟ। ବ୍ୟକ୍ତି ଭିତରେ ଦିବ୍ୟ ଗୁଣର ବିକାଶ ଦ୍ୱାରା ପୃଥିବୀ ହେବ ବିଜୟଶ୍ରୀ ବିମଣ୍ଡିତ ଏକ ଅମୃତଭୁବନ।





Digitized by PPRACHIN, SOA

# ଭାରି ଏକା ଲାଗୁଛି

ଆଜିକାଲି ଆମକୁ ଭାରି ଏକା ଲାଗୁଛି। ଆଗେ ତ ଏମିତି ଲାଗୁ ନଥିଲା, ଏବେ କାହିଁକି ଲାଗୁଛି – ବେଳେ ବେଳେ ବୁଝିହେଉଛି ତ ପ୍ରାୟବେଳେ ବୁଝିହେଉନାହିଁ। ତେବେ ବ୍ୟସ୍ତ ଲାଗୁଛି ବେଳେ ବେଳେ ଅସ୍ତବ୍ୟସ୍ତ ବି ଲାଗୁଛି। ମନେ ହଉଛି 'ମୁଁ ଭାରି ଏକା'। ମତେ ତ କେହି ଆଗ ପରି ଆଦର କରୁନାହାନ୍ତି, ଆଦର କମିଯିବାଟା ବାଧୁଛି, ଛାଡ଼, ମୋ ଭାଗ୍ୟ...। ସତରେ ଖାଇବା ପିନ୍ଧିବାରେ ଯେତେ ଅସୁବିଧା ନାହିଁ, ସେ ଏତେ ଅସୁବିଧା ଅଛି ଆଦୃତ ନ ହେବାରେ। କାହାକୁ କହି ହେଉନି, ନକହି ରହିହେଉନି, କହିଲେ କାହାକୁ କିଛି ଲାଭ ନାହିଁ ବୋଲି ଭାବି ମଧ୍ୟ ନୀରବରେ ବେଳେବେଳେ ରହିବାକୁ ହେଉଛି। ମନ ଭିତରେ ପ୍ରବଳ ଅଭିମାନ, ନୀରବ ଅଭିଯୋଗ ଯେ ମତେ କେହି ଭଲ ପାଉନାହାନ୍ତି। ସମାଜରେ ତଥା ପରିବାରରେ ଏପରି ଅନାଦୃତି ଭାବର ଶିକାର ଆମେ ହୋଇଯାଉଛୁ। ବେଳକୁ ବେଳ ଅଧିକା ଅଧିକା ଶିକାର ମଧ୍ୟ ହୋଇଯାଉଛୁ। ଆମ ମନରେ ଖୁସି ନାହିଁ, ମୁହଁରେ ହସ ନାହିଁ। କିଏ ଯେମିତି ଅଗ୍ନିରୁ ଉଷ୍ଣତାକୁ, ବରଫରୁ ଶୀତଳତାକୁ, ସମୁଦ୍ରରୁ ତରଙ୍ଗକୁ ଆଉ ଜଳରୁ ସିକ୍ତତାକୁ ଚୋରାଇ ନେଇଛି। ଅଭିଯୋଗ ମନେ ମନେ ଶାଣିତ ହେଉଛି ଯେ ଆମକୁ କେହି ବୁଝୁ ନାହାନ୍ତି, ଆମେ ଯାହା କହୁଛୁ ଉଚିତ କଥା କହୁଛୁ ମାତ୍ର କେହି ଆମ କଥାର ଔଚିତ୍ୟକୁ ଅନୁଭବ କରିପାରୁ ନାହାନ୍ତି ଇତ୍ୟାଦି ଇତ୍ୟାଦି...। ଏସବୁ କଥା ଆମ ମନରେ ଗଭୀର ପ୍ରଭାବ ପକାଉଛି ଓ ଆମକୁ ଅଶାନ୍ତ କରୁଛି। ବାହାରକୁ ଦିଶୁ କି ନ ଦିଶୁ ଏହା ଏକ ସମସ୍ୟା ହୋଇ ଆମ ସହ ରହିଛି। ସମସ୍ୟା ହୋଇ ରହିଛି ବୋଲି କହିଲେ ତ ସମସ୍ୟା ଯିବ ନାହିଁ। ଆମ ସମସ୍ୟାର ସମାଧାନ ନିମନ୍ତେ ଅନ୍ୟମାନେ ଆମପାଇଁ ଏହା କରି ଦିଅନ୍ତୁ ବୋଲି ନ କହି ଆମକୁ ଏଥି ସକାଶେ କିଛି ପ୍ରୟାସ ଓ ପ୍ରଯତ୍ନ କରିବାକୁ ପଡ଼ିବ।

ପ୍ରଥମ କଥା ହେଲା ଯେ ପରିସ୍ଥିତିକୁ ବଦଳାଇବା କମ୍ ସମୟ ଭିତରେ ଆମ ଦ୍ୱାରା ସମ୍ଭବ ହେବ ନାହିଁ। ପରିସ୍ଥିତିର ଛନ୍ଦାଜାଲ ଓ ଅଡୁଆ ସୂତା ଆମପାଇଁ ଆଉ କେହି ମଧ୍ୟ ଫିଟାଇ ଦେବେ ନାହିଁ। ଏଥି ନିମନ୍ତେ ଆମକୁ ଆଉ କିଛି କଥା କରିବାକୁ ପଡ଼ିବ। ସେହି ଚାବିକାଠିଟିକୁ ଆପଣେଇବାକୁ ପଡ଼ିବ। ଆମେ ଆମ ମନର ଶାନ୍ତି ଓ ସ୍ଥିରତା ପାଇଁ ପ୍ରଯତ୍ନ କରିବା। ଅନ୍ୟଠାରୁ ଆଦୃତି ଓ ପ୍ରଶଂସା ପାଇବା ପରିବର୍ତ୍ତେ ଅନ୍ୟକୁ ଆଦର କରି



Digitized by PPRACHIN, SOA

ଶିଖିବା। ଅନ୍ୟ ପ୍ରତି ଶୁଭେଚ୍ଛା, ସହାନୁଭବ ଓ ନିରପେକ୍ଷତା ରଖିବା। ତେବେ ତ ଆମ ଖୁସି ଆମ ହାତରେ ରହିବ। ଆମ ଖୁସି ପାଇଁ ଅନ୍ୟ ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ। ନିର୍ଭର କଲାରୁ ସିନା ଆଶାନୁରୂପ ଆଦର ନ ମିଳିଲେ ମନରେ କଷ୍ଟ ହେଉଛି। ପୁଣି ଅନ୍ୟମାନଙ୍କ ଠାରୁ ଆଦୃତି ପାଇଁ ବାସନା ଓ ଅପେକ୍ଷା ରଖିଥିବାରୁ ଆମ ଭିତରେ ତୁଳନାର ମନୋଭାବ ଆସୁଛି। କିଏ ଆମକୁ କେତେ ଭଲପାଉଛି ବା ନପାଉଛି ଆମ ମନ ସିଲଟରେ ସେଇ ଅଙ୍କ କଷା ଚାଲିଛି। ଚାଲିଛି ଯେ ଚାଲିଛି ସେ ଅଙ୍କ ସରୁନାହିଁ କି ଆମ ମନ ସିଲଟ ସଫା ହେଉନାହିଁ। ବରଂ ଅଛିଣ୍ଡା ଅଙ୍କ ତା' ଉପରେ କଷା ହୋଇ ହୋଇ ସିଲଟଟି ମଇଳା ଘଷରା ହୋଇଯାଉଛି। ଏ ଅଙ୍କ ନ କଷି ଯଦି ଆମେ ଅନ୍ୟକୁ ଯଥାର୍ଥରେ ଆଦର କରନ୍ତୁ, ତେବେ ସିଲଟଟି ଅପେକ୍ଷାକୃତ ସଫା ରହନ୍ତା ଓ ତହିଁରେ ଲେଖାଥିବା କେତେକଥା ପଢ଼ି ହୁଅନ୍ତା, ଆଉ ବୁଝି ହୁଅନ୍ତା।

ଏକଥାରୁ ଆମେ ବୁଝିବା ନାହିଁ ଯେ ଖଳ ଦୁଷ୍ଟ ଦୁର୍ଜନଙ୍କୁ ଝାମ୍ପି ପଡ଼ି ଆଲିଙ୍ଗନ କରିବା। ତାହା ଦ୍ୱାରା ଆନନ୍ଦ ପରିବର୍ତ୍ତେ ଦୁଃଖ ବଢ଼ିଯିବ, ଶାନ୍ତି ପରିବର୍ତ୍ତେ ଅଶାନ୍ତି ବଢ଼ିଯିବ, ଏକଥା ଆମକୁ ମନେ ରଖିବାକୁ ହେବ। ସେତେବେଳେ ମନେ ପକାଇବାକୁ ହେବ ଶ୍ରୀରାମକୃଷ୍ଣ ଦେବଙ୍କ କଥା। ସେ କହୁଥିଲେ, "ବାଘ ଭିତରେ ଭଗବାନ ଥିଲେ ମଧ୍ୟ ବାଘ ପାଖକୁ ଯିବା ଯେପରି ଠିକ୍ ନୁହେଁ ସେପରି ଦୁଷ୍ଟ ଲୋକ ଭିତରେ ଭଗବାନ ଥିଲେ ମଧ୍ୟ ତା' ନିକଟକୁ ଯିବା ଉଚିତ ନୁହେଁ।" ଆମକୁ ବାଛିବାକୁ ପଡ଼ିବ ଆମେ କେଉଁଠାରେ ବସିବା ଆଉ କେଉଁଠାରେ ବସିବା ନାହିଁ। ଲୋକ ଉକ୍ତିକୁ ମନେ ପକାଇବା ସେତେବେଳେ "ବନ୍ଧୁ ଦେଖିଲେ ହସିବା, ଖଳ ଦେଖିଲେ ଖସିବା" ଇତ୍ୟାଦି ଇତ୍ୟାଦି। ଯେଉଁଠାରେ ବସିବା ବୋଲି ଉଚିତ ମନେ କରିବା ସେଠାରେ ନିଜକୁ ହଜେଇ ଦେବାନାହିଁକି ହରାଇ ଦେବା ନାହିଁ। ନିଜ ଭିତରେ ନିଜକୁ ସମ୍ଭାଳି ରଖି ଅନ୍ୟକୁ ଆଦର କରିବା। ଅନ୍ୟପ୍ରକାରେ କଥାଟିକୁ ବୁଝିବା ଯେ ଯଥାଯଥ ପାତ୍ରରେ ନିଜକୁ ଯେତିକି ସମ୍ଭବ ସେତିକି ଢାଳିଦେବାକୁ ହେବ। ଅଧିକ ନୁହେଁ କି କମ୍ ମଧ୍ୟ ନୁହେଁ। ତାହାହିଁ ହେଉଛି ଯଥାର୍ଥରେ ଭଲ ପାଇବା ପାଇଁ ଭଲ ପାଇବା। ଲାଭର ଲାଳସା କି ପ୍ରତିଦାନର ଆଶା ନ ରଖିଲେ ଆମେ ଆତ୍ମସନ୍ତୋଷ ଓ ଅମଳିନ ଆନନ୍ଦ ଏଥିରୁ ପ୍ରାପ୍ତ ହେବା। ଅନ୍ୟପକ୍ଷରେ ଆଦୃତିକୁ ଅପେକ୍ଷା ନରଖି ଅର୍ଥାତ୍ ଅନ୍ୟର ଆଦୃତିକୁ ସର୍ତ୍ତ ନ ରଖି ଭଲ ପାଇଲେ ଅନ୍ୟଠାରୁ ମଧ୍ୟ ଆଦୃତି ମିଳିବ, କାରଣ ପ୍ରତ୍ୟେକ କ୍ରିୟାର ଏକ ସମତୁଲ ପ୍ରତିକ୍ରିୟା ହେଉଛି ଏ ଜଗତର ନିୟମ।

ଆମକୁ ଏକା ଏକା ଲାଗିବାର ଅନ୍ୟ ଏକ କାରଣ ହେଉଛି ସାନ ହେଉକି ବଡ଼ ହେଉ ଆମେ ଅନ୍ୟମାନଙ୍କୁ ଆମ ଛାଞ୍ଚରେ ପକାଇବାକୁ ଚାହୁଁଛୁ, ଚେଷ୍ଟା କରୁଛୁ, ବିଫଳ



Digitized by PPRACHIN, SOA

ହେଉଛୁ ଓ ଦୁଃଖୀ ହେଉଛୁ। ଆମେ ଜାଣିଛୁ ଯେ ମଣିଷମାନଙ୍କର ପ୍ରକୃତି ଭିନ୍ନଭିନ୍ନ, ରୁଚି ମଧ୍ୟ ଭିନ୍ନ ଭିନ୍ନ। ତେଣୁ ତ କୁହାଯାଇଛି 'ଭିନ୍ନ ରୁଚି ଲୋକାଃ'। ଏହାସତ୍ତ୍ୱେ ଆମେ ଇଚ୍ଛା କରୁଛୁ ଅନ୍ୟମାନେ ସେ ଆମ ପରିବାରର ହୁଅନ୍ତୁ ଅବା ବନ୍ଧୁବାନ୍ଧବ ହୁଅନ୍ତୁ ଆମ ପରି ଚଳନ୍ତୁ, କଥା କହନ୍ତୁ ଇତ୍ୟାଦି ଇତ୍ୟାଦି। ଆମେ ଅନ୍ତରରେ ବୁଝିବା ଉଚିତ ଯେ ଭିନ୍ନତା ରହିବ, ତତ୍ ସତ୍ତ୍ୱେ ଆନ୍ତରୀଣ ଏକତ୍ୱ ରହିବ। ଆମେ ବୁଝିବା ଉଚିତ ଯେ ମୋ' ପରି ନ ହୋଇ ସେ ତା'ପରି ହେବା ସତ୍ତ୍ୱେ ମୁଁ ଯଦି ତାକୁ ଶ୍ରଦ୍ଧା, ସ୍ନେହ ଓ ସମ୍ମାନ ଦେଇପାରିଲି, ତେବେ ସେ ଭଲପାଇବା ହିଁ ଯଥାର୍ଥ ଭଲପାଇବା। ସେଥିରେ ଅସନ୍ତୋଷ ନାହିଁ, ଗ୍ଲାନି ନାହିଁ, ଅଭିମାନ ନାହିଁ। ଅଛି ଅଶେଷ ସନ୍ତୋଷ ଓ ଅନେକ ଆନନ୍ଦ। ଏପରିପ୍ରେକ୍ଷୀରେ ଶ୍ରୀମାଙ୍କର ବାଣୀ ସ୍ମରଣୀୟ। ସେ କହିଛନ୍ତି, "ତୁମେ ଅନ୍ୟଠାରୁ ଭଲପାଇବା ଚାହୁଁଛ। ସେଇଥିପାଇଁ ତୁମକୁ ଏକୁଟିଆ ଲାଗୁଛି। କିନ୍ତୁ ତୁମେ କୌଣସି ସର୍ତ୍ତ ବା ଦାବି ନରଖି ନିଜେ ଭଲପାଇବାକୁ ଶିଖ, ଦେଖିବ ତୁମକୁ କେତେ ଭଲ ଲାଗୁଛି, ଆନନ୍ଦ ଲାଗୁଛି। ଭଲ ପାଇବାର ଏକ ଆନନ୍ଦ ଅଛି। ସେହି ଆନନ୍ଦ ପାଇଁ କେବଳ ଭଲପାଅ। ଏହି ଆନନ୍ଦ ହେଲା ବିଶ୍ୱରେ ସବୁଠାରୁ ଆଶ୍ଚର୍ଯ୍ୟକର ଆନନ୍ଦ। ତା' ହେଲେ ଦେଖିବ ତୁମକୁ କେବେବି ଏକୁଟିଆ ଲାଗିବ ନାହିଁ।" ସତରେ ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ଅନ୍ୟକୁ ଆଦର କଲେ ଆମେ ଅନ୍ୟଠାରୁ ଆଦୃତି ସହ ଅସୀମ ଆନନ୍ଦ ପାଇବା। ସେ ଆନନ୍ଦର ଅଭିଷେକରେ ମନରେ ଫୁଟିଯିବ ଶତଶତ ପାରିଜାତ ଫୁଲ, ବାସ୍ନାରେ ମହକି ଯିବ ଚଉହଦି। ସେ ବାସ୍ନା ଅନନ୍ୟ ଓ ଅସାଧାରଣ। ମର୍ତ୍ତ୍ୟର ଫୁଲମାନଙ୍କର ବାସ୍ନାଠାରୁ ସେ ବାସ୍ନା ହେବ ନିଆରା। ସେଇ ସୁବାସର ଅପେକ୍ଷାରେ ରହିଛି ଏ ସାରା ପୃଥିବୀ, ରହିଛି ଆମ ଦେଶ, ଆମ ସମାଜ। ବୟସ ଓ ସାମର୍ଥ୍ୟ ନିର୍ବିଶେଷରେ ଅଧିକ ପାରସ୍ପରିକ ଶ୍ରଦ୍ଧା ଓ ଆଦରର ଅପେକ୍ଷାରେ ରହିଛି ଆମ ପରିବାର। ଆମେ ସମସ୍ତେ ସେ ଅପେକ୍ଷାରେ ରହିଛୁ ଏବଂ ବିଶ୍ୱାସ୍ ରଖିଛୁ ଯେ ଆମ ସ୍ୱପ୍ନ ନିଶ୍ଚୟ ସାକାର ହେବ।





Digitized by PPRACHIN, SOA

# ପ୍ରଗତିର ପରିଭାଷା

ଅର୍ଥନୀତି ବଦଳିଗଲେ ସବୁକିଛି ବଦଳିଯିବ, ଏହା ପୂର୍ଣ୍ଣ ସତ୍ୟ ନୁହେଁ, ଅର୍ଦ୍ଧ ସତ୍ୟ। ରାଜନୀତି ବଦଳିଗଲେ ସବୁକିଛି ବଦଳିଯିବ, ଏହା ପୂର୍ଣ୍ଣ ସତ୍ୟ ନୁହେଁ, ଅର୍ଦ୍ଧସତ୍ୟ। ସମାଜ ନୀତି ବଦଳିଗଲେ ସବୁକିଛି ବଦଳିଯିବ ଏହା ପୂର୍ଣ୍ଣ ସତ୍ୟ ନୁହେଁ, ଅର୍ଦ୍ଧସତ୍ୟ। ମଣିଷର ପ୍ରକୃତି ବଦଳିଗଲେ ସବୁକିଛି ବଦଳିଯିବ, ଏହା ପୂର୍ଣ୍ଣ ସତ୍ୟ। ତେବେ ପ୍ରଶ୍ନ ଉଠିବ ଯେ ମଣିଷର ପ୍ରକୃତି ବଦଳିବ କି ? ମଣିଷର ପ୍ରକୃତି ତ ବଦଳେ ନାହିଁ, ଆଉ ଯଦି ବଦଳେ ଟିକିଏ ଟିକିଏ ବୋଲି କୁହାଯାଇଛି। ଏପରି ସ୍ଥଳେ ଏତେ ଆଶା ପୂରଣ ହେବା କ'ଣ ସମ୍ଭବ ? ଉତ୍ତରରେ କୁହାଯାଇପାରେ ଯେ ଅବଶ୍ୟ ସମ୍ଭବ। ମଣିଷ ପ୍ରକୃତି ବଦଳିପାରେ ଯଦି ସେ ନିଜେ ଚେଷ୍ଟା କରେ। ସେ ଯଦି ବୁଝେ ଯେ ସମାଜଠାରୁ ବ୍ୟକ୍ତିଟିଏ ବଡ଼ ଯଦିଓ ସେ ସମାଜର ଏକକ।

ଏହି ବଦଳିବା ପାଇଁ ସବୁଠାରୁ ବେଶୀ ସହଯୋଗ କରେ ଶିକ୍ଷା। ଜନ୍ମଗତ ପ୍ରକୃତିକୁ ବଦଳାଇବା ପାଇଁ ନିଜର ଆଗ୍ରହ ଓ ଶିକ୍ଷାର ପ୍ରଭାବ ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ। ଶିକ୍ଷା, ସୁବର୍ଣ୍ଣ ସେତୁ ହୋଇ ବ୍ୟକ୍ତି ଜୀବନକୁ ସମାଜ-ଜୀବନ, ରାଷ୍ଟ୍ର-ଜୀବନ ଏବଂ ବିଶ୍ୱଜୀବନ ସହ ଯୋଡ଼ି ଦେଇପାରେ। ଏହି ଶିକ୍ଷା ପାରିବାରିକ ଶିକ୍ଷା ସହ ଆନୁଷ୍ଠାନିକ ଶିକ୍ଷା ପୁଣି ଅଣଆନୁଷ୍ଠାନିକ ଶିକ୍ଷାର ସହଯୋଗରେ ସମୃଦ୍ଧ ହୋଇଥାଏ। ପାରିବାରିକ ଶିକ୍ଷା ଦିଏ ସଂସ୍କାର, ମିଳିମିଶି ଚଳିବାର ମାନସିକତା। ଆନୁଷ୍ଠାନିକ ଶିକ୍ଷାଦିଏ ବିବିଧ ଦଗନ୍ତ ବିସ୍ତାରୀ ଜ୍ଞାନର ତତ୍ତ୍ୱ ଓ ତଥ୍ୟ ସହ ପ୍ରୟୋଗ କୌଶଳ। ଅଣଆନୁଷ୍ଠାନିକ ଶିକ୍ଷା ଅର୍ଥାତ୍ ସଭାସମିତି, ସମ୍ମାନ, ପ୍ରବଚନ, ଉତ୍ତମ ପୁସ୍ତକ ପଠନ, ସାଂସ୍କୃତିକ କାର୍ଯ୍ୟକ୍ରମ ପ୍ରଭୃତି ଦିଏ ଆତ୍ମବିଶ୍ଳେଷଣ ଓ ଆତ୍ମବିକାଶର ସୁଯୋଗ।

ଏତେ କଥା ପାଇଁ ଯାହା ଲୋଡ଼ା ହେଉଛି ଏହି ଅନୁଷ୍ଠାନ ମାନଙ୍କର ସଦସ୍ୟମାନେ ପ୍ରଥମେ ଶିକ୍ଷିତ ହେବା ଦରକାର। ଶିକ୍ଷିତ ହେବା ଅର୍ଥ କେବଳ ବଡ଼ ବଡ଼ ଡିଗ୍ରୀ, ବହୁ ମାନପତ୍ର, ବହୁ ପୁରସ୍କାରର ଅଧିକାରୀ ହେବା ନୁହେଁ, ବରଂ ଆତ୍ମଶିକ୍ଷିତ ହେବା ଅଧିକ ଜରୁରୀ। ପ୍ରଥମେ ପାରିବାରିକ ଶିକ୍ଷା କଥା ଦେଖାଯାଉ। ପରିବାରରେ ପିତାମାତା ଅଭିଭାବକ ଯଦି ଯଥେଷ୍ଟ ଶକ୍ତି, ସମୟ ଏବଂ ତୀକ୍ଷ୍ଣ ଦୃଷ୍ଟି ନ ଦିଅନ୍ତି ତେବେ ପିଲାଟିର ସଂସ୍କାର ବଢ଼ି ଉଠିବ ନାହିଁ। ମନ୍ଦଗୁଣ ତା ଭିତରୁ ଯିବ ନାହିଁ କି ଭଲ ଗୁଣର ବିକାଶ



Digitized by PPRACHIN, SOA

ହେବ ନାହିଁ। ଏଥିପାଇଁ ଯଥେଷ୍ଟ ଧୈର୍ଯ୍ୟ ସହ ଯଥେଷ୍ଟ ସମୟ ପିତାମାତା ଓ ଅଭିଭାବକଙ୍କୁ ଦେବାକୁ ହେବ। ସ୍ନେହରେ, ଶାସନରେ (ମାଡ଼ ନୁହେଁ), ବୁଝାଇବାରେ, କୁଣ୍ଠିତ ହେଲେ ଚଳିବ ନାହିଁ। ନିଜର ସୁଖ ସୁବିଧା ଦେଖିଲେ ଚଳିବ ନାହିଁ, ଉପଦେଶ ସହ ଉଦାହରଣ ହେବାକୁ ପଡ଼ିବ।

ତାପରେ ଦେଖାଯାଉ ଆନୁଷ୍ଠାନିକ ଶିକ୍ଷାର କଥା। କେବଳ ଡିଗ୍ରୀ, ଡିପ୍ଲୋମା ପ୍ରଦାନ ପାଇଁ ଆନୁଷ୍ଠାନିକ ଶିକ୍ଷା ଉଦ୍ଦିଷ୍ଟ ନୁହେଁ, କେବଳ ତଥ୍ୟ ଓ ତତ୍ତ୍ୱ ପରିବେଷଣ ସହ ପ୍ରଯୁକ୍ତି କୌଶଳ ପ୍ରଦାନ ମଧ୍ୟ ଏହାର ଉଦ୍ଦେଶ୍ୟ ନୁହେଁ। ଏଥି ସହିତ ଶିକ୍ଷାକୁ ଜୀବନମୁଖୀ ଏବଂ ଜଗତମୁଖୀ କରାଇବା ଏହାର ଉଦ୍ଦେଶ୍ୟ। ଛାତ୍ରଛାତ୍ରୀଙ୍କୁ ପାଠ ଘୋଷି ମନେ ରଖିବାକୁ କହିବା ପରିବର୍ତ୍ତେ ବୁଝିବାକୁ ସମର୍ଥ କରାଇବାକୁ ହେବ। ସବୁ ଛାତ୍ରଛାତ୍ରୀଙ୍କୁ ସମାନ ମାନସିକତାର ବୋଲି ନ ବିଚାରି ତହିଁରେ କମ୍ ବେଶୀ ଥିବାରୁ ବିଭିନ୍ନ ପଦ୍ଧତିରେ ବୁଝାଇବାକୁ ଚେଷ୍ଟା କରିବାକୁ ହେବ। ଭିନ୍ନ ଭିନ୍ନ ସ୍ତରର ଉଦାହରଣ ଦେଇ ବୁଝାଇଲେ ଏବଂ ସେମାନେ ତାହା ବୁଝିଲେ ପାଠପଢ଼ା ରସାଳ ହେବା ସହିତ ଫଳପ୍ରଦ ମଧ୍ୟ ହେବ। ପିଲାମାନେ ଆଉ ପରୀକ୍ଷାକୁ ଡରିବେ ନାହିଁ କି ପରୀକ୍ଷାରେ ଅସାଧୁ ଉପାୟ ଅବଲମ୍ବନ କରିବାକୁ ଇଚ୍ଛା କରିବେ ନାହିଁ। ସ୍ୱାମୀ ବିବେକାନନ୍ଦ କହୁଥିଲେ "ପାଠ ଘୋଷିଲେ ହୁଏ ନାହିଁ, ପାଠ ବୁଝିଲେ ହୁଏ।"

ଅବଶ୍ୟ ଏଥିପାଇଁ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ପାଠକୁ ଟିକିଏ ଅଧିକ ବୁଝିବାକୁ ହେବ ଏବଂ ନିଜକୁ ମଧ୍ୟ ଅଧିକ ବୁଝିବାକୁ ହେବ। ସେମାନଙ୍କ ଭୂମିକା ଯେ କେତେ ଗୁରୁତ୍ୱପୂର୍ଣ୍ଣ ତାହା ସେମାନଙ୍କୁ ଅନୁଭବ କରିବାକୁ ହେବ। ପଢ଼ିବାର ଆଗ୍ରହ ଓ ପଢ଼ାଇବାର ଆଗ୍ରହ କେବେ ହେଲେ ବୃଥାଯିବ ନାହିଁ କାରଣ ଏହା ଏକ ଅତି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ। ଛାତ୍ରଛାତ୍ରୀଙ୍କୁ ବୁଝାଇବା ଏକ ଜାତି ଗଠନ କାର୍ଯ୍ୟ ତଥା ଜାତୀୟ କାର୍ଯ୍ୟ। କେବଳ ଜାତୀୟ କାର୍ଯ୍ୟ ନୁହେଁ, ଆନ୍ତର୍ଜାତୀୟ କାର୍ଯ୍ୟ ମଧ୍ୟ। କେବଳ ଆନ୍ତର୍ଜାତୀୟ କାର୍ଯ୍ୟ ନୁହେଁ, ଦିବ୍ୟ କାର୍ଯ୍ୟ ମଧ୍ୟ।

ଶିକ୍ଷାଦାନ ବେଳେ ଶିକ୍ଷାଦାତାର ପ୍ରଥମ ଯୋଗ୍ୟତା ହେଉଛି ଖୁସି ରହିବା। ଖୁସି ମନରେ ପାଠ ପଢ଼ାଇଲେ ପାଠର ପ୍ରଭାବ ଛାତ୍ରଛାତ୍ରୀମାନଙ୍କ ଉପରେ ଅଧିକ ପଡ଼େ। ପ୍ରଶ୍ନ ଆସିବ ଯେ ଶିକ୍ଷକ ତ ଜଣେ ମଣିଷ, ସବୁବେଳେ ଖୁସି ରହି ପାଠ ପଢ଼ାଇବା କ'ଣ ସମ୍ଭବ ? ଉତ୍ତରରେ କୁହାଯିବ ଯେ ଅନ୍ତତଃ ପାଠପଢ଼ାଇଲା ବେଳେ ଶିକ୍ଷାଦାତା ମାନଙ୍କୁ ଇଚ୍ଛାକରି ଖୁସି ରହିବାକୁ ହେବ। ପଢ଼ାଇଲା ବେଳେ ନିଜକୁ ସେହି ବିଦ୍ୟା ସହିତ ଏକାତ୍ମ କରି ଦେବାକୁ ହେବ। ନିଜେ ତହିଁରେ ମଜ୍ଜିନଗଲେ ଅନ୍ୟକୁ ମଜ୍ଜାଇବା ସମ୍ଭବ ନୁହେଁ।

ଏଥର ଦେଖିବା ଅଣଆନୁଷ୍ଠାନିକ ଶିକ୍ଷା କଥା। ଏହାର ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ। ସଭାସମିତି, ଭାଷଣ, କର୍ମଶାଳା, ପ୍ରବଚନ, ଆଲୋଚନା ଚକ୍ର, ସାଂସ୍କୃତିକ କାର୍ଯ୍ୟକ୍ରମ



Digitized by PPRACHIN, SOA

ମାନଙ୍କର ଅବଦାନ ମହତ୍ତ୍ୱପୂର୍ଣ୍ଣ। ତେବେ ଏ ସବୁଥିରେ ଆଚରଣ ଓ ଉଚ୍ଚାରଣରେ ସାମଞ୍ଜସ୍ୟ, ନିଃସ୍ୱାର୍ଥପରତା, ସଚ୍ଚୋଟତା, ଚରିତ୍ରବତ୍ତା ସର୍ବୋପରି ଗଭୀର ଅନୁଭବ ରହିବା ଦରକାର। ଭାଷଣ ପାଇଁ ଭାଷଣ ନୁହେଁ, ଅନୁଭବ ବାଣ୍ଟିବା ପାଇଁ ଭାଷଣ ଉଦ୍ଦିଷ୍ଟ ହେବା ଉଚିତ। ଯଶ, ପ୍ରଶଂସା, ଅର୍ଥ ଓ ସ୍ୱାର୍ଥ ପାଇଁ ଆୟୋଜିତ ଅନୁଷ୍ଠାନମାନଙ୍କର ପ୍ରଭାବ ଶ୍ରୋତା ବା ଉପଭୋକ୍ତା ଉପରେ ବିଶେଷ ପଡ଼େ ନାହିଁ, ବରଂ ସବୁକିଛି ଶୁଷ୍କ, ନୀରସ ଓ ଯାନ୍ତ୍ରିକ ହୋଇଯାଏ।

ଏ ସବୁ ସହିତ ଘରେ ପିଲାଟିର, ଅନୁଷ୍ଠାନରେ ଛାତ୍ରଛାତ୍ରୀଙ୍କର, ଅଣ ଆନୁଷ୍ଠାନିକ ଧାରାରେ ଶ୍ରୋତା ବା କର୍ମୀଟିର ଶିଖିବା, ଜାଣିବା ଓ ବୁଝିବା ପାଇଁ ଆଗ୍ରହ ଥିବା ଦରକାର। ଶିଖିବା ସେତେବେଳେ ସାର୍ଥକ ହୁଏ ଯେତେବେଳେ ସେ ଅନ୍ୟକୁ ତାହା ଶିଖାଇ ପାରେ। ଜାଣିବା ସେତେବେଳେ ଫଳପ୍ରଦ ହୁଏ, ଯେତେବେଳ ସେ ତାହା ଅନ୍ୟକୁ ଜଣାଇପାରେ।

ପିଲାଦିନରୁ ଦେଶ ବିଷୟରେ ଏବଂ ବୟସକ୍ରମେ ବିଶ୍ୱ ସମ୍ପର୍କରେ ଶିକ୍ଷା ଏକାନ୍ତ ଜରୁରୀ। ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ସହିତ ମଣିଷ ପଣିଆର ଶିକ୍ଷା ଅପରିହାର୍ଯ୍ୟ। ମୂଲ୍ୟ ସହ ମୂଲ୍ୟବୋଧର ସମନ୍ୱିତ ଶିକ୍ଷା ତଥା ବାହ୍ୟ ଜୀବନ ସହିତ ଅନ୍ତର୍ଜୀବନର ସମନ୍ୱିତ ଶିକ୍ଷା ହିଁ ଯଥାର୍ଥ ଶିକ୍ଷା ଯାହା ଦ୍ୱାରା ଜଗତୀକରଣର ପୂର୍ଣ୍ଣତା କେବଳ ସମ୍ଭବ। ଏହି ଯଥାର୍ଥ ଶିକ୍ଷାରୁ ରସ ସଂଗ୍ରହ କରି ପରିପୁଷ୍ଟ ହେବ, ରାଜନୀତି, ଅର୍ଥନୀତି ଓ ସମାଜନୀତି। ସବୁ ଅସଜଡ଼ା ସଜାଡ଼ି ହୋଇଯିବ ବିଶ୍ୱଜୀବନରେ, ଆଉ ସେଇ ସଜଡ଼ା ପରିବେଶକୁ ନଇଁ ଆସିବ ସ୍ୱର୍ଗରୁ ସୌଭାଗ୍ୟ, ସମ୍ପଦ, ଲାବଣ୍ୟ ଓ ମାଧୁର୍ଯ୍ୟ।





Digitized by PPRACHIN, SOA

# ଜୀବନ ଚିନ୍ତା

ଜୀବନ ଚିନ୍ତା କହିଲେ ଅନେକ ବ୍ୟକ୍ତି ଦାନ, ଧ୍ୟାନ, ଧାରଣା, ଜପ, ତପ, ତୀର୍ଥାଟନ ପ୍ରଭୃତିକୁ ବୁଝିଥାନ୍ତି। ପ୍ରକୃତରେ ଏତିକିରେ ଜୀବନ ଚିନ୍ତା ସୀମିତ ନୁହେଁ, ଏହାକୁ ମିଶାଇ ଆହୁରି ଅନେକ କଥା ଜୀବନ ଚିନ୍ତାର ଅନ୍ତର୍ଭୁକ୍ତ ହୋଇପାରେ। ଏପରିକି ଜୀବନର ପ୍ରତ୍ୟେକ ଗତିବୃତ୍ତି ଅର୍ଥାତ୍ ଖାଇବା, ପିନ୍ଧିବା, ହସିବା, ଖେଳିବା ମଧ୍ୟ ଏହାର ଅଙ୍ଗୀଭୂତ ହୋଇପାରେ ଯଦି ସେସବୁକୁ ସଚେତନତାର ସହ ସମ୍ପନ୍ନ କରାଯାଇଥାଏ।

କର୍ମରେ ଛୋଟ ବଡ଼ର କୌଣସି ସ୍ଥାନ ନାହିଁ। ସବୁ କର୍ମର ମହତ୍ତ୍ୱ ଅଛି ଯଦି ସେଗୁଡ଼ିକ ଯଥା ସ୍ଥାନରେ, ଯଥା ସମୟରେ ଏବଂ ଯଥୋଚିତ ମନୋଭାବ ସହ ସମ୍ପାଦିତ ହୁଏ। କର୍ମ ସେତିକି ବେଳେ ଅପକର୍ମ ହୁଏ ଯେତେବେଳେ ତାହାର ଅପବ୍ୟବହାର କରାଯାଏ। ଅପବ୍ୟବହାରର ପ୍ରକ୍ରିୟା ଦୁଇଟି ମୁଖ୍ୟ ଶକ୍ତି ଦ୍ୱାରା ଘଟିଥାଏ। ସେଥିରୁ ଗୋଟିଏ ହେଉଛି ଅହଂ ଓ ଅନ୍ୟଟି ସ୍ୱାର୍ଥ। ଦୁଇଟିଯାକ ଗୋଟିଏ ମୁଦ୍ରାର ଦୁଇ ପାଖ ଭଳି ପରସ୍ପର ସହ ଓତପ୍ରୋତ ଭାବରେ ଜଡ଼ିତ। ଅହଂ ପ୍ରଣୋଦିତ କର୍ମ, କର୍ମୀର ଚେତନାକୁ କଳୁଷିତ କରିବା ସଙ୍ଗେ ସଙ୍ଗେ ପରିବେଶରେ ଆସୁରିକ ପ୍ରଭାବର ପ୍ରତିଷ୍ଠା କରିଥାଏ। ସ୍ୱାର୍ଥସର୍ବସ୍ୱ କର୍ମ ମଧ୍ୟ କର୍ମୀକୁ ବିପଥଗାମୀ କରିବା ସହିତ ବାତାବରଣକୁ ବିପର୍ଯ୍ୟସ୍ତ କରେ। ଅନ୍ୟପକ୍ଷରେ ଅହଂ ଓ ସ୍ୱାର୍ଥ ମୁକ୍ତ କର୍ମ, କର୍ମୀର ଚେତନାକୁ ବିକଶିତ କରାଇବା ସହ ପରିବେଶକୁ ସମୃଦ୍ଧ, ସଂହତ ଓ ସୁସ୍ଥ କରିଥାଏ, ଯାହାର ଫଳଶ୍ରୁତି ସ୍ୱରୂପ ବ୍ୟକ୍ତି-ଜୀବନ ଓ ସମାଜ ଜୀବନ ନିଜକୁ ଅତିକ୍ରମ କରିଯିବାର ସାମର୍ଥ୍ୟ ଅର୍ଜନ କରିଥାଏ। ଏପରି କର୍ମ ଆନନ୍ଦ ପାଇଁ କରାଯାଏ ନାହିଁ, ବରଂ କର୍ମ ପାଇଁ କର୍ମ ହିସାବରେ କରାଯାଏ। ଆନନ୍ଦ ପରିବର୍ତ୍ତେ କର୍ତ୍ତବ୍ୟ ପାଳନପୂର୍ବକ ଆତ୍ମସନ୍ତୋଷ ଏଥିରେ କର୍ମୀର ପ୍ରାପ୍ୟ। ପ୍ରତିଦାନର ଆଶା ବା ଅନ୍ୟ କୌଣସି ଫଳାଭିସନ୍ଧି ଏପରି କର୍ମରେ ନ ଥାଏ। କର୍ମ ଅଧିକରୁ ଅଧିକ ସଂଗଠିତ ହେବା ସଙ୍ଗେ ସଙ୍ଗେ କର୍ମକ୍ଳାନ୍ତି ଦୂରକୁ ଦୂରକୁ ଅପସରିଯାଏ। ବିଷାଦ ଓ ଅବସାଦର ସ୍ଥାନ ଏପରି କର୍ମ ବଳୟରେ ନଥାଏ।

ସେବା ଗୋଟିଏ ମହତ ଗୁଣ। ମାନବର ସେବାକୁ ମାଧବଙ୍କର ସେବା ବୋଲି ବିଚାର କରାଯାଏ। ମାତ୍ର କଥାଟି ଏତିକିରେ ସରେ ନାହିଁ। କିଏ ସେବକ, କିଏ ସେବ୍ୟ ବୁଝିହୁଏ ନାହିଁ। କିଏ କାହାର ସେବକ ଜାଣିହୁଏ ନାହିଁ। ସେବକ ହେବାପାଇଁ କିଛି



Digitized by PPRACHIN, SOA

ଯୋଗ୍ୟତା ଆବଶ୍ୟକ କି ନୁହେଁ - ଏହା ମଧ୍ୟ ମନରେ ପ୍ରଶ୍ନବାଚୀ ସୃଷ୍ଟି କରେ। ଅନ୍ୟପ୍ରତି ଦୟା, କ୍ଷମା, ସହନଶୀଳତା ତଥା ଆନ୍ତରିକତା ପ୍ରଦର୍ଶନ କରିବା ମଧ୍ୟ ସେବାର ଅନ୍ତର୍ଭୁକ୍ତ। ଏସବୁ ମୂଲ୍ୟହୀନ ନୁହେଁ। ତେବେ ଏଥିନିମନ୍ତେ ଯେଉଁ ଯୋଗ୍ୟତା ଆବଶ୍ୟକ, ତାହା ବିଚାର୍ଯ୍ୟ ବିଷୟ। କହିବାର ତାତ୍ପର୍ଯ୍ୟ ଏହି ଯେ ଜଣେ ଅନ୍ୟର ସେବକ ହେବା ପୂର୍ବରୁ ପ୍ରଥମେ ନିଜେ ନିଜର ସେବକ ହେବା ଆବଶ୍ୟକ। ବାହାର ଅଳିଆ ସଫା କରିବା ପୂର୍ବରୁ ନିଜ ଭିତରର ଅଳିଆ ଆଗ ସଫା କରିବା ଦରକାର। ଏହାର ଅର୍ଥ ହେଉଛି ସେବକ ଭିତରେ ବ୍ୟକ୍ତିଗତ ଯାବତୀୟ ଲାଭର ଲାଳସା, ଯଶ ପ୍ରଶଂସାର ବାସନାର ଅଳିଆ ଆବର୍ଜନାକୁ ସେ ନିଜେ ପ୍ରଥମେ ପରିଷ୍କାର କରିବା ଆବଶ୍ୟକ। ଅନ୍ୟଥା ସେବାର ବିଶେଷ କିଛି ଅର୍ଥ ନାହିଁ। ନିଜ ଭିତରେ ଦୁଃଖର କେନ୍ଦ୍ରବିନ୍ଦୁ, କଳହର ପ୍ରାଣକେନ୍ଦ୍ର, ଅସନ୍ତୋଷର ଭିତ୍ତିଭୂମି ରହିଛି। ସେସବୁକୁ ଚିହ୍ନି ତାକୁ ଦୂର ନ କଲାଯାଏ ଅନ୍ୟ ଭିତରୁ ତଥା ସମଗ୍ର ମାନବ ସମାଜ ଭିତରୁ ଦୁଃଖ, ଦୁର୍ଦ୍ଦଶା, କଳହ ଓ ଅସନ୍ତୋଷ ଦୂରୀଭୂତ ହେବ ନାହିଁ। ବ୍ୟକ୍ତିଟିଏ ଯେ ସମାଜ ଠାରୁ ବଡ଼, ଏକଥାଟି ଏଥିରୁ ବୁଝି ହେଉଅଛି। ନିଜର ସେବା କରିବା ଅର୍ଥ ନିଜକୁ ନିର୍ମଳ କରିବା ଏବଂ ଏହି ପ୍ରକ୍ରିୟା ଦ୍ୱାରା ସମାଜ ସେବା କରିବା ମାଧ୍ୟମରେ ବିଶ୍ୱସେବା କେବଳ ସମ୍ଭବ।

ତ୍ୟାଗ କହିଲେ ଆମେ ଆମ ପାଇଁ ଆବଶ୍ୟକୀୟ କେତେ ବସ୍ତୁର ତ୍ୟାଗକୁ ବୁଝୁ। ଏହା ଏକ ଭ୍ରମ। ପ୍ରକୃତରେ ଆମ ପାଇଁ ଅନାବଶ୍ୟକ ବସ୍ତୁ ବା ଭାବନାର ତ୍ୟାଗ ହିଁ ପ୍ରକୃତ ତ୍ୟାଗ ପଦବାଚ୍ୟ। ଭଲ ଖାଦ୍ୟକୁ ତ୍ୟାଗ କରିବା, ଦାମିକା ବସ୍ତ୍ର ପରିଧାନ ନ କରିବା, ଅର୍ଥକୁ ତ୍ୟାଗ କରିବାକୁ ଆମେ ତ୍ୟାଗୀର ବଡ଼ ସିଦ୍ଧି ବୋଲି କହୁ। ପ୍ରକୃତରେ କଥାଟି ସେପରି ନୁହେଁ। ସରଳ ଖାଦ୍ୟ ଗ୍ରହଣ କରୁଥିବା, ସାଧା ବସ୍ତ୍ର ପରିଧାନ କରୁଥିବା ଲୋକଟି ତ୍ୟାଗୀ ନ ହୋଇ ପାରେ ଯଦି ସେ କାମ, କ୍ରୋଧ, ହିଂସା, ଦ୍ୱେଷ, ପରଶ୍ରୀକାତରତା ସମେତ ବହୁ ଦୁର୍ଗୁଣକୁ ତ୍ୟାଗ କରି ନଥାଏ। ଅତଏବ ଆମର ଆନ୍ତର ଓ ବାହାରର ସଂହତିପୂର୍ଣ୍ଣ ଅଭିବ୍ୟକ୍ତି ପାଇଁ ଯାହା ବାଧକ ଆମେ ତାକୁ ତ୍ୟାଗ କରିବା ହିଁ ପ୍ରକୃତ ତ୍ୟାଗ। ଯେଉଁ ପ୍ରକାର ଚଳଣି, ଅଭ୍ୟାସ ଓ ପରିବେଶ ଆମର ଅଗ୍ରଗତିରେ ବାଧାଦିଏ, ତାହା ସର୍ବଥା ପରିତ୍ୟାଜ୍ୟ, ଯେଉଁ ଦୁର୍ଗୁଣ ଆମକୁ ଯନ୍ତ୍ରଣାରେ ଜର୍ଜରିତ କରେ, ସେସବୁକୁ ତ୍ୟାଗ କରିବା ଏକାନ୍ତ କାମ୍ୟ।

ନୀରବତା ହେଉଛି ମୁନିର ଲକ୍ଷଣ। ଏହ ଭାବରେ ଭାବିତ ହୋଇ ଜଣେଜଣେ ସପ୍ତାହରେ ଏକ ଦିନ ମୌନବ୍ରତ ଅବଲମ୍ବନ କରିଥାନ୍ତି ଓ ନିଜକୁ ଜଣେ ମହତ ଜନ ବୋଲି ମନେ କରନ୍ତି। ଅନ୍ୟମାନେ ମଧ୍ୟ ଏହି ଚିନ୍ତାଧାରାକୁ ଅନୁମୋଦନ କରି ସେ ବ୍ୟକ୍ତି ଉପରେ ଅବାଞ୍ଛିତ ଗୁରୁତ୍ୱଆରୋପ କରନ୍ତି। ପ୍ରକୃତ କଥାଟି ହେଉଛି ଗୋଟିଏ ଦିନ



Digitized by PPRACHIN, SOA

ଆଦୌ କଥା ନକହି ସମ୍ପୂର୍ଣ୍ଣ ନୀରବ ରହିଲେ ବ୍ୟକ୍ତି ବଡ଼ ହୁଏ ନାହିଁ। ବାକ୍ ସଂଯମ ହିଁ ବ୍ୟକ୍ତିକୁ ବଡ଼ କରେ। ଯେତିକି ଆବଶ୍ୟକ ସେତିକି କଥା କହିବା, ଟିକିଏ ଅଧିକା ନ କହିବା ହିଁ ଯଥାର୍ଥ ବାକ୍‌ସଂଯମ। ଭାବନାର ସଂଯମ ଏହାର ମୂଳତତ୍ତ୍ୱ। ମନକୁ ଆୟତ୍ତ କଲେ ଭାବନାରେ ସଂଯମ ଆସେ। ଅତଏବ ଆୟତ୍ତ ମନର ଅନୁମୋଦନରେ ଆବଶ୍ୟକୀୟ ବକ୍ତବ୍ୟ ହିଁ ପ୍ରକୃତ ବକ୍ତବ୍ୟ। ତାହା ମଧ୍ୟ ଉଚ୍ଚକୋଟୀର ବାଗ୍ମିତାର ଅନ୍ତର୍ଭୁକ୍ତ। କଥା କହିବା ଆଗରୁ ଭାବିବା ମଧ୍ୟ ବାକ୍ ସଂଯମର ଅନ୍ୟ ଏକ ବିଶିଷ୍ଟ ଦିଗ। ଆମେ ସାଧାରଣତଃ କହୁ କହୁ ଅନେକ କଥା କହିପକାଉ। ପଛରେ ଭାବୁ କାହିଁକି କହିଲୁ ବୋଲି, ସେଥିପାଇଁ ବହୁ ସମସ୍ୟା ମଧ୍ୟ ବେଳେବେଳେ ଆସି ଦେଖାଦିଏ। ଆଗରୁ ଭାବି କଥା କହିଲେ ଏତେ ସମସ୍ୟାର ସୃଷ୍ଟି ହୁଅନ୍ତା ନାହିଁ ଏବଂ ବହୁ ଅଶାନ୍ତିରୁ ରକ୍ଷା ମିଳନ୍ତା। ଆମେ ପ୍ରାୟତଃ ଲକ୍ଷ୍ୟ ଓ ମାଧ୍ୟମ ଭିତରେ ପାର୍ଥକ୍ୟ ବୁଝିପାରୁ ନାହିଁ, ବୁଝିଲେ ମଧ୍ୟ ସର୍ବଦା ସ୍ମରଣ ରଖିପାରୁନାହିଁ। ଫଳତଃ ଲକ୍ଷ୍ୟକୁ ମାଧ୍ୟମ ବୋଲି ଓ ମାଧ୍ୟମକୁ ଲକ୍ଷ୍ୟ ବୋଲି ବିଚାର କରୁ। ସମୟକ୍ରମେ ସମାଜରେ ଭିନ୍ନଭିନ୍ନ ଧର୍ମଧାରା ଓ ଚଳଣି ସୃଷ୍ଟି ହୋଇଛି। ପଦ୍ଧତିରେ ଭିନ୍ନତା ଥିଲେ ହେଁ ଏସବୁର ସୃଷ୍ଟି ହୋଇଛି ମାନବ ଚେତନାର ବିକାଶ ପାଇଁ। ପ୍ରତ୍ୟେକ ଧର୍ମ, ସଂସ୍କୃତିର ଲକ୍ଷ୍ୟ ଏକ, ତାହା ହେଉଛି ମାନବ ଜାତିର କଲ୍ୟାଣ ସାଧନ। ଲକ୍ଷ୍ୟ ଉପରେ ଗୁରୁତ୍ୱ ନ ଦେଇ ମାଧ୍ୟମକୁ ଲକ୍ଷ୍ୟ ବୋଲି ବିଚାର କରିବା ହେତୁ ମନରେ ସଂକୀର୍ଣ୍ଣତା ସୃଷ୍ଟି ହୁଏ, ଫଳ ସ୍ୱରୂପ ସାମ୍ପ୍ରଦାୟିକ କଳହ ସୃଷ୍ଟି ହୁଏ। ଆମେ ଯଦି ନିଜ ସଂସ୍କୃତିକୁ, ନିଜ ଧର୍ମକୁ ସର୍ବୋପରି ନିଜକୁ ବୁଝିଥାନ୍ତୁ, ତେବେ ଅନ୍ୟ ସଂସ୍କୃତିକୁ, ଅନ୍ୟ ଧର୍ମକୁ ତଥା ଅନ୍ୟକୁ ବୁଝିବାକୁ ଆଦୌ ଅସୁବିଧା ହୁଅନ୍ତା ନାହିଁ। ସତ୍ୟ ହେଉଛି ଏକ ଅଦ୍ୱିତୀୟ – ଏତିକି ବୁଝିଲେ ମାଧ୍ୟମକୁ ନେଇ ମତାନ୍ତର ଓ ମନାନ୍ତର କେତେ ଅପ୍ରାସଙ୍ଗିକ ତାହା ସହଜରେ ଅନୁମେୟ।

ଆଉ ଏକ ମାନସିକତା ଆମ ଭିତରେ ଅଛି ଯାହାକୁ ନେଇ ଆମେ ଭାବୁ ଯେ ସେହି ବ୍ୟକ୍ତି ହେଉଛି ମହାନ୍ ଯାହାର ଦୁଃଖ ବା ସୁଖର ଅନୁଭବ ନାହିଁ। ଏହା ଏକ ଭ୍ରମ। କଥାଟି ହେଲା ସେହି ବ୍ୟକ୍ତି ହେଲା ମହାନ୍ ଯିଏ ନିଜ ଦୁଃଖ ଓ ସୁଖକୁ ଅନୁଭବ କରି ପ୍ରତିକ୍ରିୟା ପ୍ରକାଶରେ ସଂଯମ ଆଚରଣ କରିଥାଏ। ଅନୁଭବ ଶକ୍ତି ନ ରହିଲେ ମହାନ ହେବା ତ ଦୂରର କଥା ମଣିଷ ସାଧାରଣ ମଣିଷ–ହୋଇ ରହିବ ନାହିଁ। ଅନୁଭବ ହିଁ ଯଥାର୍ଥ ବ୍ୟକ୍ତିତ୍ୱର ମାପକାଠି। ଅନ୍ୟର ଦୁଃଖରେ ଦୁଃଖୀ ହେବା ଏବଂ ଅନ୍ୟର ସୁଖରେ ସୁଖୀ ହେବାର ମାନସିକତା ହେଉଛି ମହାନୁଭବତାର ଫଳଶ୍ରୁତି। ଯାହାର ଚେତନା ଯେତିକି ବିକଶିତ ସେ ସେତିକି ଅନ୍ୟ ସ୍ଥାନରେ ନିଜକୁ ରଖି ପରିସ୍ଥିତିକୁ ବିଚାର କରିପାରେ। ଅନ୍ୟର ଦୁଃଖରେ ସମଭାଗୀ ହେବା ସଙ୍ଗେସଙ୍ଗେ ଅନ୍ୟର ଦୁଃଖ ଦୂର କରିବା ପାଇଁ ନିଜ



Digitized by PPRACHIN, SOA

ଶକ୍ତି ଅନୁଯାୟୀ ପ୍ରୟାସ ଓ ପ୍ରଚେଷ୍ଟା ଜୀବନକୁ ଧନ୍ୟ କରିଥାଏ। ଏପରି ଯେ ଆମେ ନିଜକୁ ବଡ଼ ଓ ଅନ୍ୟକୁ ସାନ ବୋଲି ଭାବୁ। ଏହାଦ୍ୱାରା ଆମର କିଛି ଲାଭ ହୁଏ ନାହିଁ, କେବଳ ଅହଂ ସ୍ଫୀତ ହୁଏ। ଅନ୍ୟ ପକ୍ଷରେ ଅନ୍ୟକୁ ବଡ଼ ଭାବି ନିଜକୁ ତୃଣାଦପି ସୁନୀଚେନ ବୋଲି ଭାବିବା ମଧ୍ୟ ଅନ୍ୟ ଏକ ଭୁଲ କଥା। ଏଥିରେ ମଧ୍ୟ ଆମର କିଛି ଲାଭ ହୁଏ ନାହିଁ, ଛଳନାଯୁକ୍ତ ହୀନମଣ୍ୟତା କେବଳ ବୃଦ୍ଧିପାଏ। ପ୍ରକୃତ କଥାଟି ହେଉଛି ନିଜକୁ ବଡ଼ ବା ସାନ ବୋଲି ନ ବିଚାରି ନିଜେ ଯାହା ନିଜକୁ ତାହା ବିଚାରିବା ଉଚିତ। ଅନ୍ୟ ସହିତ ତୁଳନାର କୌଣସି ଆବଶ୍ୟକତା ନାହିଁ। ନିଜକୁ ଟିକିଏ ଅଧିକା ବିଚାରିବା ଯେପରି ଅସୁବିଧା ଜନକ, ଟିକିଏ କମ୍ ବିଚାରିବା ସେପରି କ୍ଷତିକାରକ। ପୁନଶ୍ଚ ଅନ୍ୟକୁ ସୁବିଧା ପାଇଲେ ଆମେ ସମାଲୋଚନା କରୁ। ଆମେ ଭଲ ଏବଂ ଅନ୍ୟମାନେ ଖରାପ ଏକଥା ଏହି ସମାଲୋଚନା ମାଧ୍ୟମରେ ପ୍ରକଟ କରୁ। ଏହାଦ୍ୱାରା ଆମର କୌଣସି ଲାଭ ହୁଏ ନାହିଁ ବରଂ ଆମ ଚେତନା କଳୁଷିତ ହୁଏ। ଆମେ ଯଦି ଅନ୍ୟକୁ ବଦଳାଇ ନ ପାରିବା ତେବେ ସମାଲୋଚନା ନିରର୍ଥକ। କାରଣ ଅନ୍ୟକୁ ଉପଦେଶ ଦେଇ ବଦଳାଇବା ଏକ ଦୁରୁହ ବ୍ୟାପାର ପ୍ରାୟତଃ ଏକ ପ୍ରକାର ଅସମ୍ଭବ କହିଲେ ଚଳେ। ଏ ଅବସ୍ଥାରେ ଅନ୍ୟକୁ ସମାଲୋଚନା କରିବାର ଅର୍ଥ ନିଜକୁ ସମାଲୋଚନା କରିବା, ନିଜର ଅଶେଷ କ୍ଷତି ସାଧନ କରିବା। ନିଜକୁ ସଂଶୋଧନ କରିବାର ଦାୟିତ୍ୱ ଓ ଅଧିକାର ଆମର ଅଛି, ଅନ୍ୟକୁ ନୁହେଁ। ଉପଦେଶ ନ ଦେଇ ଉଦାହରଣ ହେଲେ ହୁଏତ ଅନ୍ୟର ବଦଳିବାର ପଥ ପ୍ରଶସ୍ତ ହୋଇପାରେ। ଅତଏବ ଆତ୍ମବିଶ୍ଳେଷଣ ଓ ଆତ୍ମସଂଶୋଧନ ହିଁ ଅସଲ କଥା ଯାହା ଜୀବନକୁ ନବ ମୂଲ୍ୟରେ ବିମଣ୍ଡିତ କରିବ।

ସମ୍ପ୍ରତି ପୃଥିବୀରେ ସମ୍ପଦ, ସୁବିଧା ବଢ଼ିଛି, ମଣିଷ ବିତ୍ତଶାଳୀ ହୋଇଛି, ହେଲେ ଯେତେ ସୌଭାଗ୍ୟବନ୍ତ ହେବା କଥା ହୋଇନାହିଁ। ତା' ମନରେ ଅହେତୁକୀ ଭୟ ସନ୍ଦେହ ଓ ହତାଶା ଘନୀଭୂତ ହେଉଛି। ଭୟରୁ ବିଦ୍ରୋହ, ସନ୍ଦେହରୁ ସଂକୀର୍ଣ୍ଣତା ଓ ହତାଶାରୁ ଅସ୍ଥିରତା ସୃଷ୍ଟି ହୋଇ ବାତାବରଣକୁ ଭାରାକ୍ରାନ୍ତ କରୁଛି। କେଉଁଠାରୁ ଆସୁଛି ଏତେ ନକାରାତ୍ମକତାର ମେଞ୍ଚା ମେଞ୍ଚା ଅନ୍ଧାର, ବୁଝି ହେଉନାହିଁ। ମଣିଷର ମନ ନିରାଶାରେ ଜର୍ଜରିତ ହେବାରୁ ସାହିତ୍ୟରେ ସଂଗୀତରେ ସେହି ହତାଶା ଆତ୍ମ ରୂପାୟିତ ହେଉଛି, ଜୀବନ ହୋଇପଡୁଛି ଅଶାନ୍ତ ଓ ବିପର୍ଯ୍ୟସ୍ତ। ଏତେବେଳେ ଇଚ୍ଛା କରି ଆଶା, ଆଗ୍ରହ, ଅନ୍ୟପ୍ରତି ଆନ୍ତରିକତାକୁ ମନରେ ଧରି ରଖିଲେ ମନରୁ ହତାଶା, ଅଶାନ୍ତି କ୍ରମଶଃ ଅପସରି ଯିବ। ପରିବେଶରେ ସକାରାତ୍ମକ ଭାବତରଙ୍ଗ ଭରିଯିବ। ଜୀବନ ହୋଇଉଠିବ ସ୍ୱର୍ଗର ସୁଶୀଶୋଭନ ଏକ କାରୁଶିଳ୍ପ, ଅପାର୍ଥିବ ଆନନ୍ଦର ଏକ ମଧୁଭରା କାବ୍ୟ।

ଆମର ଆଉ ଏକ ସାଧାରଣ ଅଭିଯୋଗ ଅଛି। ଆମର ଧାରଣା ଆମକୁ ଅନ୍ୟମାନେ ଯେତେ ଆଦର କରିବା କଥା ସେତେ ଆଦର କରୁନାହାନ୍ତି, ଆମକୁ ଯେତେ ଗୁରୁତ୍ୱ



Digitized by PPRACHIN, SOA

ଦେବା କଥା ସେତେ ଗୁରୁତ୍ୱ ଦେଉନାହାନ୍ତି। ଫଳରେ ଆମକୁ ନିଃସଙ୍ଗତାବୋଧ ଗ୍ରାସ କରିଛି, କିଛି ଭଲ ଲାଗୁନାହିଁ, ଚାରିଆଡ଼ ଖାଁ ଖାଁ ଲାଗୁଛି, ଜୀବନରେ ଆନନ୍ଦ ପରିବର୍ତ୍ତେ ବିଷାଦର ଛାୟା କାୟା ବିସ୍ତାର କରିବାରେ ଲାଗିଛି। ଏହା ଏକ ଭ୍ରମ। ପ୍ରକୃତରେ ଆମକୁ ଏକା ଏକା ଲାଗୁଛି। କାରଣ ଆମେ ଅନ୍ୟକୁ ଆଦର ନକରି କେବଳ ଆଦୃତ ହେବାକୁ ଚାହୁଁଛୁ। ଅନ୍ୟକୁ ଆଦର କଲେ ଏକାକୀତ୍ୱବୋଧ ଚାଲିଯିବା ସଙ୍ଗେ ସଙ୍ଗେ ମନରେ ଅଶେଷ ଆନନ୍ଦର ପ୍ଲାବନ ଆସିବ। ଏ ଆନନ୍ଦର ସ୍ୱାଦ ସ୍ୱତନ୍ତ୍ର ଯାହା ଅନ୍ୟ କେଉଁଥିରୁ ମିଳେ ନାହିଁ। ଏ ଆନନ୍ଦର ପ୍ରଭାବ ଏତେ ଅଧିକ ଯେ ଏହାର ପ୍ରଭାବରେ ବିଷାଦର ସ୍ଥିତି ଯେ ଦୋହଲିଯିବ ଏବଂ ବିଲୟ ଘଟିବ, ଏଥିରେ ବହୁଭାଷଣ ନାହିଁ।

ଆମର ଆଉ ଏକ ଦୁର୍ବଳତା ରହିଛି ଯେ ଆମେ ଅନ୍ୟଲୋକଙ୍କ କଥାରେ ସ୍ପର୍ଶକାତର ହୋଇ ବିଚଳିତ ହୋଇପଡୁ। ଲୋକଙ୍କର କାମ ଯେ କହିବା, ଆମେ ତାହା ସେତେବେଳେ ଭୁଲିଯାଉ। ଲୋକେ ଯାହା କଲେ ବି କହିବେ, ଏକଥା ଆମେ ବୁଝି ମଧ୍ୟ ପାରୁନା। ବାପପୁଅ ଓ ଗଧ କଥା ତର୍ଜମା କଲେ ଏକଥାଟିର ଅର୍ଥ ଭଲ ଭାବରେ ବୁଝି ହେବ।

ବାପପୁଅ ଉଭୟ ଗଧଟିର ପିଠିରେ ବସିକରି ଗଲା ବେଳେ ଲୋକମାନେ ଗଧର ଦୁଃଖରେ ଦୁଃଖିତ ହୋଇ ବାପପୁଅ ଦୁହିଁଙ୍କୁ ନିଷ୍ଠୁର ବୋଲି କହିଲେ। ଏହା ଶୁଣି ବାପ ଓହ୍ଲାଇ ପଡ଼ି ଚାଲି ଚାଲି ଗଲେ ଏବଂ ପୁଅ ଗଧ ପିଠିରେ ବସିକରି ଗଲା। ବାପର ଚାଲିବା ଦେଖି ଲୋକମାନେ ପୁଅକୁ ଦୁଷ୍ଟ ନିଷ୍ଠୁର କୁଳାଙ୍ଗାର ଆଖ୍ୟା ଦେଲେ। ଏକଥା ଶୁଣି ପୁଅ ଓହ୍ଲାଇ ପଡ଼ିଲା ଓ ବାପ ଗଧ ପିଠିରେ ବସିଲା। ପୁଅକୁ ଚାଲିବାର ଦେଖି ଲୋକମାନେ ବାପକୁ ନିର୍ଦ୍ଦୟ ହୃଦୟହୀନ ସ୍ୱାର୍ଥପର ବୋଲି କହିଲେ। ଏହାଶୁଣି ବାପ ଓହ୍ଲାଇପଡ଼ିଲା ଏବଂ ଗଧର ଦୁଇପଟେ ଦୁହେଁ ଚାଲିବାକୁ ଆରମ୍ଭ କଲେ। ଏହା ଦେଖି ଲୋକମାନେ ପୋଷା ଗଧ ସହ ଚାଲି ଚାଲି ଯାଉଥିବାରୁ ବାପପୁଅ ଉଭୟଙ୍କୁ ବୋକାବୋଲି କହିଲେ। ଏଥିରୁ ଏହା ସ୍ପଷ୍ଟ ଯେ ଯାହା କଲେ ମଧ୍ୟ ଲୋକ କହିବେ ହିଁ କହିବେ। ଲୋକଙ୍କ କଥାରେ ନିଜକୁ ଉତ୍ପୀଡ଼ିତ ହେବାକୁ ଦେବା ଅର୍ଥ ନିଜର ଅଗ୍ରଗତିର ପଥକୁ ନିଜେ ରୁଦ୍ଧ କରିବା; ଉତ୍ପୀଡ଼ିତ ହେବାକୁ ନ ଦେବା ଅର୍ଥ ନିଜେ ନିଜକୁ ଅତିକ୍ରମ କରିଯିବା।

ଦେହରେ ଅସୁରର ଶକ୍ତି ସହିତ ହୃଦୟରେ ଓ ବୁଦ୍ଧିରେ ଦେବ ଚରିତ୍ର ଓ ଦେବଜ୍ଞାନ ସମନ୍ୱିତ ହେଲେ ଜୀବନ ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହୁଏ। ଶରୀରର ସୁସ୍ଥତା ଓ ସାମର୍ଥ୍ୟ ସାର୍ଥକ ଜୀବନ ପାଇଁ ଏକ ଅପରିହାର୍ଯ୍ୟ ଆବଶ୍ୟକତା। ଶରୀର ହେଉଛି ଏକ ଯନ୍ତ୍ର ଯାହାକୁ ଅନେକ ଖାଲ ଢିପ ବାଟ ଦେଇ ଚାଲିବାକୁ ପଡ଼େ। ଯନ୍ତ୍ର ସୁସ୍ଥ ନରହିଲେ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପୂର୍ବରୁ ତାହା ଅବଶ ଓ ଅକର୍ମଣ୍ୟ ହୋଇପଡ଼େ। ତେଣୁ କୁହାଯାଏ-



Digitized by PPRACHIN, SOA

'ଶରୀର ମାଦ୍ୟଂ ଖଲୁ ଧର୍ମ ସାଧନମ୍।' ଅତଏବ ଶରୀରର ଯତ୍ନ ସର୍ବାଦୌ ଆବଶ୍ୟକ। ଅବଶ୍ୟ କେବଳ ସୁସ୍ଥ ଶରୀର ଯଥେଷ୍ଟ ନୁହେଁ, ଏହା ସହିତ ଦିବ୍ୟଭାବ ଥିବା ମନ ଓ ହୃଦୟର ସମାବେଶ ସ୍ପୃହଣୀୟ। ଶରୀରର ଶକ୍ତି ଓ ପ୍ରାଣର ଶକ୍ତି ରୂପକ ଅଶ୍ୱ ନିମନ୍ତେ ଏପରି ମନ ଓ ହୃଦୟ ଲଗାମ୍ ସଦୃଶ କାର୍ଯ୍ୟ କରିଥାଏ। ଲଗାମ୍ ଯୁକ୍ତ ଅଶ୍ୱର ଗତିକୁ ପ୍ରଗତି ବୋଲି କୁହାଯିବା ବେଳେ ଲଗାମ୍ ବିହୀନ ଅଶ୍ୱର ଗତିକୁ ପ୍ରଗତି ବୋଲି ଆଦୌ କୁହାଯିବ ନାହିଁ।

ଅର୍ଥ ଅନର୍ଥର କାରଣ ବୋଲି କିଏ କିଏ କହିଥାନ୍ତି। ଏହା ଏକ ଭ୍ରମ ଧାରଣା। ଅର୍ଥର ଅପବ୍ୟବହାର ହିଁ ପ୍ରକୃତରେ ଅନର୍ଥର କାରଣ। ଅର୍ଥ ଗୋଟିଏ ଶକ୍ତି। ଜୀବନର ଭୌତିକ ତଥା ବାସ୍ତବ ଦିଗନ୍ତର ଅଭିବୃଦ୍ଧି ଏବଂ ପରିପୂର୍ଣ୍ଣତା ନିମନ୍ତେ ଏହାର ଅବଦାନ ଅନସ୍ୱୀକାର୍ଯ୍ୟ। ଅର୍ଥ ଯେଉଁସବୁ ଆବଶ୍ୟକୀୟ ଉପକରଣ ବା ବସ୍ତୁ ଆଣିଦିଏ ତାହା ଜୀବନର ବିକାଶରେ ସହାୟତା କରେ। ଜୀବନରେ ଦାରିଦ୍ର୍ୟ ଆଦୌ ବରଣୀୟ ନୁହେଁ, ଅନ୍ୟ ପକ୍ଷରେ ଅର୍ଥ ବା ବସ୍ତୁର ଦାସତ୍ୱ ସ୍ୱୀକାର ମଧ୍ୟ ଅନୁମୋଦନୀୟ ନୁହେଁ। ଅର୍ଥ ବା ବସ୍ତୁର ମାଲିକତ୍ୱ ବଞ୍ଚିବାର କଳାକୁ ସମୁଜ୍ଜ୍ୱଳ କରେ। ମାଲିକ ହେବା ଅର୍ଥ ଏଥିରୁ ବୈରାଗୀ ପରି ସଂକୋଚରେ ମୁଖ ଫେରାଇ ନ ନେବା ଏବଂ ପକ୍ଷାନ୍ତରେ ଏସବୁ ପ୍ରତି କୌଣସି ରାଜସିକ ଆସକ୍ତି ପୋଷଣ ନ କରିବା। ଅତଏବ ଏହା ସ୍ୱୀକାର୍ଯ୍ୟ ଯେ ସତ୍ ଉପାୟରେ ଅର୍ଥ ଉପାର୍ଜନ ଆଦୌ ଦୋଷାବହ ନୁହେଁ। ଉପାର୍ଜିତ ଅର୍ଥର ଠୁଳୀକରଣ ପରିବର୍ତ୍ତେ ତାହାର ସଦ୍‌ବ୍ୟବହାର ଅଭିନନ୍ଦନୀୟ। ଏହି ସଦ୍‌ବ୍ୟବହାର ମାଧ୍ୟମରେ ବ୍ୟକ୍ତି ବିକାଶର ବେଗ ତ୍ୱରାନ୍ୱିତ ହେଇପାରେ। ସଦ୍‌ବ୍ୟବହାରର ଅର୍ଥ କେବଳ ଯଜ୍ଞାନୁଷ୍ଠାନ, ଦରିଦ୍ର ଭୋଜନ, ଧର୍ମାନୁଷ୍ଠାନ ନିର୍ମାଣ ନୁହେଁ ବରଂ ଯାହା ପ୍ରତି ଯେତିକି କର୍ତ୍ତବ୍ୟ ରହିଛି ତାହାର ପରିପୂରଣ। ଏ କର୍ତ୍ତବ୍ୟବୋଧର ପରିସର ପରିବାରଠାରୁ ସମାଜ ପୁଣି ରାଷ୍ଟ୍ର ପର୍ଯ୍ୟନ୍ତ ପରିବ୍ୟାପ୍ତ।

ଆଜି ସମାଜ ଅପେକ୍ଷା ବ୍ୟକ୍ତି ଅଧିକ ଗୁରୁତ୍ୱପୂର୍ଣ୍ଣ ଭୂମିକାର ଅଧିକାରୀ। ବ୍ୟକ୍ତିମାନଙ୍କର ସମଷ୍ଟିରେ ସମାଜର ସ୍ଥିତି। ତେଣୁ ବ୍ୟକ୍ତିଜୀବନର ମହତ୍ତ୍ୱକୁ ନେଇ ସମାଜ-ଜୀବନ ପରିପୁଷ୍ଟ ହେବା କେବଳ ସମ୍ଭବ। ଅତଏବ ବ୍ୟକ୍ତି-ଜୀବନ ଆଦୌ ଅବାଂଛିତ ବିଷୟ ନୁହେଁ, ବ୍ୟକ୍ତି ଆଦୌ ଅବହେଳାର ପାତ୍ର ନୁହେଁ। ବରଂ ସଂଗଠିତ ଓ ସୁଗଠିତ ବ୍ୟକ୍ତି ଜୀବନକୁ ଏକ ଦୀପଶିଖା ବୋଲି କୁହାଯାଇପାରେ। ଗୋଟିଏ ଦୀପର ଶିଖା ସମୟକ୍ରମେ ଶହ ଶହ ଦୀପକୁ ପ୍ରଜ୍ୱଳିତ କରିପାରେ। ସେହି ପ୍ରଜ୍ୱଳିତ ଶହଶହ ଦୀପଶିଖାର ଆଲୋକ ପାଇଁ ଆଜି ସାରା ବିଶ୍ୱ ପ୍ରତୀକ୍ଷମାଣ।





Digitized by PPRACHIN, SOA

# ଧନ ଅର୍ଜନେ ଧର୍ମ କରି

'ଧନ ଅର୍ଜନେ ଧର୍ମ କରି'- କଥାଟିର ନିଗୂଢ଼ ଅର୍ଥ ରହିଛି। ସାଧାରଣ ଅର୍ଥରେ ବୁଝାଯାଏ ଯେ ଧନ ଅର୍ଜନ ଦ୍ୱାରା ଧର୍ମକାର୍ଯ୍ୟ କରାଯାଏ ଏବଂ ସେହି ଧର୍ମ କାର୍ଯ୍ୟ ଦ୍ୱାରା ଭଗବାନଙ୍କୁ ପ୍ରାପ୍ତ କରାଯାଏ। ଆହୁରି ଟିକିଏ ତର୍ଜମା କଲେ ବୁଝିହେବ ଯେ ଧନ ଦ୍ୱାରା ଯେତେ ଯେତେ କଥାହାସଲ କରାଯାଇପାରେ ସେଥି ମଧ୍ୟରୁ ଶ୍ରେଷ୍ଠ କଥାଟି ହେଉଛି ଧର୍ମ ବାଟ ଦେଇ ଭଗବତ ପ୍ରାପ୍ତି। ଆଉ ଯେତେ ଯେତେ କଥା ଅର୍ଥାତ ଯଶ, କ୍ଷମତା ଓ ପତିପ୍ରତ୍ତି ଇତ୍ୟାଦି। ଭଗବତ ପ୍ରାପ୍ତି ଅର୍ଥ ଭଗବତ କୃପା ପ୍ରାପ୍ତି।

ବର୍ତ୍ତମାନ ଦେଖିବା ଧର୍ମ କହିଲେ କ'ଣ ବୁଝାଯାଏ ? ଧର୍ମ ହେଉଛି ଏକ ଶକ୍ତି, ଏକ ସାମର୍ଥ୍ୟ ଯାହା ସବୁ କିଛିକୁ ଧାରଣ କରି ରହିଛି। ସୂର୍ଯ୍ୟ ଚନ୍ଦ୍ରଙ୍କ ଠାରୁ ଆରମ୍ଭ କରି ପଶୁପକ୍ଷୀ କୀଟପତଙ୍ଗ ପର୍ଯ୍ୟନ୍ତ ସବୁକିଛିକୁ ଧରିରଖିଛି ଧର୍ମ। ପୁଣି ସବୁ କିଛିର ମଧ କିଛି କିଛି ଧର୍ମ ରହିଛି। ଏଇ ଯେମିତି ଜଳର ଧର୍ମ ନିମ୍ନକୁ ଗଡ଼ିଯିବା, ଅଗ୍ନିର ଧର୍ମ ଉର୍ଦ୍ଧ୍ୱକୁ ଶିଖା ତୋଳିବା, ବୃକ୍ଷର ଧର୍ମ ଆଲୋକ ଅଭିମୁଖୀ ହେବା, ପବନର ଧର୍ମ ପ୍ରବାହିତ ହେବା, ପଶୁପକ୍ଷୀଙ୍କର ଧର୍ମ ପ୍ରକୃତି ଦ୍ୱାରା ପରିଚାଳିତ ହେବା ଇତ୍ୟାଦି ଇତ୍ୟାଦି। ଏଠାରେ ମଣିଷର କଥା କୁହାଯାଇଛି। ମଣିଷର ଧର୍ମ ହେଉଛି ବିବେକ ବିଚାର ସହ ଚଳିବା। ଅନ୍ୟ ଭାଷାରେ ଏହାକୁ ମାନବିକତା ବୋଲି କୁହାଯାଇପାରିବ ଯାହାର ଅନ୍ୟନାମ ମାନବ ଧର୍ମ।

ଧର୍ମ ସହ କର୍ମ ଜଡ଼ିତ। କର୍ମକୁ ବାଦ୍ ଦେଲେ ଧର୍ମର ଅଭିବ୍ୟକ୍ତିନାହିଁ କି ଧର୍ମକୁ ଛାଡ଼ି ଦେଲେ କର୍ମର ସ୍ଥିତି ନାହିଁ। ଉଭୟେ ପରସ୍ପରର ପରିପୂରକ। ଧର୍ମ ବିହୀନ କର୍ମ ହେଉଛି ଛିନ୍ନ ମୂଳ। ଅତଏବ ଧର୍ମ ଯେଉଁଠି କର୍ମ ସେଇଠି ଏବଂ କର୍ମ ଯେଉଁଠି ଧର୍ମ ସେଇଠି। ଧର୍ମ କହିଲେ କୌଣସି ସମ୍ପ୍ରଦାୟକୁ ବୁଝିବା ନାହିଁ, ବୁଝିବା ବିବେକାନୁମୋଦିତ ଚେତନାକୁ। ଲାଭ କ୍ଷତିର ଅଙ୍କ ନ କଷି କର୍ତ୍ତବ୍ୟ ଭାବରେ ଯେଉଁ କର୍ମ କରାଯାଏ ତାହା ହେଉଛି ବିବେକାନୁମୋଦିତ କର୍ମ। ଏ କର୍ମ ପରିବାର ପାଇଁ ହୋଇପାରେ ବନ୍ଧୁବାନ୍ଧବଙ୍କ ପାଇଁ ହୋଇପାରେ, ସମାଜ ପାଇଁ, ଜାତି ପାଇଁ ତଥା ଦେଶ ପାଇଁ ମଧ ହୋଇପାରେ। ପରିବାରରେ ଥିବା ଅସମର୍ଥ, ବାର୍ଦ୍ଧକ୍ୟ ପ୍ରପୀଡ଼ିତ ବ୍ୟକ୍ତି, ଅସହାୟ ତଥା ଅସୁବିଧା ଗ୍ରସ୍ତ ବ୍ୟକ୍ତିଙ୍କ ପାଇଁ ଯେତିକି ସମ୍ଭବ ଟଙ୍କା ପଇସା, ସୌଭାଗ୍ୟ ସମ୍ପଦ ଦିଆଯାଇପାରେ। ତାହା ହିଁ ତୀର୍ଥ ପର୍ଯ୍ୟଟନଠାରୁ ମଧ ଅଧିକ ବଡ଼କାର୍ଯ୍ୟ। ଅବଶ୍ୟ ପରିବାରରେ ଥିବା କର୍ମ ବିମୁଖ,



Digitized by PPRACHIN, SOA

ଆଳସ୍ୟ ପରାୟଣ ବ୍ୟକ୍ତିଙ୍କ କଥା ଏଠାରେ କୁହାଯାଉନାହିଁ। ଯେଉଁମାନଙ୍କର କର୍ମ ପାଇଁ ଆଗ୍ରହ ଅଛି, ମାତ୍ର ଅସୁସ୍ଥତା, ଅସହାୟତା, ଶକ୍ତିହୀନତା ଏବଂ ପରିବେଶଗତ ବିଶେଷ ଚାପ ଯୋଗୁ କର୍ମ କରିବା ସେମାନଙ୍କ ପକ୍ଷେ ସମ୍ଭବ ହେଉନାହିଁ, ସେହିମାନଙ୍କ କଥା ଏଠାରେ ବିଚାରକୁ ନିଆଯାଇଛି। ସେମାନଙ୍କୁ ଆର୍ଥିକ ସହଯୋଗ ବା ମାନସିକ ସହଯୋଗ ହିଁ ଏକ ଏକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ।

ସମାଜରେ ଯେଉଁମାନେ ଅସମର୍ଥ, ଶକ୍ତିହୀନ, ଅସହାୟ ସେମାନଙ୍କୁ ସହଯୋଗ କରିବା ହିଁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ କଥା। ଅବଶ୍ୟ ଦାନୀ ହେବାପାଇଁ ନୁହେଁ କି ବଦାନ୍ୟ ବ୍ୟକ୍ତିରେ ଗଣା ହେବା ପାଇଁ ନୁହେଁ। ଦେବାର ଆନନ୍ଦ ହିଁ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କଥା। ଅର୍ଥର ପରିମାଣ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ ବରଂ ଏହା ପଛରେ ଥିବା ମନୋଭାବଟି ହେଉଛି ଅସଲ କଥା। ସେହି ମନୋଭାବର ମାପକାଠିରେ ଧର୍ମର ମହତ୍ତ୍ୱ ମପାଯାଇପାରେ। ଏହାହିଁ ଅର୍ଥର ସଦ୍‌ବ୍ୟବହାର ତଥା ଧର୍ମ ଅର୍ଜନର ଉପାୟ। ସମାଜରେ ସମସ୍ତେ ଭଲରେ ରହନ୍ତୁ - ଏହି ଚେତନା ହେଉଛି ଅତ୍ୟନ୍ତ ମହନୀୟ ଚେତନା। ଏପରି କେତେକ ଅନୁଷ୍ଠାନ ରହିଛନ୍ତି ଯେଉଁମାନଙ୍କ ପାଇଁ ଆର୍ଥିକ ସହଯୋଗ ଦରକାର ପଡ଼େ, ସେଇ ଅନୁଷ୍ଠାନମାନଙ୍କୁ ଜାଣିବା ଦରକାର। ଅର୍ଥ ଲାଭ ପାଇଁ ଯେଉଁ ସଂସ୍ଥା ସବୁ ଗଢ଼ି ଉଠିଛି ସେମାନଙ୍କ କଥା ଏଠାରେ ପଡ଼ିନାହିଁ। ଯେଉଁ ଯେଉଁ ଅନୁଷ୍ଠାନ ପ୍ରକୃତରେ ମଣିଷମାନଙ୍କର ବିପଦ ଆପଦ ତଥା ପ୍ରାକୃତିକ ବିପର୍ଯ୍ୟୟ ସମୟରେ ମଣିଷ ପାଖରେ ଠିଆ ହୁଅନ୍ତି, ସେଇ ଅନୁଷ୍ଠାନକୁ ଯେତିକି ସମ୍ଭବ ସେତିକି ଅର୍ଥ, ସମୟ ଓ ଶକ୍ତି ପ୍ରଦାନ କରିବା ହିଁ ଧର୍ମ କରିବାର ପନ୍ଥା।

ଖାଲି ଟଙ୍କା ପଇସା, ଧାନଚାଉଳ ଦେଇ ଦେଲେ ଜଣେ ଯେ ଧର୍ମ ଅର୍ଜନ କରିବ, ଏପରି ନୁହେଁ। ଭୌତିକ ଧନ ଅର୍ଥାତ୍ ପଇସା ପତ୍ର ନ ଦେଇ ମଧ୍ୟ ଜଣେ ନିଜର ଶୁଭେଚ୍ଛା, ସମୟ, କୃତଜ୍ଞତା, ଏକାତ୍ମତାବୋଧ ଦ୍ୱାରା ଧର୍ମ କାର୍ଯ୍ୟ କରିପାରିବ। ମନରେ ଆଶାବାଦ, ଅନ୍ୟମାନଙ୍କ ପାଇଁ ଶୁଭେଚ୍ଛା, ଅଧ୍ୟବସାୟ, ସହନଶୀଳତା, କ୍ଷମାଭାବ, ମଧୁର ବଚନ, ଦୟାଶୀଳତା ମଧ୍ୟ ଧନସମ୍ପଦର ଅନ୍ତର୍ଭୁକ୍ତ ଯାହାକୁ ପ୍ରୟୋଗ କରି ଧର୍ମ ଅର୍ଜନ କରାଯାଇପାରେ ଏବଂ ଏହି ଧର୍ମ ଭଗବତ ପ୍ରାପ୍ତିରେ ସହାୟତା କରିପାରେ।

ଭଲ କଥା ପଦକର ମୂଲ୍ୟ ମଧ୍ୟ ଧନ ଠାରୁ ଅଧିକ। ଆଶାପୂର୍ଣ୍ଣ କଥା ପଦେ ହତାଶା ଜର୍ଜରିତ ମଣିଷ ମନକୁ ହାଲ୍‌କା କରିପାରେ, ପାଦରେ ଦେଇପାରେ ଆଗକୁ ଚାଲିବାର ଶକ୍ତି ଓ ସାମର୍ଥ୍ୟ, ଓଠରେ ଫୁଟାଇପାରେ ଚେନାଏ ହସ। ଉପରୋକ୍ତ ଏତେ ସବୁ କଥା ଭଗବାନଙ୍କ କୃପା ପ୍ରାପ୍ତ ହେବାର ଏକ ଏକ ଉପାୟ। ମୂଳକଥାଟି ହେଉଛି ମଣିଷ ପଣିଆ, ସେଇ ମଣିଷ ପଣିଆର ଜୟ ହେଉ।





Digitized by PPRACHIN, SOA

# ଆତ୍ମ ବିଶ୍ଳେଷଣର ମହତ୍ତ୍ୱ

ଟିକିଏ ନିରେଖି ଦେଖିଲେ ଆଜିର ଜୀବନ ଧାରା ଅଧିକରୁ ଅଧିକ ଏକପାଖିଆ ଲାଗୁଛି। ଘଟଣାଗୁଡ଼ିକ ଯେପରି ଘଟିବା କଥା ଘଟୁନାହିଁ। ଯେଉଁ କଥା ଯେତିକି ସହଜ ଓ ସୁଗମ ହେବାକଥା ହେଉ ନାହିଁ। ପ୍ରତି ପଦକ୍ଷେପରେ ପ୍ରତିକଥାକୁ ନ ଜଗିଲେ ତାହା ଜଟିଳ ହୋଇଯାଉଛି। ପୂର୍ବଭଳି ପରସ୍ପର ଭିତରେ ବିଶ୍ୱାସ ନାହିଁ କି ଭରସା ନାହିଁ। କାହା ଉପରେ ଟିକିଏ ଭରସା କଲେ ସମସ୍ୟା ସୃଷ୍ଟି ହେଉଛି। ବିଶ୍ୱାସ ଓ ଭରସାର ମୂଲ୍ୟ ଦେବାକୁ ଲୋକ ନାହାନ୍ତି ବୋଲି ମୁଁ କହୁନାହିଁ, ମାତ୍ର ସଂଖ୍ୟା ବହୁତ କମିଗଲାଣି। ସରଳତା ଆଜିକାଲି ହେଲାଣି ଦୁର୍ବଳତାର ଅନ୍ୟନାମ, ନମ୍ରତା ହେଲାଣି ନିରୀହତାର ଅନ୍ୟନାମ। ସବୁବେଳେ ଫଁ ଫଁ ଗଁ ଗଁ ହେବା ଗଣା ହେଉଛି ବୀରପଣିଆରେ। ସରଳତା ଯେ ଦୁର୍ବଳତା ନୁହେଁ, ଏକଥା ବୁଝିବା କଷ୍ଟକର ହେଉଛି। ବହୁତ କମ୍ ଲୋକ ଏକଥା ବୁଝୁଛନ୍ତି। ଏକଥା ମଧ୍ୟ ବୁଝାଇବା ଲୋକ ବହୁ ପରିମାଣରେ କମିଗଲେଣି। ଆଜିକାଲି କେହି ଭଲ ଭଲ କଥା ଶୁଣୁ ନାହାନ୍ତି କି ଶୁଣାଉନାହାନ୍ତି।

ଅହଂରେ ଫାଟିପଡ଼ିବା ଲୋକଙ୍କ ସଂଖ୍ୟା ଅଧିକ। ଅନ୍ୟର ସୁଖରେ ଦୁଃଖୀ ଓ ଅନ୍ୟର ଦୁଃଖରେ ସୁଖୀ ହେବାର ଲୋକଙ୍କ ସଂଖ୍ୟା ବଢ଼ିଯାଉଛି। କେହି ନିଜକୁ ଅନ୍ୟ ଜାଗାରେ ରଖୁ ନାହିଁ, ତେଣୁ ବିଚାର ବୁଦ୍ଧି ଠିକ୍ ହେଉନାହିଁ। ଧନବଳ, ଜନବଳ, କ୍ଷମତାବଳ, ଯଶବଳ ପ୍ରଭୃତିବଳ ମଣିଷକୁ ଅଧିକ ବାଟ ବାଉଳା କରୁଛି। ଏଇସବୁ ବଳ ମଣିଷକୁ ବିଚାରବନ୍ତ କରିବା ପରିବର୍ତ୍ତେ ଅହଂକାରୀ କରାଉଛି। ଅନ୍ୟମାନଙ୍କୁ ହୀନ ଚକ୍ଷୁରେ ଦେଖିବା ପାଇଁ ପ୍ରବର୍ତ୍ତାଉଛି। ଅତୀତରେ ଏଇସବୁ ବଳ ଥିବା ଲୋକମାନେ ଏତେ ବିଶୃଙ୍ଖଳିତ ନଥିଲେ। କିଛି ପରିମାଣରେ ନୈତିକତା ତାଙ୍କଠାରେ ଥିଲା। ସେହି ନୈତିକତା ଆଣିଥିଲା ମଣିଷପଣିଆ। ସେହି ମଣିଷ ପଣିଆ ଯୋଗୁଁ ପରିବାର ଏବଂ ସମାଜରେ ସମସ୍ୟା ଏତେ ସୃଷ୍ଟି ହେଉ ନ ଥିଲା। ଯାହା ଟିକିଏ ଟିକିଏ ସମସ୍ୟା ସୃଷ୍ଟି ହେଉଥିଲା, ତାହା ଏତେ ଜଟିଳ ହେଉନଥିଲା। ଆଜିକାଲି କ'ଣ ହୋଇଛି ଯେ ଟିକିଏ ଟିକିଏ ସମସ୍ୟା ହୋଇଯାଉଛି ସର୍ବନାଶର କାରଣ। ଏସବୁ ଘଟୁଛି ଆତ୍ମବଡ଼ିମା, ଅହମିକା ଯୋଗୁଁ।

ଆମର ଚଳଣିରେ ଆଗରୁ ଅଛି ଯାହା କହିବା ତାହା ଭାବିଚିନ୍ତି କହିବା, ସ୍ଥାନ, କାଳପାତ୍ର ବିଚାର କରି କହିବା। କହୁ କହୁ କହିଯିବା, ନିଜକୁ ସବ୍‌ଜାନତା ଭାବି



Digitized by PPRACHIN, SOA

ଗୁଡ଼ାଏ ଗପିଯିବା, ଅନ୍ୟକୁ ଆଘାତ ଦେବା ଭଳି କଥା କହିବା ଆଜିର ସାଧାରଣ କଥା ହୋଇଗଲାଣି। ଆଗରୁ ଏପରି ନଥିଲା, ଲୋକମାନେ ବହୁ ପାଠ ଶାଠ ପଢ଼ି ନଥିଲେ ସତ, ମାତ୍ର କାହାକୁ, କେତେବେଳେ, କେଉଁ ସ୍ଥାନରେ କେଉଁ କଥା କୁହାଯିବ ଆଉ ନ କୁହାଯିବ, ତାହାର ଜ୍ଞାନ ସେମାନଙ୍କର ଥିଲା। କଥା କହିବା ଆଗରୁ ଲୋକମାନେ ସଚେତନ ରହୁଥିଲେ। ତାଙ୍କ ପାଖରେ ଥିଲା ନୈତିକତା, ସାମାଜିକତା ସର୍ବୋପରି ମାନବିକତା। ତେଣୁ ଘର ଲାଗୁଥିଲା ବୈକୁଣ୍ଠ ପରି, ସମାଜ ଲାଗୁଥିଲା ପାରସ୍ପରିକ ଶ୍ରଦ୍ଧା ବନ୍ଧନର ମଧୁଚକ୍ର ପରି। ଅନ୍ୟର କ୍ଷତି କରିବା ପୂର୍ବରୁ ଲୋକମାନେ କଥାଟିକୁ ଆଉ ଥରେ ତର୍ଜମା କରୁଥିଲେ। ପରସ୍ପର ଭିତରେ ସଦିଚ୍ଛା, ସହାନୁଭୂତି ଓ ସମ୍ବେଦନଶୀଳତା ଥିଲା।

ବସ୍ତୁ, ଯଶ, ଧନ, କ୍ଷମତା ଆଜି ମଣିଷକୁ ଚେତନା ଓ ଚିନ୍ତାରେ ତଳକୁ ଖସାଇ ଦେଇଛି। ଏଇସବୁ ପଛରେ ଧାଇଁ ଧାଇଁ କ୍ଷତାକ୍ତ ହୋଇଛି ମଣିଷ। ବସ୍ତୁ, ଧନ, ଯଶ, କ୍ଷମତା କେହି ହେଲେ ଶାନ୍ତି ଦେଇପାରୁନାହାନ୍ତି। ଶାନ୍ତି ହୋଇଛ ସୁଦୂର ପରାହତ। ସ୍ଥିରତା ହୋଇଛି ଏକ ପ୍ରକାର ନିର୍ବାସିତ। ମଣିଷର ମନ ହୋଇଛି ଅଶାନ୍ତରେ ଜର୍ଜରିତ ଓ ଅସ୍ଥିରତାରେ ଭାରାକ୍ରାନ୍ତ। ଅହଂକାର ଏଇସବୁ କଥାକୁ ଆଶ୍ରୟ କରି ଘର ଭାଙ୍ଗିପକାଇବା ସହିତ ସମାଜକୁ ଭାଙ୍ଗିପକାଉଛି। ଯେଉଁ କିଛି କିଛି ଭଲ ଲୋକ ଅଛନ୍ତି ସମାଜରେ, ସେମାନେ କିଛି କରିପାରୁ ନାହାନ୍ତି କି କହିପାରୁନାହାନ୍ତି। ସେମାନଙ୍କର ଗୁରୁତ୍ୱ ନାହିଁ, ମୂଢ଼ ସଭାରେ ମୂକ ହୋଇ ରହିଯାଉଛନ୍ତି ସେମାନେ। କହିଲେ ମଧ ବିଶେଷ କିଛି ଲାଭ ହେବ ବୋଲି କହିହେବନି, କାରଣ ଆଜିକାଲି କେହି ଶୁଣିବା ଅବସ୍ଥାରେ ନାହାନ୍ତି। ନିଜକୁ ବଡ଼ ମନେକରିବା, ଅନ୍ୟକୁ ସାନ ମନେକରିବାର ମାନସିକତା ଦିନକୁ ଦିନ ବଢ଼ି ଚାଲିଛି।

ଏତେବେଳେ ସମସ୍ୟାର ସମାଧାନ ନିମନ୍ତେ ଆବଶ୍ୟକ ଆତ୍ମସଚେତନତା ଏବଂ ଆତ୍ମବିଶ୍ଳେଷଣ। ନିଜକୁ ନିଜେ ବିଚାର ଓ ବିଶ୍ଳେଷଣର ସମୟ ଆସିଲାଣି। ଅନ୍ୟ କେହି କହିଲେ ଚଳିବ ନାହିଁ, ବରଂ ମନରେ ବିଦ୍ରୋହ ଆସିବ, କ୍ରୋଧ ଆସିବ। ନିଜକୁ ନିଜେ ବିଶ୍ଳେଷଣ କରି ନିଜର ଭୁଲ ତ୍ରୁଟିକୁ ଜାଣିବା ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ। ସିଏ ହିଁ ପ୍ରକୃତ ମଣିଷ ଯିଏ ନିଜକୁ ନିଜେ ତର୍ଜମା କରିପାରେ, ନିଜର କର୍ମଗୁଡ଼ିକୁ ନିରୋଳାରେ ବସି ବିଚାର କରିପାରେ। ନିଜ ଆଗରେ ନିଜେ ଭୁଲ ସ୍ୱୀକାର କରିପାରେ, ଭୁଲ ଥିଲେ ଆଉ ଭୁଲ ନ କରିବାକୁ ପ୍ରତିଜ୍ଞା କରିପାରେ। ନିଜର ଭୁଲକୁ ଚିହ୍ନିବା, ସ୍ୱୀକାର କରିବା ଓ ସଂଶୋଧନ କରିବା ହିଁ ଯଥାର୍ଥ ବୀର ପଣିଆ।

ଭୁଲ ଗୁଡ଼ିକ ଆମେ ସଂଶୋଧନ ନ କଲେ ଆମ ପାଇଁ ଆଉ କେହି ସଂଶୋଧନ କରିଦେବେ ନାହିଁ। ସଂଶୋଧନର ମାନସିକତା ଆସିଲେ ଭୁଲ କରିବାର ପ୍ରବଣତା ଆପେ ଆପେ କମି ଆସିବ। ଅତଏବ ବର୍ତ୍ତମାନର ସମୟ ଆତ୍ମ ଅନୁଶୀଳନର ସମୟ,



Digitized by PPRACHIN, SOA

ଆତ୍ମବିଚାରର ସମୟ। ଏ କ୍ରିୟାରେ ଆମକୁ ସହଯୋଗ କରିବ ସଦ୍‌ଗ୍ରନ୍ଥ ପଠନ, ସତ୍‌ସଙ୍ଗ ଓ ସତ୍‌ଚିନ୍ତା। ଆତ୍ମଚେତନା ଆସିଲେ ଆମର ବସ୍ତୁ ଥିବ ମାତ୍ର ବସ୍ତୁଜନିତ ଗର୍ବ ରହିବ ନାହିଁ, ଆମର ବ୍ୟବହାର କ୍ଷମତା ଥିବ ମାତ୍ର କ୍ଷମତାର ଅସଦ୍ ବ୍ୟବହାର ପାଇଁ ଇଚ୍ଛା ହେବ ନାହିଁ, ବସ୍ତୁପ୍ରତି ଶ୍ରଦ୍ଧା ରହିବ, କ୍ଷମତା ପ୍ରତି ସମ୍ମାନ ରହିବ, ବୁଦ୍ଧିପ୍ରତି ଗୌରବବୋଧ ରହିବ। ସର୍ବୋପରି ମଣିଷ ପଣିଆ ପ୍ରତି କୃତଜ୍ଞତାବୋଧ ରହିବ। ସତ୍‌ଚିନ୍ତା, ସତ୍‌କର୍ମ ଓ ସଦ୍‌ବୁଦ୍ଧି ଯେ ଆମକୁ ଅସଲ ସୁଖ, ଶାନ୍ତି ଓ ସନ୍ତୋଷ ଦେବ, ତାହା ଅନୁଭବ କରିହେବ।

ମଣିଷ ଜୀବନର ଲକ୍ଷ୍ୟ ହେଉଛି ଦିବ୍ୟଚେତନାରେ ବିଭୂଷିତ ହେବା। ଆମେ ନିଜର ଭଲ ଗୁଣରେ ଦିବ୍ୟ ଚେତନାରେ ଅଧିଷ୍ଠିତ ହେବାର ଗୌରବ ଅର୍ଜନ କଲେ ଈଶ୍ୱରଙ୍କ ସୃଷ୍ଟି ସୁନ୍ଦର ହେବା ସଙ୍ଗେ ସଙ୍ଗେ ଆମ ଜୀବନ ମଧ୍ୟ ସାର୍ଥକ ହେବ।





Digitized by PPRACHIN, SOA

# ଭଙ୍ଗାଗଢ଼ାର ମର୍ମକଥା

ବହୁ କଥା ଭାଙ୍ଗି ଦେବା ଅତି ସହଜ। ଏଇ ଯେମିତି ଅନ୍ୟର ମନ ଭାଙ୍ଗିଦେବା, ଘର ଭାଙ୍ଗିଦେବା, କାଚ ଜିନିଷ ଭାଙ୍ଗିଦେବା, କପ୍‌ପ୍ଲେଟ ଭାଙ୍ଗିଦେବା ଇତ୍ୟାଦି ଇତ୍ୟାଦି। କେତେ ଦିନର ମଧୁର ସମ୍ପର୍କକୁ ଭାଙ୍ଗିଦେବା ପାଇଁ ପଦେ ଅବାଗ କଥା ଯଥେଷ୍ଟ, କେତେଦିନର ସାଇତା କାଚ ବାସନକୁ ଭାଙ୍ଗି ଦେବା ପାଇଁ ଖାଲି ଗୋଡ଼ ବା ହାତ ଟିକିଏ ଅବାଗରେ ବାଜିଯିବା ଯଥେଷ୍ଟ, କେତେଦିନର ସଜଡ଼ା ଘରଟିଏ ଭାଙ୍ଗିଦେବା ପାଇଁ ଅହଂକାରର ହାତୁଡ଼ିଟିଏ ଯଥେଷ୍ଟ। ଇତିହାସରେ ଏଇ ଭାଙ୍ଗିଯିବାର ବହୁ ଉଦାହରଣ ରହିଛି। ଯୁଗ ଯୁଗର ଗଢ଼ା କେତେ ସଭ୍ୟତା ଆସୁରିକ ଆକ୍ରମଣରେ ଅଳ୍ପ ସମୟ ମଧ୍ୟରେ ଭାଙ୍ଗି ଧୂଳିସାତ୍ ହୋଇଯାଇଛି। ସେତିକି ଗଢ଼ିବା ଏବଂ ସେମିତି ଗଢ଼ିବା ଆଉ ସହଜ ହୋଇନାହିଁ, ପ୍ରାୟତଃ ସମ୍ଭବ ହୋଇନାହିଁ।

ଏକଥା ଭାବିଲା ବେଳେ ବୁଝିହୁଏ ଯେ ଗଢ଼ିବା କେତେ କଷ୍ଟ ଆଉ ଭାଙ୍ଗିବା କେତେ ସହଜ। ବିଡ଼ମ୍ବନାର ବିଷୟ ଏହି ଯେ ବହୁ ସମୟ, ବହୁଶକ୍ତି ଓ ବହୁ ସାମର୍ଥ୍ୟର ବିନିମୟରେ କିଛି କଥା ଗଢ଼ିଥିବା ବ୍ୟକ୍ତିଟି ଚର୍ଚ୍ଚିତ ଓ ପ୍ରଶଂସିତ ହେବା ଆଗରୁ ଅଳ୍ପ ସମୟ ମଧ୍ୟରେ ଭାଙ୍ଗି ଦେଇଥିବା ବ୍ୟକ୍ତି ଚର୍ଚ୍ଚିତ ହୋଇଥାଏ। ବେଳେବେଳେ ଧ୍ୱଂସକାରୀ ନିଜକୁ ବୀର ବୋଲି ବିଚାର କରେ ଓ ଭାଙ୍ଗି ଦେବା କାର୍ଯ୍ୟଟିକୁ ବୀରପଣିଆର କାର୍ଯ୍ୟ ବୋଲି ଭାବେ।

ପ୍ରକୃତରେ କଥାଟି ଏପରି ନୁହେଁ, ଏହା ଆଦୌ ବୀରତ୍ୱର କଥା ନୁହେଁ। ଅନ୍ୟର ଦୋଷଦର୍ଶୀ ଲୋକମାନେ ହିଁ ଏହି ଭାଙ୍ଗିବା କାମଟିକୁ ଅଧିକ ପସନ୍ଦ କରିଥାନ୍ତି। ନିଜେ ଠିକ୍ ଓ ଅନ୍ୟ ଯେ ଭୁଲ - ଏହି କଥା ଭାବୁଥିବା ଲୋକମାନେ ଏପରି କରିଥାନ୍ତି। ଏହି ପ୍ରକାର ବ୍ୟକ୍ତି ନିଜର ତ୍ରୁଟି ନ ଦେଖି ଅନ୍ୟର ତ୍ରୁଟି ଦେଖିଥାନ୍ତି। ପ୍ରକୃତରେ ନିଜର ତ୍ରୁଟି ଦେଖିଲେ ଆତ୍ମ ସଂଶୋଧନର ବାଟ ଫିଟେ। ବ୍ୟକ୍ତିର ଆତ୍ମ ସଂଶୋଧନ ହିଁ ପରିବେଶର ଆତ୍ମ ସଂଶୋଧନ କରିଥାଏ। ଫଳତଃ ପରିବାର, ସମାଜ, ଦେଶ ତଥା ସାରା ବିଶ୍ୱରେ ବିଶ୍ୱାସ ଓ ପାରସ୍ପରିକ ଶ୍ରଦ୍ଧାର ଲହରୀ ଖେଳିଯାଏ। ପରିବାର ହୋଇଯାଏ ପବିତ୍ର ବୈକୁଣ୍ଠ ଭୁବନ, ସମାଜ ହୋଇଯାଏ ଦିବ୍ୟ ଭାବନାର ଅମୃତମୟ କାବ୍ୟ, ଦେଶ ହୋଇଯାଏ ସଜଫୁଟା ଫୁଲରେ ସୁସଜ୍ଜିତ ଏକ ରମ୍ୟ ଉପବନ।



Digitized by PPRACHIN, SOA

ଆତ୍ମ ସଂଶୋଧନ ପାଇଁ ଆବଶ୍ୟକ ଆତ୍ମବିଶ୍ଳେଷଣ ତଥା ଆତ୍ମ ସମୀକ୍ଷଣ। ନିଜକୁ ନିଜେ ଦେଖିବା ପାଇଁ ଆଖିଟିଏ ଓ ନିଜକୁ ନିଜେ ଶୁଣିବା ପାଇଁ କାନଟିଏ ଆବଶ୍ୟକ ହୁଏ। ଏ ଆଖି ଅଲଗା ଏକ ଆଖି ଓ ଏ କାନ ଅଲଗା ଏକ କାନ। ନିଜକୁ ନିଜେ ନିରେଖି ଦେଖିଲେ ନିଜର ଦୋଷ ଚନ୍ଦ୍ରରେ କଳଙ୍କ ପରି ସ୍ପଷ୍ଟ ଦେଖାଯିବ। ନିଜର ତ୍ରୁଟିକୁ ଖୋଜି ପାଇଲା ପରେ ତାକୁ ସଂଶୋଧନ କରିବାକୁ ସଂକଳ୍ପ କରିବାକୁ ପଡ଼ିବ। ଏହି ସଂକଳ୍ପ ଅବଶ୍ୟ ଦିନକରେ ବା ମାସକରେ ପୂର୍ଣ୍ଣତଃ କାର୍ଯ୍ୟକାରୀ ହୋଇପାରିବ ନାହିଁ। ବହୁ ସମୟ ଲାଗିବ। ତଥାପି ଆରମ୍ଭ ହେଲେ ଦିନେ ତ ଶେଷ ହେବ। ସିଡ଼ି ଚଢ଼ିବାକୁ ଆରମ୍ଭ କଲେ ତ ସମୟ କ୍ରମେ ଛାତରେ ପହଞ୍ଚି ହେବ।

ଛାତରେ ପହଞ୍ଚିବା ଅର୍ଥ ଚେତନାର ପରିବର୍ତ୍ତନ ହେବା। ଚେତନା ପରିବର୍ତ୍ତିତ ହେଲେ ଆଉ ଭାଙ୍ଗିବାକୁ ମନ ବଳିବ ନାହିଁ, ବରଂ ଗଢ଼ିବାକୁ ଇଚ୍ଛା ହେବ। ଲସିର ସ୍ୱାଦ ଚାଖିଲେ ଆଉ ଚିନିପାଣି ଭଲ ଲାଗିବ ନାହିଁ। ଫୁଲ ବାସ୍ନାରେ ଥରେ ବିଭୋର ହେଲେ ଆଉ ନର୍ଦ୍ଦମାର ଦୁର୍ଗନ୍ଧ ଆଡ଼କୁ ମନ ଯିବ ନାହିଁ।

ଆଉ କେହି ତ୍ରୁଟି ଦେଖାଇଦେଲେ ସେଇ ତ୍ରୁଟିର ସଂଶୋଧନ ସହଜ ହେବ ନାହିଁ। ନିଜର ତ୍ରୁଟିକୁ ନିଜେ ହିଁ ଖୋଜିବାକୁ ପଡ଼ିବ। ତ୍ରୁଟି ଖୋଜିପାଇଲେ ନିଜକୁ ହୀନ, ନଗଣ୍ୟ ମନେ କରିବା ଉଚିତ ନୁହେଁ କାରଣ ତ୍ରୁଟି ସମସ୍ତଙ୍କର ଅଳ୍ପେ ବହୁତେ ରହିଛି। ଏପରି କେହି ବ୍ୟକ୍ତି ନାହିଁ ଯାହାର ଆଦୌ ତ୍ରୁଟି ନାହିଁ।

ଶ୍ରୀଅରବିନ୍ଦ ଏହି କଥାକୁ ଅପୂର୍ଣ୍ଣତା ବୋଲି କହିଛନ୍ତି। ଅପୂର୍ଣ୍ଣତା ଆଦୌ ଅସାମର୍ଥ୍ୟର ଚିହ୍ନ ନୁହେଁ। ଅପୂର୍ଣ୍ଣତା ଆଦୌ ଲଜ୍ଜାକର କଥା ନୁହେଁ। ମାତ୍ର ଅପୂର୍ଣ୍ଣତାକୁ ଜାଣିବା ପରେ ପୂର୍ଣ୍ଣତା ଆଡ଼କୁ ଯିବା ପାଇଁ ଚେଷ୍ଟା ନ କରିବା ବିଡ଼ମ୍ବନାର କଥା। ମଣିଷ ମାତ୍ରେ କିଛି ନା କିଛି ଅପୂର୍ଣ୍ଣତା ଥାଏ। କାହାର ଲୋଭଥାଏ ଅଧିକ, କାହାର ଈର୍ଷା ଥାଏ ଅଧିକ। କାହାର କ୍ରୋଧ ଥାଏ ଅଧିକ ତ ଆଉ କାହାର ସ୍ୱାର୍ଥପରତା ଥାଏ ଅଧିକ। ଏହି ଅପୂର୍ଣ୍ଣତା ହିଁ ଅଶାନ୍ତିର କାରଣ ହୋଇଥାଏ। ଯାହାର ଅପୂର୍ଣ୍ଣତା ଯେତେ ବେଶୀ, ତାହାର ଦୁଃଖ କଷ୍ଟ ସେତେ ଅଧିକ। ସେ ସଚେତନ ନ ଥିବାରୁ ଏହା ଜାଣିପାରେ ନାହିଁ। ଓଟ ନାଗଫେଣୀ କଣ୍ଟା ଚୋବାଇଲା ବେଳେ ସେହି କଣ୍ଟାରେ ଚିରି ହୋଇଥିବା ମାଢ଼ିରୁ ଝରୁଥିବା ରକ୍ତକୁ କଣ୍ଟାର ରସ ବୋଲି ଭାବୁଥାଏ। ମାଢ଼ିରୁ ରକ୍ତ ଝରୁଛି ବୋଲି ସେ ଜାଣିପାରେ ନାହିଁ। ସେହିପରି ଅଚେତନ ବ୍ୟକ୍ତି ନିଜ ଅପୂର୍ଣ୍ଣତାରୁ ଯେ ଦୁଃଖ ଆସୁଛି, ତାହା ଜାଣିପାରେ ନାହିଁ। ଦୁଃଖ ଆସିଲେ ସେ ନିଜ ଭାଗ୍ୟକୁ ଅଥବା ଆଉ କାହାକୁ ଦୋଷ ଦିଏ। ଅନ୍ୟକୁ ଦୋଷ ଦେଲେ ଦୋଷ ବଢ଼େ ସିନା କମେ ନାହିଁ।



Digitized by PPRACHIN, SOA

ଅତୀତ ଆଉ ଆୟତ୍ତରେ ନାହିଁ, ଭବିଷ୍ୟତ ଅନିଶ୍ଚିତ। କେବଳ ବର୍ତ୍ତମାନ ହିଁ ସତ୍ୟ ଏବଂ ଆମ ଆୟତ୍ତାଧୀନ। ବର୍ତ୍ତମାନ ହିଁ ଭବିଷ୍ୟତର ନିର୍ମାଣ କାରୀ। ବର୍ତ୍ତମାନ ହିଁ ପ୍ରସ୍ତୁତି, ଭବିଷ୍ୟତ ହେଉଛି ଏଇ ପ୍ରସ୍ତୁତିର ପରଣତି। ତେଣୁ ବର୍ତ୍ତମାନ ପ୍ରତି ସଚେତନତା ହିଁ ପ୍ରକୃତ ବୁଦ୍ଧିମାନର କାର୍ଯ୍ୟ।

ସମସ୍ତ ଅପୂର୍ଣ୍ଣତାରମୂଳ ହେଉଛି ଅହଂ। ଏହା ବାରମ୍ବାର ବେଶ ବଦଳାଏ। ଆମେ ଏଇ ଅହଂରୁ ମୁକ୍ତ ହେଲେ ପୂର୍ଣ୍ଣତାର ପଥରେ ଅଗ୍ରସର ହୋଇପାରିବା। ଅହଂ ବ୍ୟକ୍ତିକୁ ସର୍ବସ୍ୱାନ୍ତ କରାଇଦିଏ। ଅହଂକୁ ଚିହ୍ନିବା ବଡ଼ କଷ୍ଟକର ବ୍ୟାପାର। ତଥାପି ନିରେଖି ଦେଖିଲେ ଅହଂକୁ ଦେଖିହୁଏ, ଜାଣିହୁଏ। ଅହଂ ମୁକ୍ତ ହେଲେ ମିଳେ ଜୀବନରେ ଯଥାର୍ଥ ଶାନ୍ତି, ସନ୍ତୋଷ ଓ ମୂଲ୍ୟବୋଧ। ଏଥିନିମନ୍ତେ ଆମେ ଅଧିକ ସଚେତନ ହେବା ପାଇଁ ପ୍ରୟାସ ଓ ପ୍ରଚେଷ୍ଟା କରିବା।





Digitized by PPRACHIN, SOA

# ଆମ ନାଭିରେ କସ୍ତୁରୀ

ଶାନ୍ତିରେ ରହିବାକୁ ସମସ୍ତେ ଚାହାନ୍ତି। ଯେତେ ଶାନ୍ତି ପାଇବା କଥା ସେତେ ପାଆନ୍ତି ନାହିଁ ବୋଲି ବ୍ୟସ୍ତ ହୁଅନ୍ତି, ତଥାପି ଖୋଜୁଥାଆନ୍ତି। ଶାନ୍ତି ପାଇବାର କେତେକ ଦିଗ ରହିଛି। ସେଥିମଧ୍ୟରୁ ଗୋଟିଏ ଦିଗ ହେଉଛି ନିଜ ମନକୁ ଟିକିଏ ପ୍ରଶସ୍ତ କରିବା। ମନ ବଢ଼ିଲେ ଶାନ୍ତି ବଢ଼େ, ଶାନ୍ତି ବଢ଼ିଲେ ଅଶାନ୍ତି କମେ ଯେପରି ଆଲୁଅ ବଢ଼ିଲେ ଅନ୍ଧାର କମେ।

ଅହଂକାର କମିଲେ ମନ ପ୍ରଶସ୍ତ ହୁଏ, ଅଶାନ୍ତି କମେ। ଅହଂକାର ହିଁ ସମସ୍ତ ଦୁଃଖ, ଅଶାନ୍ତି, କ୍ରୋଧ, ହିଂସାର ମୂଳକାରଣ। ଏହାକୁ ଚିହ୍ନିବା ବଡ଼ କଷ୍ଟକର କଥା। ଚିହ୍ନିବା ଆଗରୁ ସେ ନିଜର ରଙ୍ଗ ଓ ବେଶ ବଦଳାଇ ସାରିଥାଏ ଏବଂ ଅନ୍ୟଏକ ପ୍ରକାରେ ସମ୍ମୋହିନୀ ଶକ୍ତି ସହ ଅଭିନୟ କରେ। ତାକୁ ଚିହ୍ନିବାକୁ ଶକ୍ତି, ସମୟ ତଥା ଏକାଗ୍ରତା ଦରକାର। ଚିହ୍ନିଲାପରେ ତାକୁ ଛାଡ଼ିବା ପାଇଁ ପ୍ରଯତ୍ନ କରିବା ମାତ୍ରେ ସେ ବାରମ୍ବାର ରଙ୍ଗ ବଦଳାଏ ଏବଂ ବେଳ ପଡ଼ିଲେ ବେଶି ବେଶି ଆକ୍ରମଣ କରିବାକୁ ମଧ ପଛାଏ ନାହିଁ।

ତାକୁ ହଠାତ୍ ଛାଡ଼ି ନ ହେଲେ ମଧ ଆସ୍ତେ ଆସ୍ତେ କମାଇବାକୁ ଚେଷ୍ଟା ଲଗାଇ ରଖିବା ଆମର କାମ। ଏହି ଅହଂକାର ପିଲାଠାରୁ ବୁଢ଼ା ସମସ୍ତଙ୍କ ଭିତରେ ଅଳ୍ପେ ବହୁତେ ଥାଏ। ଆଖିକୁ ଦିଶେ ନାହିଁ ତା'ର ରୂପରେଖ ମାତ୍ର ଟିକିଏ ସଚେତନ ହେଲେ ଏହାର ପ୍ରଭାବ ଜାଣିହୁଏ। ବୟସ ଭେଦରେ ଏହାର ଅଭିବ୍ୟକ୍ତିର ସ୍ୱରୂପ ଭିନ୍ନ ଭିନ୍ନ ହୋଇଥାଏ। ଅହଂକାରର ବଡ଼ କାମ ହେଉଛି ମନାନ୍ତର ଘଟାଇବା ଓ ପରସ୍ପର ଭିତରେ କଳହ ସୃଷ୍ଟି କରାଇବା। ଏହି କଳହ ଆଉ କିଛି ନୁହେଁ ପାରସ୍ପରିକ ଅହଂର ସଂଘର୍ଷ ମାତ୍ର। ଅହଂକାର ହିଁ କ୍ରୋଧାନ୍ୱିତ ହୁଏ, ଅପମାନିତ ହୁଏ, ପ୍ରତିଶୋଧ ପରାୟଣ ହୁଏ। ମନର ଶାନ୍ତି ଭଙ୍ଗ କରେ ଓ ଅଶାନ୍ତିର ଅଗ୍ନି, ଭିତରେ ଓ ବାହାରେ ଚାରିଆଡ଼େ ଜାଳିଦିଏ।

ପରିବାରରେ ଅଶାନ୍ତି ସୃଷ୍ଟି କରେ ଅହଂକାର। ପ୍ରତ୍ୟେକ ପରସ୍ପରକୁ ଦୋଷ ଦେଉଥାଆନ୍ତି, ଆଉ ଏହି ସୁଯୋଗରେ ଅହଂକାର ନିଜକୁ ଜାହିର କରି ଚାଲିଥାଏ। ସମାଧାନ ଆଡ଼କୁ ସମସ୍ୟା ଯାଉନଥାଏ ବରଂ ବଢୁଥାଏ। ଏହାର ପ୍ରଭାବ ବିଶେଷ ଭାବରେ ପଡ଼େ ପରିବାରରେ ଥିବା ବୟସ୍କ ବ୍ୟକ୍ତିଙ୍କ ଉପରେ। ମାନସିକ ଅସ୍ଥିରତା ଓ ଶାରୀରିକ ଅସୁସ୍ଥତା ସେମାନଙ୍କର ବଢ଼ିଚାଲେ, ଜୀବନ ବଡ଼ ଦୁଃସହ ହୋଇଉଠେ।



Digitized by PPRACHIN, SOA

ସବୁଠାରୁ ସେମାନଙ୍କର ବଡ଼ ଦୁଃଖ ଓ ନୀରବ ଅଭିଯୋଗ ଯେ ଆମକୁ ଆଉ କେହି ମାନୁ ନାହାନ୍ତି, ଆମ କଥା କେହି ଶୁଣୁ ନାହାନ୍ତି, ଆମେ ତ ଅଲୋଡ଼ା ଇତ୍ୟାଦି ଇତ୍ୟାଦି...।

ମଝି ପିଢ଼ିର ବଡ଼ ଅଭିଯୋଗ ଯେ ଆମକୁ କେହି ଗୁରୁଜନ ବୁଝୁନାହାନ୍ତି। ତାଙ୍କ ସମୟର ସେଇ ପୁରୁଣା ଛାଞ୍ଚରେ ଯେ ଏଣ୍ଡୁରି ପିଠା ହେଉନାହିଁ ଏକଥା ସେମାନେ ବୁଝୁ ନାହାନ୍ତି। ତାଙ୍କ ପାଖରେ ଚଳିବା ବଡ଼ କଷ୍ଟ ହେଉଛି। ଠା'କୁ ଠା ବସୁଛନ୍ତି, କିଛି କାମ ନାହିଁ, ତୁଚ୍ଛାକୁ 'ହୁଁ' 'ହୁଁ' ହେଉଛନ୍ତି। ଏଆଡୁ ସେଆଡୁ ଅଯଥା କଥା କହୁଛନ୍ତି। ତାଙ୍କ ପାଇଁ ସମୟ, ଏତେ କଥା ଆମ ପାଖରେ ନାହିଁ; କିଛି ଭଲ ଲାଗୁନାହିଁ, ବଡ଼ କଷ୍ଟ ହେଉଛି ଚଳିବା ପାଇଁ।

ଏ ସମସ୍ୟାର ସମାଧାନ ବହିରେ ନାହିଁ, ଡିଗ୍ରୀରେ ନାହିଁ। ଅଛି କେବଳ ନିଜ ଭିତରେ। ଉଭୟ ପିଢ଼ିର ସହଯୋଗରେ ଏହି ସମସ୍ୟାର ସମାଧାନ ପୂର୍ଣ୍ଣ ଭାବରେ ନହେଲେ ମଧ୍ୟ ଆଂଶିକ ଭାବରେ ହୋଇପାରିବ।

ବୟସ୍କ ଲୋକମାନେ ପାଠ ପଢ଼ି ଥାଆନ୍ତୁ କି ନଥାନ୍ତୁ, ମଝି ପିଢ଼ିର ବାଟ ଦେଇ ଆସିଛନ୍ତି ତ ନିଶ୍ଚୟ। ସେମାନେ ମଝି ପିଢ଼ିର ମାନସିକତାକୁ ଟିକିଏ ଅଧିକ ଗୁରୁତ୍ୱ ଦେଇ ନିଜର ଅଭିମାନ ଓ ଅଭିଯୋଗକୁ ଟିକିଏ କମାଇ ଦେଲେ ସମସ୍ୟା ହାଲ୍‌କା ହୋଇଯିବ। ଟିକିଏ ଏମିତି ବୁଝିଲେ ହେବ ଯେ ମଝି ପିଢ଼ି ହାତରେ କର୍ମବ୍ୟସ୍ତତା ଯୋଗୁଁ ସମୟ ଟିକିଏ କମ୍, ସେମାନେ ପୁଣି ସେମାନଙ୍କ ପିଲାମାନଙ୍କ ପାଇଁ ବ୍ୟସ୍ତ ରହିବା ସ୍ୱାଭାବିକ ଇତ୍ୟାଦି ଇତ୍ୟାଦି...। ମନରେ ଅଭିମାନ ଆସିଲେ ଟିକିଏ ଚେଷ୍ଟା କରି ଏଡ଼େଇଗଲେ ମନ ଏତେ ଭାରାକ୍ରାନ୍ତ ହେବ ନାହିଁ, ଜୀବନ ଏତେ ବଡ଼ ବୋଝପରି ଲାଗିବ ନାହିଁ।

ମଝି ପିଢ଼ିର ଲୋକମାନେ ଅଭିଜ୍ଞତା ନଥିଲେ ମଧ୍ୟ କଳ୍ପନା ନେତ୍ରରେ ବୟସ୍କ ଲୋକଙ୍କର ମନର ମାନଚିତ୍ରକୁ ଦେଖିବାକୁ ଚେଷ୍ଟା କରିବେ। ଟିକିଏ ଚେଷ୍ଟା କଲେ ବୁଝି ହେବ ଯେ ସେମାନଙ୍କର ଦେହର ବଳ କମିଗଲାଣି, ଠାଏ ଠାଏ ବହୁତ କମିଗଲାଣି, ସ୍ମରଣ ଶକ୍ତି କମିଗଲାଣି, ମନର ଧୈର୍ଯ୍ୟଶକ୍ତି କମିଗଲାଣି ପୁଣି ତାଙ୍କ ଚଳଣି ସମୟ ଚାଲିଗଲାଣି। ବୟସର ଚାପ, ଅସୁସ୍ଥତାର ପ୍ରଭାବ ଯୋଗୁଁ ଏକ ପ୍ରକାର ଅସ୍ଥିରତା ତାଙ୍କର ଆସିବା ସ୍ୱାଭାବିକ। ଏତେବେଳେ ଆମକୁ ତାଙ୍କ ପାଇଁ କିଛି ସମୟ କାଢ଼ିବାକୁ ହେବ। ଆମେ ସମୟ ନ ଦେଲେ କିଏ ତାଙ୍କ ପାଇଁ ସମୟ ଦେବ, ଆମେ ହସି କଥା ନ କହିଲେ ଆଉ କିଏ ତାଙ୍କୁ ହସି କଥା କହିବ ? ଆମ ପିଲାଙ୍କ ସହ ସେମାନଙ୍କୁ ମିଶାଇ ଦେଲେ ଆମ ପିଲାଙ୍କ ସଂଖ୍ୟା ଟିକିଏ ବଢ଼ିଯିବ, ଆଉ ସେ ବଢ଼ିଗଲେ ଆନନ୍ଦ ମଧ୍ୟ ବଢ଼ିଯିବ।



Digitized by PPRACHIN, SOA

ସେମାନଙ୍କ ସର୍ତ୍ତରେ ସେମାନଙ୍କୁ ବୁଝାଇ ପିଲାଙ୍କ ସହ ପିଲା କରି ଚଳାଇ ଦେଲେ ସମସ୍ୟା କମିଯିବ।

ବହୁ ସମସ୍ୟାର ସମାଧାନ ପନ୍ଥା ଆମ ହାତରେ ଅଛି। ସେ ପନ୍ଥା ଖୋଜିପାଇବା ଏକାନ୍ତ ଜରୁରୀ। ଆମ ନାଭିରେ କସ୍ତୁରୀ - ଆମେ କେଡ଼େ ବିଚଳିତ ସତେ ! ଆମ ହାତରେ ଶାନ୍ତି, ଆମେ କେଡ଼େ ଅଶାନ୍ତ ସତେ !





Digitized by PPRACHIN, SOA

# ଲାଭ କ୍ଷତିର ଅଙ୍କ କଷା

ଜୀବନରେ ସବୁକଥାରେ ସବୁ ସମୟରେ ଅଙ୍କକଷା ଚଳେ ନାହିଁ। ଲାଭକ୍ଷତିର ଅଙ୍କକଷାରେ ଆନନ୍ଦ ନ ଥାଏ। ଅବଶ୍ୟ ବାଣିଜ୍ୟ ବ୍ୟବସାୟର କଥା ଏଠାରେ ପଡ଼ିନାହିଁ। ବେପାର ବାଣିଜ୍ୟରେ ତ ଲାଭକ୍ଷତିର ହିସାବ ରହିବ ହିଁ ରହିବ। ପଡ଼ିଛି ଆମ ଚଳଣିର କଥା। ସ୍ନେହ, ସଦ୍‌ଭାବ, ସଦିଚ୍ଛା, ତ୍ୟାଗ, ତିତିକ୍ଷା ଆଦି କ୍ଷେତ୍ରର କଥା।

ଲାଭକ୍ଷତିର ଅଙ୍କକଷାର ଆରମ୍ଭ ବିନ୍ଦୁ ହେଉଛି 'ମୁଁ'। ମୁଁ ମତେ ଅନ୍ୟମାନଙ୍କଠାରୁ ବଡ଼ ବୋଲି ବିଚାରିଲେ ଅଙ୍କ କଷା ଆରମ୍ଭ ହୁଏ ଅଥବା ମତେ ଅନ୍ୟମାନେ ସାନ କରି ଦେଖୁଛନ୍ତି ଭାବିଲେ ଅଙ୍କ କଷା ଆରମ୍ଭ ହୁଏ। ଅଙ୍କ କଷା ଥରେ ଆରମ୍ଭ ହେଲେ ସହଜେ ସରେ ନାହିଁ। ଗୋଟିଏ ନ ସରୁଣୁ ଆଉ ଗୋଟିଏ ଅଙ୍କ ତହିଁରେ ଯୋଡ଼ି ହୋଇଯାଏ। 'ଭାଗଶେଷ'ର ଶେଷ ନଥାଏ, 'ଭାଗଶେଷ' ହୋଇଯାଉଥାଏ ନୂଆ ନୂଆ ଅଙ୍କର ଭାଜ୍ୟ। ସବୁବେଳେ ଭାଗଫଳରେ ପଡୁଥାଏ କ୍ଳାନ୍ତି, ବିରକ୍ତି, କ୍ରୋଧ ଓ ଅବସାଦ ଇତ୍ୟାଦି ଇତ୍ୟାଦି କଣ୍ଟକିତ ଉପାଦାନ ମାନ।

କର୍ତ୍ତାପଣରୁ ଅଙ୍କ କଷା ଆଗେଇ ଚାଲେ। କର୍ତ୍ତାପଣ ଦିଏ ଅହଂଭାବ। ଏହି ଅହଂଭାବ ଏକ ବସ୍ତୁ ନୁହେଁ, ଧୂଆଁ ମିଶା ପବନ ଯାହାକୁ ଧରୁ ଧରୁ ତାହା ହାତରୁ ଖସିଯାଏ। ତା'ପଛରେ ଧାଇଁ ଧାଇଁ କିଛି ଲାଭ କ ମିଳେନାହିଁ, ମିଳେ ପ୍ରାଣପୀଡ଼ା। କର୍ତ୍ତାପଣ ପ୍ରବଳ ହେଲେ ନିଜକୁ ବିଶ୍ୱର କେନ୍ଦ୍ରବିନ୍ଦୁ ବୋଲି ଭାବନା ମନରେ ଆସେ। ମୁଁ ନଥିଲେ ସବୁ ଅଚଳ, କିଛି ଘଟିବ ନାହିଁ, ଏପରିକି 'ସୂର୍ଯ୍ୟ ଉଦିତ ହେବେ ନାହିଁ', 'ପବନ ବହିବ ନାହିଁ' 'ଫୁଲ ଫୁଟିବ ନାହିଁ' ଇତ୍ୟାଦି ଇତ୍ୟାଦି। ନିଜର ସୀମିତତା ଓ ଅସହାୟତାକୁ ଜାଣିହୁଏ ନାହିଁ। ମଣିଷ ମାତ୍ରକେ ସୀମିତ ଚେତନାର ଅଧିକାରୀ। କେତେବେଳେ କ'ଣ ଘଟିବ, କେଉଁଆଡୁ ଝଡ଼ ଝଞ୍ଜା ଆସିବ, କେଉଁ ଦିଗକୁ ତାହା ଗତି କରିବ, ତା'ର ପ୍ରଭାବରେ କାହାର କେତେ କ୍ଷୟ କ୍ଷତି ହବ ସେ ଜାଣେନାହିଁ। କେଉଁ ପରିସ୍ଥିତିରେ କ'ଣ କ'ଣ ପ୍ରତିକାର କରିବାକୁ ହେବ ସେ ସମ୍ପୂର୍ଣ୍ଣ ଭାବରେ ଜାଣିନାହିଁ। ପବନର ବେଗ ତା' ଆୟତ୍ତରେ ନ ଥିଲେ ମଧ୍ୟ ଦମ୍ଭ ହୋଇ ଛିଡ଼ା ହେବାର ଦାୟିତ୍ୱ ଓ କର୍ତ୍ତବ୍ୟ ମଣିଷର ରହିବା ଉଚିତ। ଏଥିପାଇଁ ଲୋଡ଼ା ସ୍ଥିରତା, ଏକାଗ୍ରତା, ଆତ୍ମ ବିଶ୍ୱାସ ପରି ବହୁମୂଲ୍ୟ ଉପାଦାନ। ଯେତିକି ସ୍ଥିରତା ଥାଏ ସାଧାରଣ ବ୍ୟକ୍ତିର ସେତିକି ସ୍ଥିରତା



Digitized by PPRACHIN, SOA

ଅହଂକାରୀ ବ୍ୟକ୍ତିର ନ ଥାଏ। ବିପଦରେ ଧୈର୍ଯ୍ୟ ଆସେ ଆତ୍ମବିଶ୍ୱାସ ମାଧ୍ୟମରେ ଭଗବତ ବିଶ୍ୱାସରୁ। ଅହଂକାରୀ ବ୍ୟକ୍ତିର ଭଗବତ ବିଶ୍ୱାସ ନ ଥିବାରୁ ସେ ଅଧିକ ବିବ୍ରତ, ବିଚଳିତ ହୋଇଯାଏ ସମସ୍ୟା ପଡ଼ିଲେ।

ଭଗବତ ବିଶ୍ୱାସୀ ବ୍ୟକ୍ତିମାନେ ସହଜରେ ଭାଙ୍ଗି ପଡ଼ନ୍ତି ନାହିଁ। ଦୁଃଖ ଓ ବିପଦର ଲହରୀ ତାଙ୍କୁ ଚାପି ଦେବାକୁ ଚାହିଁଲେ ମଧ୍ୟ ଚାପିପାରେ ନାହିଁ। କେଉଁ ଅଦୃଶ୍ୟ ହସ୍ତର ସହାୟତାରେ ଲହରୀକୁ ଅତିକ୍ରମ କରନ୍ତି ସେମାନେ। ଅକସ୍ମାତ ନୁହେଁ, ଏକ ଦିବ୍ୟ ଶକ୍ତିଙ୍କ କୃପା ବଳରେ ରକ୍ଷା ପାଇଛନ୍ତି ବୋଲି ବୁଝିପାରନ୍ତି। ସମୟ ଓ ସୁଯୋଗ ପାଇଲେ ସେହି ଦିବ୍ୟଶକ୍ତିଙ୍କ କଥାକୁ ବାରମ୍ବାର ମନେ ପକାନ୍ତି ଏବଂ ସେହି ଦିବ୍ୟସତ୍ତାଙ୍କୁ ଖୋଜିବାକୁ ଆରମ୍ଭ କରନ୍ତି। ଏକଥା କହିଲା ବେଳେ ମୋର ମନେପଡ଼ୁଛି ଅବସର ପ୍ରାପ୍ତ ସେଇ **ବିଶିଷ୍ଟ ହୃଦ୍‌ରୋଗ** ବିଶେଷଜ୍ଞଙ୍କର କଥା କେଇପଦ। ସେଦିନ ସେ କହିଥିଲେ ଯେ ଅବସର ପରେ **ଗବେଷଣା** କରୁଛନ୍ତି। ମୋର ପ୍ରଶ୍ନ ଥିଲା 'ଅବସର ପରେ ଗବେଷଣା ?' ଉତ୍ତରରେ ସେ କହିଥିଲେ- "ପାଠପଢ଼ା ଓ ଚାକିରି କାଳ ଭିତରେ ଦେଖିଲେ ହୃତପିଣ୍ଡ ଚାଲିଛି। ଏବେ ମୁଁ ଖୋଜୁଛି କିଏ ତାକୁ ଚଲାଉଛି ?"

ସିଏ ଏକା ନୁହେଁ ତାଙ୍କ ପରି କେତେ ଜଣ ଭିନ୍ନ ଭିନ୍ନ ନିଯୁକ୍ତି କ୍ଷେତ୍ରରେ ରହି ମଧ୍ୟ ତାଙ୍କୁ ଖୋଜୁଛନ୍ତି। ପାଇବାରେ ତ ଆନନ୍ଦ ଅଛି, ମାତ୍ର ପାଇବା ଆଶାରେ ଓ ଖୋଜିବା ନିଶାରେ ଅଧିକ ଆନନ୍ଦ ଅଛି ବୋଲି ସେମାନେ ଅନୁଭବ କରୁଛନ୍ତି। ସେହି ଦିବ୍ୟଶକ୍ତି 'ଅବାଙ୍ ମାନସ ଗୋଚର' ହେଲେ ମଧ୍ୟ ଅନୁଭବ୍ୟ। ଏଇ ଅନୁଭବର ମୂଳକଥା ହେଉଛି ଆଗ୍ରହ ଓ ଆକୁଳତା। ଦିବ୍ୟଶକ୍ତି ହେଉଛନ୍ତି ମହାଭାବର ଅଧିକାରୀ ଓ ପ୍ରମୂର୍ତ୍ତ ବିଗ୍ରହ। ଭାବ ଘରେ ଚୋରି ଚଳେ ନାହିଁ କି ଲାଭ କ୍ଷତିର ଅଙ୍କ କଷା ଚଳେ ନାହିଁ। ସେ ସର୍ବତନ୍ତ୍ର ସ୍ୱତନ୍ତ୍ର, ସର୍ବ ନାମର ଅଧିକାରୀ ଓ ନିଜେ ସର୍ବନାମ। 'ଯେତେ ମତ, ସେତେ ପଥ' ନ୍ୟାୟରେ ସେ ସୁଲଭ। ଗୋଟିଏ ପୋଖରୀର ଭିନ୍ନ ଭିନ୍ନ ତୁଠରୁ ସଂଗୃହୀତ ଜଳର ନାମ ଭିନ୍ନ ଭିନ୍ନ ତୁଠରେ ଭିନ୍ନ ଭିନ୍ନ ଥିଲେ ହେଁ ଜଳ ଯେ ଏକ ଓ ଅଭିନ୍ନ – ଏଥିରେ ସନ୍ଦେହ ନାହିଁ। ସେହିପରି ଦିବ୍ୟ ଶକ୍ତିର ସ୍ୱରୂପ ଭଗବାନ ଏକ ଓ ଅଭିନ୍ନ, କେବଳ ନାମ ଭିନ୍ନ ଭିନ୍ନ ହୋଇପାରେ। ସେ ସବୁକିଛିର ଭିତରେ ରହିଛନ୍ତି ଓ ସବୁକିଛି ତାଙ୍କ ଭିତରେ ରହିଛି। ସେ ସମସ୍ତଙ୍କ ଭିତରେ ରହିଛନ୍ତି ଓ ସମସ୍ତେ ତାଙ୍କ ଭିତରେ ରହିଛନ୍ତି। ସେସବୁଠାରେ ଓ ସବୁବେଳେ ଅଛନ୍ତି। ତାଙ୍କୁ ଦେଖିବା ପାଇଁ ତୃତୀୟ ଚକ୍ଷୁଟିଏ ଦରକାର।

ନିରାଶାରେ ଆଶା ସିଏ, ଅନ୍ଧାରରେ ଆଲୋକ ସିଏ। ଅନ୍ୟବ୍ୟକ୍ତିର ମାଧ୍ୟମରେ ସାନ୍ତ୍ୱନାରେ ସାମର୍ଥ୍ୟ ସିଏ ପୁଣି ଅନ୍ୟର ଶ୍ରଦ୍ଧା ସହାନୁଭୂତିରେ ଆଗକୁ ଯିବାର ପ୍ରେରଣା ସିଏ। ତାଙ୍କ ଭିତରେ ଆମେ ଓ ଆମ ଭିତରେ ସିଏ ରହିଛନ୍ତି। ଏଇ ଦିଗରୁ ଦେଖିଲେ



Digitized by PPRACHIN, SOA

ଅନ୍ୟମାନେ ଓ ଆମେ ଏକଇ ମୁଦ୍ରାର ଦୁଇ ପାଖ ପରି ଓତଃପ୍ରୋତ ଭାବରେ ଜଡ଼ିତ। ସୁଖ ଓ ଦୁଃଖ ଉଭୟ ସଞ୍ଚରଣଶୀଳ। ଯାହା କୁହାଯାଏ - 'ସୁଖ ବାଣ୍ଟିଲେ ବଢ଼େ, ଦୁଃଖ ବାଣ୍ଟିଲେ କମେ' - କଥାଟି ଅକ୍ଷରେ ଅକ୍ଷରେ ଠିକ୍। ଅବଶ୍ୟ ସୁଖ ବାଣ୍ଟିନେବାକୁ ଓ ଦୁଃଖ ବାଣ୍ଟି ନେବାକୁ ଆଉ ଆଉ ମଣିଷ ଥିବାର ଦରକାର। ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ବୟସ ଓ ଜୀବନର ନାନା ସମସ୍ୟାର ଚାପରେ ଭାରାକ୍ରାନ୍ତ ପିତାମାତାଙ୍କର ଦୁଃଖକୁ ପିଲାମାନେ ବାଣ୍ଟି ନେଲେ ତାହା କମିଯାଏ। ସେମାନଙ୍କ ମୁହଁରେ ପ୍ରସନ୍ନତାର ଭାବଟି ଫୁଲ ପରି ଫୁଟିଯାଏ। ଏହି ବଣ୍ଟନରେ ଅଙ୍କ କଷା ଚଳେ ନାହିଁ। ମନରେ ଅଙ୍କକଷା ରହିଲେ ସବୁ ମଧୁରତା ନଷ୍ଟ ହୋଇଯାଏ।

ଆମ ଭିତରେ ବାପା ମାଆ, ଭାଇବନ୍ଧୁ ସମସ୍ତେ ଅଛନ୍ତି, ଆମକୁ ନ ଦିଶିଲେ ମଧ ଅଛନ୍ତି। ଆମେ ସେମାନଙ୍କ ଠାରୁ ଦୂର ସ୍ଥାନରେ ଥିଲେ ମଧ ସେମାନେ ଆମ ପାଖରେ ଅଛନ୍ତି। ଦର୍ପଣରୁ ଧୂଳି ପୋଛି ଦେଲେ ମୋନଙ୍କ ମୁହଁ ଜକଜକ ଦିଶିବ। ଦୂରରେ ଥାଇ ଆମେ ଶୁଣି ନ ପାରିଲେ ମଧ ବାପା ମାଆ କହୁଛନ୍ତି- "ହାତୀ ବନସ୍ତରେ ଥିଲେ ରଜାଙ୍କର"। ଏକଥାଟି ତାଙ୍କ ଅନ୍ତରର କଥା, ହୃଦୟର କଥା। ଏକଥାଟି ଯେପରି ଅକ୍ଷରେ ଅକ୍ଷରେ ସତ୍ୟ, ଆଉ କଥାଟି ମଧ ସେହିପରି ଅକ୍ଷରେ ଅକ୍ଷରେ ସତ୍ୟ ଯେ ରଜା ହେଉଛନ୍ତି ହାତୀର। 'ରଜା ଆଉ ହାତୀ' ପୁଣି 'ହାତୀ ଆଉ ରଜା'- ଏଥିରେ ଶବ୍ଦଗୁଡ଼ିକର ସଜ୍ଜୀକରଣ ଟିକିଏ ଅଲଗା ସିନା, ଅର୍ଥ ଦୃଷ୍ଟିରୁ ମୂଳତଃ କଥାଟି ଏକଇ ସୂକ୍ଷ୍ମ ସୂତ୍ରରେ ବନ୍ଧା। ସେ ସୂତ୍ରକୁ ଟିକିଏ ନିରେଖି ଦେଖିଲେ ସ୍ୱଷ୍ଟ ଦେଖିହେବ ଏବଂ ସେହି ଅର୍ଥକୁ ଟିକିଏ ତଳେଇ କରି ବୁଝିରେ ସ୍ୱଷ୍ଟ ବୁଝିହେବ। ଲାଭ କ୍ଷତିର ଅଙ୍କ କଷାରେ ଏହାକୁ ଦେଖିହେବ ନାହିଁ ଅଥବା ବୁଝି ହେବ ନାହିଁ।





Digitized by PPRACHIN, SOA

# ଅବିଦ୍ୟା, ବିଦ୍ୟା ଓ ଅର୍ଥକାରୀ ବିଦ୍ୟା

ମଣିଷ ଭିତରେ ଯେତିକି ଚେତନା ସୁପ୍ତଭାବରେ ରହିଛି, ସେ ଦିବ୍ୟଦୃଷ୍ଟିରୁ ଅଧିକାରୀ ହୋଇପାରନ୍ତା । ମିଥ୍ୟାରୁ ସତ୍ୟ ଆଡ଼କୁ, ଅନ୍ଧାରରୁ ଆଲୋକ ଆଡ଼କୁ, ମୃତ୍ୟୁରୁ ଅମରତ୍ୱ ଆଡ଼କୁ ଗତିଶୀଳତାର ତା'ର ଜନ୍ମଗତ ଅଧିକାର । ସେ ଅଧିକାରକୁ କିନ୍ତୁ ସେ ସାବ୍ୟସ୍ତ କରିପାରୁନାହିଁ । ଆଲୋକ ପ୍ରତି ତା'ର ଆଗ୍ରହ ନାହିଁ, କାରଣ ଆଲୋକର କ୍ରିୟାଶୀଳତା ପ୍ରତି ସେ ବିଶ୍ୱସ୍ତ ନୁହେଁ । ନିଜର ଦୃଷ୍ଟିଶକ୍ତି ନଷ୍ଟ ହୋଇଯାଇଥିବାରୁ ଆଲୋକର ମହତ୍ତ୍ୱ ଓ ଗୁରୁତ୍ୱ ବୁଝିବା ତା ପକ୍ଷରେ ପ୍ରାୟ ଅସମ୍ଭବ ହୋଇପଡୁଛି । ଦୃଷ୍ଟିଶକ୍ତି ବିନା ଅନ୍ଧତ୍ୱ ଆସିଥାଏ । ଏହି ମାନସିକ ଅନ୍ଧତ୍ୱର ମୂଳ କାରଣ ରୂପେ ଯାହାକୁ ବିଚାର କରାଯାଏ, ତାହା ହେଉଛି ଅବିଦ୍ୟା । ଅବିଦ୍ୟା ଏକ ଦାର୍ଶନିକ ପରିଭାଷା । ଏହା ଏକ ସାଂଘାତିକ ବ୍ୟାଧି ଯାହା ବ୍ୟକ୍ତିକୁ ନଷ୍ଟକରି ତା'ର ପରିବାରକୁ ତଥା ସମାଜକୁ ନଷ୍ଟ କରିଦିଏ । 'ବୈକୁଣ୍ଠ ସମାନ ଆହା ଅଟେ ସେହି ଘର ।' ଏହି କଥାଟି କେବଳ କଥାରେ ରହିଯାଏ ଅବିଦ୍ୟାର ପ୍ରଭାବରେ । ମନୁଷ୍ୟର ନିମ୍ନ ପ୍ରକୃତିକୁ ମାଧ୍ୟମ କରି ଅବିଦ୍ୟା କାର୍ଯ୍ୟ କରିଥାଏ । ଏ କାର୍ଯ୍ୟରେ ଯେଉଁ ଦୁଇଟି ଉପାଦାନ ମୁଖ୍ୟ ଭୂମିକା ନେଇଥାନ୍ତି ସେଥିରୁ ଗୋଟିଏ ହେଲା ଅହଂ ଓ ଅନ୍ୟଟି ସ୍ୱାର୍ଥ ।

ଅହଂ ବଳରେ ମଣିଷର ନିଜକୁ ଆବଶ୍ୟକତାଠାରୁ ଅଧିକ ବଡ଼ ମନେକରେ । ଅନ୍ୟମାନଙ୍କୁ ସାନ ଓ ମୂଲ୍ୟହୀନ ବୋଲି ସେ ବିଚାର କରିଥାଏ । ଆତ୍ମ ପ୍ରଶଂସାର ଲାଳସା, ନିଜକୁ ଜାହିର କରିବାର ପ୍ରବୃତ୍ତି ତାକୁ କିମ୍ଭୂତ କିମାକାର କରିଦିଏ । ସେ ନିଜର ପ୍ରକୃତ ଗନ୍ତବ୍ୟ ପଥରେ କେବେବି ପାଦ ରଖିବାର ସୌଭାଗ୍ୟ ପାଏନାହିଁ, କେବଳ ପାଦ ରଖିବାର ଛଳନା କରୁଥାଏ । ହୀରାକୁ କାଚ ଭାବି ଦୂରକୁ ଫିଙ୍ଗିଦିଏ କାଚକୁ ହୀରା ଜ୍ଞାନକରି ଗୋଟାଇ ଆଣି ସାଇତି ରଖେ ସାମାନ୍ୟ, ସାଧାରଣ କଥାକୁ ମାଜି ମାଜି ବଡ଼କରେ ଆଉ କଥା ବଢ଼ିଗଲେ ମୁଁ, ମୁଁ, ମୋର, ମୋର ଏପରି ଶବ୍ଦର ବହୁଳ ବ୍ୟବହାର ସେ କରୁଥାଏ । ଅନ୍ୟର ସୁଖ ସୌଭାଗ୍ୟ ଦେଖିଲେ ମନ ତା'ର ହିଂସାରେ ଜଳୁଥାଏ । କ୍ରୋଧରେ ଜର୍ଜରିତ ହୋଇ ଦିନ କି ରାତି ସେ ଅନ୍ୟର ଅନିଷ୍ଟ ଚିନ୍ତା ହିଁ କରୁଥାଏ । ଈର୍ଷାକୁ ମନରେ ସ୍ଥାନଦେଇ ତାହାଦ୍ୱାରା ପରିଚାଳିତ ହୋଇ ସେ ଆସୁରିକ ଆନନ୍ଦ ପାଏ, ମାତ୍ର ସେ ଆନନ୍ଦ ପ୍ରକୃତ ଆନନ୍ଦ ପଦବାଚ୍ୟ ନୁହେଁ । ତାହା ଆନନ୍ଦର ଏକ ବିକୃତ



Digitized by PPRACHIN, SOA

ରୂପ । ଅନ୍ୟର ଅନିଷ୍ଟ ଚିନ୍ତା ହୃଦୟର ମଧୁରତା ଓ ଚିନ୍ତାଧାରାର ପବିତ୍ରତାକୁ ନଷ୍ଟ କରିଦିଏ । ପରିବେଶରେ ବିଷାକ୍ତ ବଳୟ ସୃଷ୍ଟି ହୁଏ ।

ସ୍ୱାର୍ଥ ଅନ୍ୟ ଏକ କଳଙ୍କିତ ଉପାଦାନ ଯାହା ମନୁଷ୍ୟକୁ ନିମ୍ନଗାମୀ କରାଇଥାଏ । ତାହା ମଣିଷର ଚେତନାର ପ୍ରଗତି ପଥରେ ଅନ୍ତରାୟ ସୃଷ୍ଟି କରେ । ଏହି ଗୁଣ ବଳରେ ମଣିଷ ନିଜର ସୁଖ ସୁବିଧାପାଇଁ ଅନ୍ୟର ଅସୁବିଧା କରିବା ପାଇଁ କୁଣ୍ଠା ପ୍ରକାଶ କରେନାହିଁ । ବରଂ ଅନ୍ୟର ଅସୁବିଧା କରି ନିଜର ସୁବିଧା କରିବାପାଇଁ କୌଶଳ ପ୍ରୟୋଗ କରିଥାଏ । ଏଥିପାଇଁ ଅନ୍ୟର ମନରେ ଦାରୁଣ ଆଘାତ ଲାଗିଲେ ମଧ୍ୟ ସେ ସେଥିରେ ଆଦୌ ବିଚଳିତ ହୁଏନାହିଁ । ଏପରିକି ଅତୀତରେ ଯେଉଁମାନେ ତାକୁ ସାହାଯ୍ୟ ସହାନୁଭୂତି ଦେଇଥିଲେ, ସେ ସମୟକ୍ରମେ ନିଜର ସୁବିଧାପାଇଁ ସେମାନଙ୍କର କ୍ଷତିକରିବାକୁ ପଶ୍ଚାତପଦ ହୁଏନାହିଁ । ନିଜ ଚିନ୍ତା ବ୍ୟତୀତ ଅନ୍ୟମାନଙ୍କ ସମ୍ପର୍କରେ ଗଠନମୂଳକ ଚିନ୍ତା କରିବାପାଇଁ ତା'ର ସମୟ ନଥାଏ । କେବଳ ଅନ୍ୟଠାରୁ ଛଳେ, ବଳେ, କଉଶଳେ କିପରି ନିଜର ସୁବିଧା ହାସଲ କରାଯାଇପାରିବ ତାହା ହୋଇଥାଏ ତା'ର ଗବେଷଣାର ବିଷୟ । ଅନ୍ୟପାଇଁ ସମବେଦନା ତ ଦୂରର କଥା, କଥାପଦେ କହିବାକୁ ସମୟର ଅଭାବ ପ୍ରମାଣକରେ ତା'ର ସ୍ୱାର୍ଥପରତାରେ ଜର୍ଜରିତ ମାନସିକ ସ୍ଥିତି କେଡ଼େ ବିଷାକ୍ତ ଓ ଭୟଙ୍କର । ଅହଂ ଏବଂ ସ୍ୱାର୍ଥ ପରସ୍ପର ସହ ମୈତ୍ରୀବନ୍ଧନରେ ଆବଦ୍ଧ । ଗୋଟିକୁ ଛାଡ଼ି ଅନ୍ୟଟିର ସ୍ଥିତି ସୁଦୃଢ଼ ନୁହେଁ । ଦୁହିଁଙ୍କ ପ୍ରରୋଚନାରେ ବ୍ୟକ୍ତି ଚେତନା ନିମ୍ନାଭିମୁଖୀ ହୋଇଥାଏ । ଏହି ସୁଯୋଗନେଇ ଲୋଭ, କାମ, କ୍ରୋଧ, ମୋହ ଇତ୍ୟାଦି ଅନ୍ୟାନ୍ୟ ବିରୋଧୀ ଶକ୍ତିମାନେ ବ୍ୟକ୍ତିକୁ ଆକ୍ରମଣ କରିଥାନ୍ତି । ବିରୋଧୀ ଶକ୍ତିଙ୍କର ଜାଲରେ ପଡ଼ି ମନୁଷ୍ୟ ପ୍ରକୃତ ସୁଖପାଇବାରୁ ବଞ୍ଚିତ ହୁଏ । ମରୁଭୂମିରେ ଓଟ ନାଗଫେଣୀ କଣ୍ଟାଖାଇ ରକ୍ତାକ୍ତ ମୁଖରେ ପ୍ରାଣିକ ସୁଖ ଅନୁଭବ କଲାଭଳି ମନୁଷ୍ୟ ଅବିଦ୍ୟାର ପ୍ରଭାବରେ ଦାରୁଣ ଯନ୍ତ୍ରଣାରେ ଜର୍ଜରିତ ହୋଇ ପ୍ରାଣିକ ସୁଖ ଅନୁଭବ କରୁଥାଏ । ସେହି ସୁଖ ହୁଏ ତା'ର ଦୁଃଖର କାରଣ । କାରଣ ଏଥିରେ ଦୁଃଖର ବୀଜ ଲୁକ୍କାୟିତ ହୋଇ ରହିଥାଏ । ପ୍ରକୃତ ସୁଖଠାରୁ ଏହା ଗୁଣ ଓ ଧର୍ମରେ ଭିନ୍ନ । ପ୍ରକୃତ ସୁଖର ସଂଜ୍ଞା ଅଲଗା । ଏହାର ପ୍ରଭାବରେ ମନରେ ଆସେ ପ୍ରଶାନ୍ତିର ସୁଲଳିତ ସ୍ପର୍ଶ, ମାଦକତାର ସୁକୁମାର ବିଳାସ ।

ପ୍ରକୃତ ସୁଖପାଇଁ ବିଦ୍ୟାର ଆହରଣ ଏକମାତ୍ର କାମ୍ୟ । ଏହି ବିଦ୍ୟା ତଥାକଥିତ ଆନୁଷ୍ଠାନିକ ଶିକ୍ଷା ନୁହେଁ । ବିଦ୍ୟା ଏକ ଦାର୍ଶନିକ ପରିଭାଷା ଯାହା ମୁଖ୍ୟତଃ ଦୁଇଟି ବିଭବରେ ବିମଣ୍ଡିତ । ସେଥିରୁ ଗୋଟିଏ ହେଉଛି ବିବେକ ଓ ଅନ୍ୟଟି ବୈରାଗ୍ୟ । ବିବେକ କହିଲେ ମାନବିକତାକୁ ବୁଝାଇଥାଏ । ବୈରାଗ୍ୟ କହିଲେ ପଳାୟନକୁ ବୁଝାଏ ନାହିଁ । ସ୍ୱାର୍ଥ ବିହୀନ ମନୋବୃତ୍ତି ହିଁ ବୈରାଗ୍ୟର ମୂଳତତ୍ତ୍ୱ । ବିବେକ ଓ ବୈରାଗ୍ୟ



Digitized by PPRACHIN, SOA

ଲାଭ ନିମନ୍ତେ ଯେଉଁ ଦୁଇଗୋଟି ମାର୍ଗ ଏକାନ୍ତ ଧ୍ୟେୟ ତାହା ହେଲା ଅଭୀପ୍ସା ଓ ପ୍ରତ୍ୟାଖ୍ୟାନ । କେବେ କେବେ ସ୍ଥଳବିଶେଷରେ ପ୍ରତ୍ୟାଖ୍ୟାନ ଆଗ ଆସେ ଓ ପରେ ଅଭୀପ୍ସା ଆସିଥାଏ । ଆଉ କେବେ ଅଭୀପ୍ସା ଆଗ ଆସେ ଓ ପରେ ପ୍ରତ୍ୟାଖ୍ୟାନର ପର୍ବ ଆରମ୍ଭ ହୁଏ । ଅଭୀପ୍ସା ହେଉଛି ଇଚ୍ଛା ଶକ୍ତିର ଅନ୍ୟ ଏକ ରୂପ । ଏହା ବଳରେ ବିଦ୍ୟାଲାଭ ପାଇଁ ମନରେ ସୁଦୃଢ଼ ସଂକଳ୍ପ ସୃଷ୍ଟି ହୁଏ । ସତ୍ ମାର୍ଗରେ ଅଗ୍ରଗତି କରିବା ନିମନ୍ତେ ପ୍ରବଳ ଆକାଂକ୍ଷା ମନରେ ଆସନ ଅଧିକାର କରିଥାଏ । ପ୍ରତ୍ୟାଖ୍ୟାନ ହେଉଛି ବିରୋଧୀ ଚିନ୍ତା ଓ କ୍ରିୟାର ପରିତ୍ୟାଗ । ସଂସାରରୁ ପଳାୟନ, ପ୍ରତ୍ୟାଖ୍ୟାନର ଅନ୍ତର୍ଭୁକ୍ତ ନୁହେଁ ।

ଆଳସ୍ୟ, ଜଡ଼ତା, ଲୋଭ, ମୋହ, ଅକୃତଜ୍ଞତା, ରୁକ୍ଷତା ସମେତ ବହୁ ଦୁର୍ଗୁଣର ପ୍ରତ୍ୟାଖ୍ୟାନ ପ୍ରୟାସ ମଣିଷକୁ ଉଚିତ ମାର୍ଗ ଦର୍ଶନ କରାଇଥାଏ । ଏଠାରେ ପ୍ରଶ୍ନ ଉଠିପାରେ ଅର୍ଥ ପ୍ରତ୍ୟାଖ୍ୟାନର ଉପାଦାନ କି ? ଉତ୍ତରରେ ଏତିକି କୁହାଯାଇପାରେ ଯେ ଅର୍ଥ ଏକ ଶକ୍ତି, ଏହା ପ୍ରତ୍ୟାଖ୍ୟାନର ବିଷୟ ନୁହେଁ । କେବଳ ଏହାର ଉପାର୍ଜନ ଓ ବ୍ୟବହାରରେ ଅଧିକରୁ ଅଧିକ ସଚେତନତା ଆବଶ୍ୟକ । ମାର୍ଜିତ ରୁଚି ଓ ଚେତନାରେ ରହି ଅର୍ଥର ଅର୍ଜନ ଓ ବ୍ୟବହାର କଲେ ଅର୍ଥଶକ୍ତି ମାନବ ଜାତିର ଅଶେଷ କଲ୍ୟାଣ ସାଧନ କରିପାରିବ, ଅର୍ଥକରୀ ବିଦ୍ୟା ରହିବ । ଅର୍ଥକରୀ ବିଦ୍ୟା କହିଲେ ତଥାକଥିତ ଭୌତିକ ବିଦ୍ୟାକୁ ବୁଝାଏ ଯାହା ମଣିଷର ବିକାଶ ନିମନ୍ତେ ଅପରିହାର୍ଯ୍ୟ । ବୈଜ୍ଞାନିକ ଅନୁଚିନ୍ତା ରହିବ, ତା ନହେଲେ ମାନବ ଜାତିର ପ୍ରଗତି ବ୍ୟାହତ ହେବ, ବିଶ୍ୱ ଜୀବନର ସର୍ବାଙ୍ଗୀନ ବିକାଶ ସୁଦୂର ପରାହତ ହେବ । ସବୁ ଭୌତିକ ବିଦ୍ୟା ରହିବ, ମାନବିକତା ଯେତିକି ଯେତିକି ଅଧିକ ପ୍ରକଟିତ ହେବ, ଅବିଦ୍ୟା ସେତିକି ବିଦ୍ୟାରେ ରୂପାନ୍ତରିତ ହେବା ସଙ୍ଗେ ସଙ୍ଗେ ଅର୍ଥକରୀ ବିଦ୍ୟା ମାଧ୍ୟମରେ ବ୍ୟକ୍ତି ଜୀବନ, ରାଷ୍ଟ୍ର ଜୀବନ ତଥା ବିଶ୍ୱ ଜୀବନ ସେତିକି ସେତିକି ଅଧିକ ପରିମାଣରେ ମଧୁମୟ ହେବ ।





Digitized by PPRACHIN, SOA

# ଜୀବନ ଜିଜ୍ଞାସା :
# ଅତୀତ, ବର୍ତ୍ତମାନ, ଭବିଷ୍ୟତ

ଜୀବନ ହେଉଛି ଏକ ନିରବଚ୍ଛିନ୍ନ ପ୍ରବାହ, ଶାଶ୍ୱତଙ୍କ ଆଡ଼କୁ ଏକ ଏକ ଅଗ୍ରଗାମୀ ପଦକ୍ଷେପ । ଅଚେତନାରୁ ଚେତନା ଆଡ଼କୁ, ଅନ୍ଧାରରୁ ଆଲୋକ ଆଡ଼କୁ, ମୃତ୍ୟୁର ଅମରତ୍ୱ ଆଡ଼କୁ ଅଗ୍ରଗତି ପାଇଁ ଏକ ସୁବର୍ଣ୍ଣ ସୁଯୋଗ । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ପରିବ୍ୟାପ୍ତ ସମୟ ସୀମାକୁ ଜୀବନ ବୋଲି କହିଲେ ତାହା ଯଥାର୍ଥ ନୁହେଁ । ଜୀବନର ପରିବ୍ୟାପ୍ତି ଦିଗନ୍ତବିସ୍ତାରୀ ଏହାକୁ ନିର୍ଦ୍ଦିଷ୍ଟ ସମୟସୀମାରେ ବାନ୍ଧିହେବ ନାହିଁ । ଭାଗବତ ଚେତନାକୁ ଅନୁଭବ କରି ତାହାକୁ ଅଭିବ୍ୟକ୍ତି କରିବା ହିଁ ଜୀବନର ଯଥାର୍ଥ ଲକ୍ଷ୍ୟ । ଜୀବନକୁ ବୁଝିବାର ଅର୍ଥ ଠିକ୍ ଅର୍ଥରେ ଭଗବାନଙ୍କୁ ବୁଝିବା । ଜୀବନକୁ ଅନୁଶୀଳନ କରିବାର ଅର୍ଥ ଭାଗବତ ଶକ୍ତି ସମ୍ପର୍କରେ ଅବହିତ ହେବା । ଯେଉଁଠି ଜୀବନ ଅଛି ସେଠାରେ ଆତ୍ମ ଅଭିବ୍ୟକ୍ତି ପ୍ରୟାସ କ୍ଷୀଣରୁ ବୃହତ୍ତର ପରିଧି ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇ ରହିଛି । ମନୁଷ୍ୟକୁ ତା'ର ଜୀବନ ଏକ ଉପହାର ସ୍ୱରୂପ ଦିଆଯାଇଛି । ଜୀବନର ସଦ୍‌ବ୍ୟବହାର ହିଁ ଜୀବନର ସାର୍ଥକତା । ଜିଜ୍ଞାସା ପ୍ରାୟ ପ୍ରତ୍ୟେକ ଭିତରେ ରହିଛି । ବ୍ୟକ୍ତି ବାହ୍ୟତଃ ବହୁକଥା ଚାହୁଁଥିଲେ ହେଁ ପ୍ରକୃତ ପକ୍ଷେ ସେ ଚାହୁଁଛି ନିଜକୁ ଜାଣିବାକୁ, ଅନୁଧ୍ୟାନ କରିବାକୁ, ଯେତେ ବ୍ୟାବହାରିକ ଜ୍ଞାନ ଆହରଣ କଲେ ମଧ ଅନ୍ତର୍ନିହିତ ସ୍ତରରେ କିଛି ଅପୂର୍ଣ୍ଣତା, ସେ ଅନୁଭବ କରୁଛି ଯେ ତାହାକୁ ପୂରଣ କରିବାପାଇଁ ତା'ଭିତରେ ପ୍ରୟାସ ମଧ ରହିଛି । ମୁଁ କିଏ ? ମୁଁ କାହିଁକି ପୃଥିବୀକୁ ଆସିଛି ? ଦେହ ଛାଡ଼ିଦେଲେ ଆଉ କିଛି ସତ୍ତା ରହେ କି ଯଦି ରହେ ତାହାର ପରିଣତି କ'ଣ ହୁଏ ଇତ୍ୟାଦି ଅନେକ ପ୍ରଶ୍ନ ତାକୁ ବେଳେ ବେଳେ ବିଚଳିତ କରିଥାଏ । ସବୁ ସମୟରେ ଏ ଜିଜ୍ଞାସା ଥିଲା ଓ ରହିବ । ଏହା ଏକ ଚିରନ୍ତନ ପ୍ରଶ୍ନ ଯାହାର ଉତ୍ତର ନ ମିଳିବା ପର୍ଯ୍ୟନ୍ତ ପ୍ରଶ୍ନକର୍ତ୍ତାର ବିଶ୍ରାମ ନାହିଁ । ଉତ୍ତର ପାଇବାକୁ ପ୍ରସ୍ତୁତି ଓ ପ୍ରଚେଷ୍ଟାର ଅନ୍ୟନାମ ସାଧନା ବା ଯୋଗ ସାଧନା । ଯୋଗ କହିଲେ କିଛିକୁ କିଛି ସହିତ ଯୋଗ କରିବାକୁ ବୁଝାଏ । ଭୌତିକ ଜଗତରେ ଯେତେ ଜ୍ଞାନ ରହିଛି ସବୁଠାରୁ ଶ୍ରେଷ୍ଠ ଜ୍ଞାନ ହେଉଛି ନିଜକୁ ଜାଣିବା, ଯେତେ ଜ୍ଞାନୀ ଅଛନ୍ତି ଏ ପୃଥିବୀରେ ସବୁଠାରୁ ଶ୍ରେଷ୍ଠ ଜ୍ଞାନୀ ହେଉଛନ୍ତି ସେହି ବ୍ୟକ୍ତି ଯିଏ ବ୍ୟାବହାରିକ ଜ୍ଞାନ ସହିତ ନିଜକୁ ଜାଣିବାର ଜ୍ଞାନ (ଆଧ୍ୟାତ୍ମିକ ଜ୍ଞାନ) ହାସଲ କରିଥାନ୍ତି । ପୂର୍ବେ ଭାରତ



Digitized by PPRACHIN, SOA

ବର୍ଷରେ ନିଜକୁ ବୁଝିବାର ପ୍ରୟାସ ପାଇଁ ବହୁକଷ୍ଟ ସ୍ୱୀକାର କରିବାକୁ ପଡୁଥିଲା । ଅତୀତରେ ବାତାବରଣ ଏପରି ଥିଲା ଯେ ଜୀବନରେ ଭଗବାନଙ୍କୁ ପାଇବାକୁ ହେଲେ ସନ୍ନ୍ୟାସ ବରଣ କରିବାକୁ ହେଉଥିଲା । ସମାଜ, ସଂସାର, ଘରଦ୍ୱାର ସବୁଛାଡ଼ି ଜଙ୍ଗଲକୁ ଯିବାକୁ ପଡୁଥିଲା । ଜଙ୍ଗଲ ଥିଲା ଥିଲା ସାଧନା ପାଇଁ ପ୍ରକୃଷ୍ଟ କ୍ଷେତ୍ର । ଝରଣା ଜଳ, ବୃକ୍ଷରୁ ପତିତ ଫଳଥିଲା ସେମାନଙ୍କର ଖାଦ୍ୟ । ଗ୍ରୀଷ୍ମ କାଳରେ ଚତୁଃପାର୍ଶ୍ୱରେ ଅଗ୍ନି ଜଳାଇ ସାଧନା କରୁଥିଲେ ସାଧକମାନେ । ଶୀତକାଳରେ ପାଣିଭିତରେ ପ୍ରବେଶ କରି ଏକନିଷ୍ଠ ଭାବରେ ଈଶ୍ୱରଙ୍କୁ ଚିନ୍ତା କରିବାକୁ ପଡୁଥିଲା । ଜୀବନ-ଜିଜ୍ଞାସା ପାଇଁ ମୁଖ୍ୟକଥା ଥିଲା ସଂସାର ତ୍ୟାଗ, ସମାଜ ତ୍ୟାଗ, ତ୍ୟାଗ କହିଲେ ଠିକ୍‌ହେବ ନାହିଁ ବରଂ ପଳାୟନ ବୋଲି କୁହାଯାଇ ପାରିବ । ନିଜର ସ୍ୱାର୍ଥପାଇଁ, ସୁବିଧା ପାଇଁ ସମାଜକୁ ଛାଡ଼ିବାକୁ ପଡୁଥିଲା । ନିଜର ମୁକ୍ତି ତଥା ଆତ୍ମାକୁ ପରମାତ୍ମାଙ୍କ ସହିତ ମିଳାଇ ଦେବାର ଆକାଂକ୍ଷାରେ ଅନୁପ୍ରାଣିତ ହୋଇ ସେମାନେ ଶରୀରକୁ କଷ୍ଟ ଦେଉଥିଲେ । ବସ୍ତୁ ବିମୁଖତା ଥିଲା ଆତ୍ମଜ୍ଞାନ ପ୍ରାପ୍ତିପାଇଁ ଏକ ମୌଳିକ ସର୍ତ୍ତ । ଏହାଦ୍ୱାରା ଅନ୍ୟମାନଙ୍କର ତଥା ସମାଜର କୌଣସି ବିଶେଷ ଲାଭ ହେଉନଥିଲା । ସାମାଜିକ ଜୀବନ ପୂର୍ବପରି ରହୁଥିଲା । ସେଥିରେ କୌଣସି ପରିବର୍ତ୍ତନ ଲକ୍ଷିତ ହେଉନଥିଲା । ଗୋଟିଏ ଶବ୍ଦରେ କହିଲେ ଏକଥା ହେବ ଯେ ପୂର୍ବର ସାଧକଙ୍କ ତପସ୍ୟା ଥିଲା ସ୍ୱାର୍ଥପରତା ଭିତ୍ତିରେ ପର୍ଯ୍ୟବସିତ । ଏଥିରେ ଦେହ ପ୍ରାଣ ଓ ମନର ସ୍ୱଭାବ ସୁଲଭ ଅଭିବ୍ୟକ୍ତି ଓ ବିକାଶ ହେଉନଥିଲା । ଆତ୍ମିକ ଚେତନାର କେବଳ ବିକାଶ ହେଉଥିଲା ଓ ଅନ୍ୟ ତିନିଗୋଟି ସତ୍ତା (ଦେହ, ପ୍ରାଣ ଓ ମନ) ପ୍ରତି ଅବହେଳା ପ୍ରଦର୍ଶନ କରାଯାଉଥିଲା, ସାଧକମାନେ ସମାଜର ବିକାଶ ନିମନ୍ତେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିପାରୁ ନ ଥିଲେ । ଅବଶ୍ୟ ଏଥିରେ କାହାରି ଦୋଷ ନାହିଁ । ସମୟର ଆବେଦନ ଅନୁସାରେ ମନୁଷ୍ୟ ପରିଚାଳିତ ହେବାକୁ ବାଧ୍ୟ ହୁଏ । ସାଧନା ବ୍ୟକ୍ତିଗତ ସ୍ତରରେ ସୀମିତ ହୋଇ ରହିଥିଲା । ସମୟର ପ୍ରଭାବରେ ଗତକାଲିର ଜୀବନ ଜିଜ୍ଞାସା ଥିଲା ଆତ୍ମ କୈନ୍ଦ୍ରିକ, ଏବଂ ଏକଦିଗ୍‌ଦର୍ଶୀ ଆଜି କିନ୍ତୁ ଯୁଗ ଧର୍ମରେ ପରିବର୍ତ୍ତନ ଆସିଛି । ଜୀବନଜିଜ୍ଞାସା ଅନ୍ତର୍ମୁଖୀ ହେବା ପରିବର୍ତ୍ତେ ବହିର୍ମୁଖୀ ହୋଇଛି । ଇନ୍ଦ୍ରିୟଲବ୍ଧ ସୁଖ ହୋଇଛି ଆଜିର ଦେବତାର ଆସନରେ ଆସୀନ । ବସ୍ତୁଗତ ଆଧିକ୍ୟରେ ଜୀବନର ପ୍ରତିଷ୍ଠା ଓ ପ୍ରଭାବ ପରିବ୍ୟାପ୍ତ । ମଣିଷର ଯଥାର୍ଥ ମୂଲ୍ୟାୟନ ହେଉଛି ବସ୍ତୁର ବିକାଶରେ । ଇନ୍ଦ୍ରିୟଗ୍ରାହ୍ୟ ଜୀବନରେ କେତେକାଂଶରେ ବିକାଶ ସଂଗଠିତ ହୋଇଛି ସତ ମାତ୍ର ତାହା ପୂର୍ଣ୍ଣାଙ୍ଗ ପୂର୍ଣ୍ଣତା ନୁହେଁ, ମାନସିକ ଶାନ୍ତି ଦେବାପାଇଁ ତାହା ପୂର୍ଣ୍ଣଭାବରେ ସମର୍ଥ ନୁହେଁ, ତାହା ଯାହାହେବ ତାହା ହେଉଛି ପ୍ରାଣର ଶାନ୍ତି । ପ୍ରାଣର ଶାନ୍ତି ଆବଶ୍ୟକ ମାତ୍ର ଏହା ସହିତ ମନରଶାନ୍ତି ଓ ସନ୍ତୋଷ ମଧ୍ୟ ଏକାନ୍ତ କାମ୍ୟ, ଯାହା ଭବିଷ୍ୟତରେ ସଂଗଠିତ ହେବବୋଲି



Digitized by PPRACHIN, SOA

ପୃଥିବୀର ବିଭିନ୍ନ ଅଞ୍ଚଳର ବହୁଚିନ୍ତାବିତ୍ ମତ ଦେଇଛନ୍ତି । ସେମାନଙ୍କ ମତରେ ଆଗାମୀ ଦିନରେ ମଣିଷର ଚେତନାର ସ୍ତର ପରିବର୍ତ୍ତିତ ହେବ । ତା'ର ଆଭିମୁଖ୍ୟ ଓ ଲକ୍ଷ୍ୟରେ ମଧ୍ୟ ଯଥାଯୋଗ୍ୟ ପରିବର୍ତ୍ତନ ପରିଲକ୍ଷିତ ହେବ । ବିଜ୍ଞାନର ଅଗ୍ରଗତି ହେବ ଅଧିକରୁ ଅଧିକ । ଏହା ସହିତ ଅନ୍ତରର ବିକାଶ ଘଟିବ । ବୌଦ୍ଧିକ ଓ ଆନ୍ତରିକ ଉଭୟ ଦିଗନ୍ତର ବିକାଶରେ ଜୀବନ ହେବ ଲଳିତ, ଦିବ୍ୟ ପ୍ରଭାବରେ ପ୍ରଭାବିତ । ବସ୍ତୁବାଦ ରହିବ ଏହା ସହିତ ଭାବବାଦର ମଧୁର ସମନ୍ୱୟ ସଂଗଠିତ ହେବ । ବସ୍ତୁ ରହିବ ଅଧିକରୁ ଅଧିକ ପରିମାଣରେ ମାତ୍ର ଆଜି ଯେପରି ରହିଛି ସେପରି ନୁହେଁ, ଆଗାମୀ ଦିନରେ ମଣିଷ ହେବ ଯଥାର୍ଥରେ ବସ୍ତୁର ମାଲିକ । ଜୀବନର ଅଭିବ୍ୟକ୍ତି ହେବ ଅଧିକ ସୁଲଳିତ ଓ ଆକର୍ଷଣୀୟ । ସାଧକର ସାଧନା ହେବ ସମାଜ ପାଇଁ ତଥା ସମଗ୍ର ମାନବ ଜାତିପାଇଁ ଅଭିପ୍ରେତ । ପଳାୟନ ତଥା ବସ୍ତୁ ବିମୁଖତା ଆଉ ସାଧନାର ମୁଖ୍ୟ ଅଙ୍ଗ ହେବନାହିଁ । ପଳାୟନ ନୁହେଁ, ଇଚ୍ଛାଶକ୍ତିର ଦମନ ନୁହେଁ ବରଂ ରୂପାନ୍ତର ହିଁ ହେବ ଯଥାର୍ଥ ମଣିଷ ନିମନ୍ତେ ବହୁମୂଲ୍ୟ ଉପାଦାନ । ଅରଣ୍ୟ ଗମନ, ମସ୍ତକ ମୁଣ୍ଡନ, ସନ୍ନ୍ୟାସ ଗ୍ରହଣ ତିଳକ ଧାରଣ ଇତ୍ୟାଦିର ଆବଶ୍ୟକତା ରହିବ ନାହିଁ । ଆବଶ୍ୟକ ହେବ ସଂସାରରେ ସମାଜରେ ରହି ଯଥାଯଥ କର୍ତ୍ତବ୍ୟପାଳନ ଓ ସ୍ଥିତିଶୀଳ ମନୋବୃତ୍ତିର ପରିବର୍ତ୍ତନ । ବସ୍ତୁ ଭିତରେ ଈଶ୍ୱରଙ୍କୁ ଖୋଜିବାର ଆନ୍ତରିକତା ଓ ଈଶ୍ୱରଙ୍କ ଭିତରେ ବସ୍ତୁକୁ ଦେଖିବାର ଆତ୍ମୀୟତା ସ୍ପଷ୍ଟ ଅନୁଭବ କରିହେବ । ଅତୀତର ବସ୍ତୁବିମୁଖତା ନୁହେଁ କି ବର୍ତ୍ତମାନର ବସ୍ତୁସର୍ବସ୍ୱତା ନୁହେଁ, ସେତେବେଳେ ହେବ ଚେତନାର ଉତ୍ତରଣ ପାଇଁ ପ୍ରବଳ ପ୍ରୟାସ । ବସ୍ତୁ ସେଥିରେ ବାଧକ ହେବନାହିଁ ବରଂ ଆବଶ୍ୟକ ସ୍ଥଳେ ସହାୟକ ହେବ । ସମୟ ଆସିବ ସେତେବେଳେ ସ୍ପଷ୍ଟ ଭାବରେ ବୁଝିହେବ ଯେ ବାହ୍ୟଜୀବନ କେବଳ ଜୀବନ ନୁହେଁ କି ଅନ୍ତର୍ଜୀବନ କେବଳ ଜୀବନ ନୁହେଁ । ଉଭୟ ଜୀବନର ସମ୍ୟକ୍ ସମନ୍ୱୟରେ ଯେଉଁ ପୂର୍ଣ୍ଣାଙ୍ଗ ଜୀବନ ସୁଗଠିତ ହେବ ତାହାହିଁ ହେବ ଯଥାର୍ଥ ଜୀବନ, ଦିବ୍ୟଜୀବନ । ଏହି ଦିବ୍ୟ ଜୀବନର ପବିତ୍ର ମୋହନ ସ୍ପର୍ଶରେ ଏ ପୃଥିବୀ ହେବ ଦିବ୍ୟ ଚେତନାର ଲୀଳାଧାମ, କ୍ରୀଡ଼ାପ୍ରାଙ୍ଗଣ ଏବଂ ଏକ ଅର୍ଥପୂର୍ଣ୍ଣ ସୁରମ୍ୟ ତୀର୍ଥ ।





Digitized by PPRACHIN, SOA

# ଆତ୍ମବିକାଶର ସ୍ୱରଲିପି

ଆତ୍ମ ବିକାଶ ପାଇଁ ମନୁଷ୍ୟର ଜନ୍ମ । ସେ ନିଜେ ହିଁ ନିଜର ଭାଗ୍ୟ ବିଧାତା । ସବୁ ଅବସ୍ଥାରେ ତା'ର ଆଗରେ ଦୁଇଟି ପଥ ରହିଥାଏ । ଗୋଟିଏ ପଥ ଉର୍ଦ୍ଧ୍ୱଚେତନା ଦିଗରେ ଓ ଅନ୍ୟଟି ନିମ୍ନ ଚେତନା ଦିଗରେ ଉନ୍ମୁକ୍ତ ଥାଏ । ତାକୁ ନିର୍ବାଚନ କରିବାକୁ ହୁଏ ପ୍ରତି ମୁହୂର୍ତ୍ତରେ ତା'ର ନିଜର ଗତିପଥ । ତେଣୁ ହିଁ କୁହାଯାଏ ଯେ ମନୁଷ୍ୟର ସାମର୍ଥ୍ୟ ଅଛି ନିଜର ଭାଗ୍ୟକୁ ନିୟନ୍ତ୍ରଣ କରିବା ପାଇଁ । ନିଜର ପ୍ରୟାସ ଓ ପ୍ରଚେଷ୍ଟା ଦ୍ୱାରା ମନୁଷ୍ୟ ବିଭିନ୍ନ ପ୍ରକାର ଆତ୍ମବିକାଶ କରିପାରେ । ନିଜର ଉତ୍ତମ କର୍ମ ଓ ବ୍ୟବହାର ଦ୍ୱାରା ସେ ନରନାରାୟଣରେ ପରିଣତ ହୋଇପାରେ । ପୁନଶ୍ଚ ଅସାଧୁକର୍ମ ଓ ଅସତ୍ ବ୍ୟବହାର ଦ୍ୱାରା ନରପଶୁ, ନରରାକ୍ଷସ କିମ୍ବା ନର ପିଶାଚରେ ମଧ୍ୟ ସେ ପରିଣତ ହୋଇପାରେ । ମନୁଷ୍ୟ ତା'ର ଗୁଣ, କର୍ମ ଦ୍ୱାରା ଅଭିନନ୍ଦିତ ହୋଇପାରେ ବା ନିନ୍ଦିତ ହୋଇପାରେ । ସେ ଚାହିଁଲେ ନିଜର ବିକାଶ କରିପାରେ, ପୁଣି ଚାହିଁଲେ ତା'ର ନିଜର ବିନାଶ ମଧ୍ୟ କରିପାରେ । ଆତ୍ମବିକାଶ ସମ୍ପର୍କରେ କେତେକ ତଥ୍ୟ ଏହି ପ୍ରବନ୍ଧର ଆଲୋଚ୍ୟ ବିଷୟ ବସ୍ତୁ ।

ଆତ୍ମବିକାଶ ପାଇଁ ପ୍ରଥମତଃ ଆବଶ୍ୟକ ଆତ୍ମବିଶ୍ୱାସ । ଆତ୍ମବିଶ୍ୱାସ ନ ଥିଲେ ଜୀବନରେ ଉନ୍ନତିର ମାର୍ଗ ପ୍ରଶସ୍ତ ହୁଏ ନାହିଁ । ମନରେ ଆନନ୍ଦ ରହେନାହିଁ । ପ୍ରାଣରେ ପୁଲକ ଆସେ ନାହିଁ । ସବୁକିଛି କେମିତି ନୀରସ ଶୁଷ୍କ ମନେହୁଏ । ଆତ୍ମବିଶ୍ୱାସ ବିନା ମନୁଷ୍ୟ ନିଜକୁ ସାନ ଓ ହୀନ ମନେକରେ । ଏହା ଏକ ପାପ । ନିଜ ଭିତରେ ଅନନ୍ତ ଶକ୍ତିର ଉତ୍ସ ବିରାଜମାନ । ସେହି ଶକ୍ତିର କ୍ରିୟା ଅପରିସୀମ ଓ ଅସାଧାରଣ । ସ୍ୱାମୀ ବିବେକାନନ୍ଦଙ୍କ ମତରେ "ଆତ୍ମବିଶ୍ୱାସୀ ବ୍ୟକ୍ତି ହିଁ ଯଥାର୍ଥରେ ପ୍ରଗତିଶୀଳ ବ୍ୟକ୍ତି । ଯାହାର ଆତ୍ମବିଶ୍ୱାସ ନାହିଁ ସେ ନାସ୍ତିକ ।"

ନିଜକୁ ଚିହ୍ନିବା, ବୁଝିବା ଓ ଜାଣିବା ସର୍ବାଦୌ ଆବଶ୍ୟକ । ସେଥିପାଇଁ ଯାହା ଏକାନ୍ତ ଜରୁରୀ ତାହା ହେଲା ଆତ୍ମଶକ୍ତି । ଆତ୍ମଶକ୍ତି ବଳରେ ମନୁଷ୍ୟ ସ୍ୱୟଂସମ୍ପୂର୍ଣ୍ଣ ହୋଇପାରେ । ଜୀବନର ମହତ୍ତ୍ୱ ଓ ମୂଲ୍ୟବୋଧକୁ ଉପଲବ୍ଧି କରିପାରେ । ଆତ୍ମଶକ୍ତି ପାଇଁ ପ୍ରାଥମିକ ଆବଶ୍ୟକତା ରୂପେ ଜ୍ଞାନକୁ ଗ୍ରହଣ କରାଯାଇପାରେ । ସବୁ ବିଷୟରେ କିଛି କିଛି ଜ୍ଞାନ ରହିଲେ ଆତ୍ମଶକ୍ତି ବୃଦ୍ଧି ପାଏ । ସନ୍ଦେହ ଏକ ବିରୋଧୀ ଶକ୍ତି ଯାହା ମନର ସରସତା ଓ ଶକ୍ତିକୁ ତିଳ ତିଳ କରି ନଷ୍ଟ କରିଦିଏ । ହତାଶା ମନରେ ଆସିଲେ ପ୍ରଗତିର ଦ୍ୱାରରୁଦ୍ଧ ହୋଇଯାଏ । ଅତଏବ ଆଶା, ଆନନ୍ଦ, ଉତ୍ସାହ ଓ ଧୈର୍ଯ୍ୟ-



Digitized by PPRACHIN, SOA

ଏହିସବୁ କଥା ଜୀବନରେ ଚେତନା ଆଣିଦିଏ ଓ ଆତ୍ମଶକ୍ତିର ସଞ୍ଚରଣ ପାଇଁ ଭିତ୍ତି ପ୍ରସ୍ତୁତ କରିଦିଏ । ଅବଶ୍ୟ ବିଫଳତା ଜୀବନରେ ଆସିଲେ ସେଥିପ୍ରତି ଗୁରୁତ୍ୱ ଦେବା ଅନାବଶ୍ୟକ । କାରଣ ବିଫଳତା ହିଁ ସଫଳତାର ଭିତ୍ତିଭୂମି । କୁହାଯାଏ ଯେ ଏଡ଼ିସନ୍ ବିଦ୍ୟୁତ୍ ଆବିଷ୍କାରବେଳେ ୯୦୦ ବାର ଅକୃତକାର୍ଯ୍ୟ ହୋଇଥିଲେ, ତଥାପି ସେ ସଫଳତାର ଆଶା ରଖିଥିଲେ ଓ ଶେଷରେ ସଫଳ ହୋଇଥିଲେ ଅର୍ଥାତ୍ ବିଦ୍ୟୁତ୍ ଆବିଷ୍କାର କରିଥିଲେ ।

ଆତ୍ମବିଶ୍ୱାସ ନିମନ୍ତେ ଅନ୍ୟ ଏକ ଉପାଦାନ ମହତ୍ତ୍ୱପୂର୍ଣ୍ଣ, ତାହା ହେଉଛି ଇଚ୍ଛାଶକ୍ତି । ଇଚ୍ଛାଶକ୍ତି ସର୍ବଦା ଗଠନମୂଳକ ହେବା ଆବଶ୍ୟକ । ଏହାକୁ ଅନ୍ୟ ପ୍ରକାରେ କୁହାଯାଇ ପାରେ କଳ୍ପନାଶକ୍ତି । ମଣିଷ ମନର କଳ୍ପନାରେ ଅମାପ ଶକ୍ତି ନିହିତ । ଭଲ କଳ୍ପନାରୁ ଭଲ ଫଳ ମିଳେ । ବ୍ୟକ୍ତିର କଳ୍ପନା ତତ୍ତ୍ୱ ହିଁ ତା'ର ଭବିଷ୍ୟତ ଗଠନରେ ବହୁ ସହାୟକ ହୁଏ । ଅତଏବ କଳ୍ପନାକୁ ଜୀବନ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦେବା ଉଚିତ ।

କେବଳ କଳ୍ପନା ନୁହେଁ ଏହା ସହିତ ଉଦ୍ୟୋଗକୁ ସଂଯୁକ୍ତ କରିବା ବିଧେୟ । ଉଦ୍ୟୋଗ ବିନା ଆତ୍ମବିକାଶ ହୋଇ ପାରେନାହିଁ । ଜୀବନର ଲକ୍ଷ୍ୟସ୍ଥିର କରି ଏବଂ କଳ୍ପନାଶକ୍ତିକୁ ଗୁରୁତ୍ୱ ଦେଇ ତଦନୁସାରେ କର୍ମ କରିବା ଆବଶ୍ୟକ । ଶାରୀରିକ ଶକ୍ତିର ସଦୁପଯୋଗ ହୁଏ କର୍ମରେ, ମନର ସଦୁପେଯୋଗ ହୁଏ ଭଲ ଚିନ୍ତାରେ । ଅତଏବ ଅନନ୍ଦମୟ ଜୀବନଯାପନ କରି ଆତ୍ମବିକାଶର ପଥରେ ପଥିକ ହେବା ନିମିତ୍ତ ନିଜର ମନୋନୁକୂଳ କର୍ମରେ ଜଣେ ନିଜକୁ ବ୍ୟସ୍ତ ରଖିବା ଉଚିତ । ବ୍ୟାସଦେବଙ୍କର ବାଣୀ ଅନୁସାରେ –

'ବୁଦ୍ଧି ପ୍ରଭାବ ତେଜଶ୍ଚ ସତ୍ୟମୁତ୍‌ଥାନମେବଚ
ବ୍ୟବସାୟଶ୍ଚ ଯସ୍ୟ ସ୍ୟାତ ତସ୍ୟାଽବୃତ୍ତି ଭୟଂ କୁତଃ'

ଅର୍ଥାତ୍ ବୁଦ୍ଧି, ପ୍ରଭାବ, ତେଜ, ବଳ, ପ୍ରଗତିର ଇଚ୍ଛା, ଉଦ୍ୟୋଗ ଏ ସମସ୍ତ ପୁଣି ଯାହାଠାରେ ଅଛି ତା'ର ଭୟ କ'ଣ ?

ଉଦ୍ୟୋଗ ଆରମ୍ଭ କରି ତାକୁ ଚାଲୁରଖିବା ଆବଶ୍ୟକ । ଏହାକୁ କୁହାଯାଏ ଅଧ୍ୟବସାୟ – କର୍ମର ଯୋଜନାନୁସାରେ ନିରନ୍ତର ପରିଶ୍ରମକୁ ଅଧ୍ୟବସାୟ କହନ୍ତି । ସାବଧାନତା ସହିତ ଲକ୍ଷ୍ୟ ଦିଗରେ ଏକନିଷ୍ଠ କର୍ମାଭ୍ୟାସ ଯୋଗୁଁ ସିଦ୍ଧି ହସ୍ତଗତ ହୁଏ । ଅଧ୍ୟବସାୟ ହେଉଛି ଏକପ୍ରକାର ସାଧନା ।

ଆତ୍ମବିକାଶ ପଥରେ ପାଦ ଦେବାକୁ ଇଚ୍ଛା କଲେ ବିରୋଧୀ ଶକ୍ତିଗଣ ବ୍ୟକ୍ତିକୁ ଅସୁବିଧାରେ ପକାଇବାକୁ ଚେଷ୍ଟା କରନ୍ତି । ବିରୋଧୀ ଶକ୍ତି କେବେ ବି ଚହାନ୍ତି ନାହିଁ ବ୍ୟକ୍ତିର ଆତ୍ମବିକାଶ, ତେଣୁ ସେମାନେ ବହୁ ଅଘଟଣ ଘଟାଇଥାନ୍ତି । ଲୋଭ, ମୋହ, କାମ ଆଦି ରିପୁଗଣ ଅଧିକରୁ ଅଧିକ ଆକ୍ରମଣ କରି ବ୍ୟକ୍ତିକୁ ଆତ୍ମବିକାଶ ପଥରୁ ବିଚ୍ୟୁତ କରିବା ପାଇଁ ଚେଷ୍ଟା କରନ୍ତି । ସେତେବେଳେ ବ୍ୟକ୍ତିର ସଚେତନତା ଏକାନ୍ତ କାମ୍ୟ ।



Digitized by PPRACHIN, SOA

ବିରୋଧୀ ଶକ୍ତିର କ୍ରିୟାକୁ ଚିହ୍ନି ସେମାନଙ୍କ ଦ୍ୱାରା ପ୍ରଭାବିତ ନ ହେବା ପାଇଁ ବ୍ୟକ୍ତି ସତର୍କ ରହିବା ଉଚିତ ।

ଦିଗ୍‌ଦର୍ଶନ ନିମନ୍ତେ ଭଲ ଭଲ ଗ୍ରନ୍ଥ ପାଠ ଏକାନ୍ତ ଜରୁରୀ । ଧର୍ମ ମତ ନିର୍ବିଶେଷରେ ସବୁଗ୍ରନ୍ଥର ସାରନିର୍ଯ୍ୟାସ ପ୍ରାୟ ଏକ କହିଲେ ଅତ୍ୟୁକ୍ତି ହେବନାହିଁ । ଏହା ସହିତ ପରିସ୍ଥିତିର ଅଧ୍ୟୟନ, ଅନ୍ୟର ଜୀବନଧାରା ଓ ଜୀବନୀର ଅନୁଶୀଳନ, ମାନବ ସ୍ୱଭାବର ଅନୁଶୀଳନ ଇତ୍ୟାଦିକୁ ଜୀବନରେ ଗୁରୁତ୍ୱ ଦେବା ଉଚିତ । ଏହାକୁ କୁହାଯାଏ ସ୍ୱାଧ୍ୟାୟ । ନିଜ ଜୀବନର ଅନୁଭୂତି ମଧ୍ୟ ବ୍ୟକ୍ତିକୁ ସଚେତନ କରିଥାଏ । ମହାତ୍ମା ଗାନ୍ଧୀଙ୍କ ମତରେ- "DEEP TRAGEDY IS THE SCHOOL OF GREAT MEN" ଅର୍ଥାତ୍ ଘୋର ପରାଜୟରୁ ମଣିଷ ଅଧିକ ଶିକ୍ଷା ଲାଭ କରିଥାନ୍ତି । ଏହା ମଧ୍ୟ ସ୍ୱାଧ୍ୟାୟର ଅନ୍ତର୍ଗତ । ତେବେ ପାଠ ଦ୍ୱାରା ବ୍ୟକ୍ତି ବହୁ ପ୍ରକାରେ ଉପକୃତ ହୋଇପାରେ । ଏହା ଏକ କଳା । ପୁସ୍ତକରେ ଉପସ୍ଥାପିତ ତଥ୍ୟର ମର୍ମାର୍ଥ ବୁଝିବା ଉଚିତ । ସ୍ମରଣଶକ୍ତି ସବଳ ନଥିଲେ ଗ୍ରନ୍ଥ ପଠନ ଦ୍ୱାରା କିଛି ଲାଭ ହୋଇନଥାଏ । ଖାଲି ପାଠ କଲେ ଯଥେଷ୍ଟ ଉପକାର ହୁଏନାହିଁ । ଏହା ସହିତ ବିଚାରଶୀଳତାକୁ ଯୋଗ କରିବାକୁ ହୁଏ । ନ ବୁଝି କଣ୍ଠସ୍ଥ କରିଦେଲେ ବିଶେଷ କିଛି ଲାଭ ହୁଏନାହିଁ । ପୋଥିଗତ ପାଠପରି ତାହାର ପ୍ରଭାବ କିଛି ରହେନାହିଁ । ନିଜର ଆଗ୍ରହ ଓ ଆନ୍ତରିକତା ଅନୁସାରେ ସଦ୍‌ଗ୍ରନ୍ଥ ନିର୍ବାଚନ କରି ତାକୁ ଏକାଗ୍ର ଚିତ୍ତରେ ଅଧ୍ୟୟନ କ'ଲେ ସେଥିରୁ ଚେତନାର ବିକାଶ ପାଇଁ ଯଥେଷ୍ଟ ଉପାଦାନ ମିଳିଥାଏ ।

ବିଚାରଶୀଳତା ପ୍ରୟୋଗ କରି ହୃଦୟଙ୍ଗମ କରିବା ସଙ୍ଗେ ସଙ୍ଗେ ଗ୍ରନ୍ଥଲବ୍ଧଜ୍ଞାନକୁ କ୍ରିୟାରେ ପରିଣତ କରିବା ବାଞ୍ଛନୀୟ । ଜ୍ଞାନ ବିଳାସୀ ଅପେକ୍ଷା କର୍ମଶୀଳ ବ୍ୟକ୍ତିକୁ ସମାଜରେ ଅଧିକ ସମ୍ମାନ ଓ ଶ୍ରଦ୍ଧା ମିଳେ । କୁହାଯାଏ 'ଯଃ କ୍ରିୟାବାନ୍ ସ ପଣ୍ଡିତଃ' ଅତଏବ ଏକଥା ସର୍ବବାଦୀ ସମ୍ମତ ଯେ କର୍ମଦ୍ୱାରା ହିଁ ଜ୍ଞାନ ସାର୍ଥକ ହୁଏ । କର୍ମ ମାଧ୍ୟମରେ ଜ୍ଞାନ ପରିପକ୍ୱ ହେବା ସଙ୍ଗେ ସଙ୍ଗେ ଜ୍ଞାନର ବୃଦ୍ଧି ମଧ୍ୟ ହୁଏ ।

କେବଳ ନିଜର ଅଭିଜ୍ଞତା ଓ ସ୍ୱାଧ୍ୟାୟ ଯେ ଆତ୍ମବିକାଶ ପାଇଁ ଯଥେଷ୍ଟ ତାହା ନୁହେଁ ଏହା ସହିତ ଅନ୍ୟମାନଙ୍କଠାରୁ ମଧ କିଛି କିଛି ଶିଖିବାକୁ ହୁଏ । ନିରଭିମାନ ହୋଇ ଅନ୍ୟଠାରୁ କିଛି ଭଲ ଗୁଣ ଶିଖିବା ପାଇଁ ଆତ୍ମପ୍ରସ୍ତୁତି ଦରକାର ।

ଆତ୍ମବିକାଶ କହିଲେ କେବଳ ନିଜର ବ୍ୟକ୍ତିଗତ ଚେତନାର ବିକାଶକୁ ବୁଝାଏ ନାହିଁ । ଏହା ସହିତ ପରିବେଶ ତଥା ସମାଜର ବିକାଶ ମଧ୍ୟ ସଂଶ୍ଳିଷ୍ଟ । ଜଣେ ମନୁଷ୍ୟ ଆତ୍ମବିକାଶ ପଥରେ ଚାଲିଲେ ତା'ର ପରିପାର୍ଶ୍ୱରେ ଏକ ଗଠନମୂଳକ ବାତାବରଣ ସୃଷ୍ଟି ହୁଏ, ଯାହାର ପ୍ରଭାବରେ ଅନ୍ୟମାନେ ପ୍ରଭାବିତ ହୁଅନ୍ତି । ବ୍ୟକ୍ତିର ଆତ୍ମବିକାଶ ବଳରେ ସମୟକ୍ରମେ ବିଶ୍ୱ ଜୀବନର ଆତ୍ମବିକାଶ ସମ୍ଭବ ହୋଇପାରେ । ଆତ୍ମସଚେତନ-ବ୍ୟକ୍ତି ମାର୍ଜିତ ରୁଚି, ଅନ୍ୟମାନଙ୍କ ପାଇଁ କର୍ତ୍ତବ୍ୟବୋଧ, ସମ୍ବେଦନଶୀଳତା, ସହାନୁଭୂତି ଇତ୍ୟାଦି



Digitized by PPRACHIN, SOA

ମାନବିକ ସଦ୍‌ଗୁଣରେ ଭୂଷିତ ହୋଇଥାଏ । ସେ ଅରଣ୍ୟନିବାସୀ ହେବାଠାରୁ ସମାଜରେ ରହିବା ଶ୍ରେୟସ୍କର । ଭଲକଥାର ଯେପରି ପ୍ରଭାବ ଅଛି ଭଲ ବ୍ୟବହାରର ମଧ୍ୟ ସେପରି ପ୍ରଭାବ ଅଛି । ଆତ୍ମବିକାଶ ପ୍ରୟାସୀ ବ୍ୟକ୍ତି ହୁଏ ଶାନ୍ତ, ଅହଂବର୍ଜିତ, ସ୍ଥିର, ସ୍ଥିତପ୍ରଜ୍ଞ, ଈଶ୍ୱର ବିଶ୍ୱାସୀ ଓ କର୍ମପ୍ରିୟ । ଉଦ୍‌ବେଗହୀନତା ଏହାର ଅନ୍ୟଏକ ଉପାଦେୟ ଉପାଦାନ । ଆପଣା ସ୍ୱାର୍ଥର ବିଷାକ୍ତ ବଳୟ ଭିତରୁ ମୁକ୍ତ ହେବାପାଇଁ ପ୍ରୟାସ ଓ ପ୍ରଚେଷ୍ଟା ବ୍ୟକ୍ତିକୁ ବିକାଶ ନିମନ୍ତେ ସୁବିଧା ଦିଏ, ମନକୁ ପ୍ରଶସ୍ତ କରେ, ହୃଦୟକୁ ଗଭୀରତା ଆଣିଦିଏ । ସାଧାରଣ ବ୍ୟକ୍ତି ଆପଣା ଚିନ୍ତାରେ ସାରାଜୀବନ ମଜ୍ଜି ରହିଥାନ୍ତି । କ୍ଷଣମାତ୍ର ଅନ୍ୟଚିନ୍ତା କରିବାକୁ ସମୟ ସେମାନେ ପାଆନ୍ତି ନାହିଁ । ଆତ୍ମସଚେତନ ବ୍ୟକ୍ତି ସଂକୀର୍ଣ୍ଣ ସ୍ୱାର୍ଥର ପରିସୀମାରୁ ମୁକ୍ତହୋଇ ପ୍ରଶସ୍ତ ପରିବେଶରେ ରହିବା ପସନ୍ଦ କରନ୍ତି ଓ ତହିଁରୁ ଆତ୍ମସନ୍ତୋଷ ଲାଭ କରିଥାନ୍ତି ।

ଆତ୍ମବିକାଶ ପରି ଏକ ଗୁରୁତ୍ୱ ପୂର୍ଣ୍ଣ ପ୍ରସଙ୍ଗରେ ଆଲୋଚନା କରିବା ପାଇଁ ଏହି କ୍ଷୁଦ୍ର ପ୍ରବନ୍ଧରେ ଅବକାଶ ନାହିଁ । ତେବେ ପରିଶେଷରେ ଏତିକି କୁହାଯାଇପାରେ ଯେ ମଣିଷର ଇନ୍ଦ୍ରିୟ ସବୁ ବାହାରକୁ ରହିଛନ୍ତି, ସେମାନଙ୍କୁ ମନର ଚିନ୍ତା ଦ୍ୱାରା ସତକାର୍ଯ୍ୟରେ ଲଗାଇଲେ ଆତ୍ମବିକାଶର ସମ୍ଭାବନା ରହେ, ଅନ୍ୟଥା ନୁହେଁ । ଇନ୍ଦ୍ରିୟଗଣ ସ୍ୱେଚ୍ଛାଧୀନ ଭାବରେ ନିଜ ନିଜର ପଥରେ ଚାଲିଲେ ଆତ୍ମବିକାଶ ବାସ୍ତବତାରେ ପରିଣତ ହୋଇପାରେନାହିଁ ।

ଆତ୍ମବିକାଶ ପଥରେ ଚାଲୁଥିବା ବ୍ୟକ୍ତି ଦିନେ ଆତ୍ମାକୁ ଆବିଷ୍କାର କରିବାକୁ ସମର୍ଥ ହୁଏ । ମଣିଷ ସେତେବେଳେ ପ୍ରକୃତ ଅର୍ଥରେ 'ବସୁଧୈବ କୁଟୁମ୍ବକମ୍' ତଥା 'ଆତ୍ମବତ୍ ସର୍ବଭୂତେଷୁ' ଭାବନାରେ ଭାବିତ ହୋଇଥାଏ । ଆତ୍ମାରେ ଥିବା ଶକ୍ତି ଅସୀମ ଓ ଅନନ୍ତ । ତା'ର ନେତୃତ୍ୱରେ ଏଯାବତ୍ ମଣିଷ ପରିଚାଳିତ ହୋଇନାହିଁ । ଏ ପର୍ଯ୍ୟନ୍ତ ମନ ହେଉଛି ପ୍ରଭୁ । ଆତ୍ମା ଯେବେ ପ୍ରଭୁ ହେବ ସେତେବେଳେ ଜୀବନ ଧାରା ପରିବର୍ତ୍ତିତ ହେବ । ଜୀବନରେ ଅମରତ୍ୱ ପ୍ରତିଷ୍ଠିତ ହେବ । ନୂଆ ଚେତନାର ମଧୁମହକରେ ଦିଗ ଦିଗନ୍ତ ଆମୋଦିତ ହେବ । ପ୍ରାଚୀନ ଭିତ୍ତି ଉପରେ ନୂତନର ସ୍ଥିତି ହେବ ଅତ୍ୟନ୍ତ ଆକର୍ଷଣୀୟ ଓ ଆଦରଣୀୟ । ମନର ବିକାଶ ଘଟି ସାରିଛି । ଏହାପରେ ଆବଶ୍ୟକ ଆତ୍ମାର ଉନ୍ମେଷ ଓ ବିକାଶ । ସୁଡ଼ଙ୍ଗ ଶେଷରେ ଆଲୋକ ରହିଛି । ଜଣେ ସୁଡ଼ଙ୍ଗ ପାରିହେଲେ ସେହି ଆଲୋକର ଦର୍ଶନ ପାଇବ । ଆତ୍ମବିକାଶ ପାଇଁ ଉଦ୍ୟମ ହେଉଛି ହିଁ ସୁଡ଼ଙ୍ଗରେ ଯାତ୍ରାରମ୍ଭ । ଅତଏବ ଆଜିର ଏ ସମୟ ଯାତ୍ରାରମ୍ଭର ସମୟ । ଏହା ବୃଥାରେ ବ୍ୟୟିତ ନ ହେଉ । ଆଜିର ପ୍ରସ୍ତୁତି ସାଜି ଦେଉ ଆଗାମୀ କାଲିର ଆତ୍ମସାକ୍ଷାତକାର ପାଇଁ ସୁଦୃଶ୍ୟ ସ୍ୱାଗତ ତୋରଣ ଓ ସଜାଡ଼ି ରଖୁ ପ୍ରଦୀପମାଳା ।





Digitized by PPRACHIN, SOA

# ଆନନ୍ଦବୋଧର ଭିତ୍ତି ଓ ଭୂତି

ମନୁଷ୍ୟ ଜୀବନର ଆଦ୍ୟରେ ଆନନ୍ଦର ଅଭିଷେକ, ମଧ୍ୟରେ ଆନନ୍ଦର ଲୀଳା ବିଳାସ ଓ ଶେଷରେ ଆନନ୍ଦର ପରିପୂର୍ଣ୍ଣତା, ଏହା ବିବର୍ତ୍ତନ ଧାରାର ଚମତ୍କାର ନୀତି । ଏହା ଜୀବନପାଇଁ ଯେତିକି ସତ୍ୟ, ଭୌତିକ ଜଗତପାଇଁ ମଧ୍ୟ ସେତିକି ସତ୍ୟ । ଜଗତ ହେଉଛି ପରମେଶ୍ୱରଙ୍କର ବାହ୍ୟତମ ବ୍ୟାବହାରିକ ରୂପ । ଐଶୀ ସତ୍ତାର ସ୍ୱଧର୍ମ ଓ ସ୍ୱରୂପ ଆନନ୍ଦମୟ ହୋଇଥିବାରୁ ତାଙ୍କର ବିଶ୍ୱମୟ ରୂପ ଅର୍ଥାତ୍ ଏହି ବିରାଟ ବିଶ୍ୱ ଆନନ୍ଦର ଗନ୍ତାଘର ହେବା ସ୍ୱାଭାବିକ । ମାଟିରେ, ପାଣିରେ, ପବନରେ, ଆକାଶରେ, ବତାସରେ, ବୃକ୍ଷଲତାରେ ତଥା ଜୀବଜଗତରେ ସେହି ଆନନ୍ଦ ସଞ୍ଚରିତ ଓ ପ୍ରସାରିତ । ଆନନ୍ଦରେ ମୟୂର ନାଚେ, ଚାତକ ଉଲ୍ଲସିତ ହୁଏ, ଚକୋର ମନ୍ତ୍ରମୁଗ୍ଧ ହୁଏ, ଭ୍ରମର ଗତିଶୀଳ ହୁଏ । ଆନନ୍ଦ ଏଠାରେ ସାଧନ ଓ ସାଧ୍ୟ ରୂପରେ ଦୃଷ୍ଟିକୁ ଆକର୍ଷିତ କରେ । ମନୁଷ୍ୟପାଇଁ ଆନନ୍ଦ ଭିନ୍ନ ଭିନ୍ନ ସ୍ତରକୁ ଭିନ୍ନ ଭିନ୍ନ ଧାରାରେ ଅବତରଣ କରି ଆସେ । ଦୁଃଖତା'ର ଭାଗ୍ୟଲିପି ନୁହେଁ ବୋଲି ଏବଂ ଅନ୍ୟ ପକ୍ଷରେ ଆନନ୍ଦ ତା'ର ପ୍ରାପ୍ୟ ଓ ଦାବିର ଧନ ବୋଲି ସାମାନ୍ୟ ଦୁଃଖ ମଧ୍ୟ ମନୁଷ୍ୟପାଇଁ ଅସହ୍ୟ ହୁଏ । ସୁଖର ଘନୀଭୂତ ଅବସ୍ଥାକୁ ଆନନ୍ଦ ନାମରେ ଅଭିହିତ କରାଯାଇ ପାରେ, ପୃଥିବୀର ଯେକୌଣସି ଅଂଶରେ ବ୍ୟକ୍ତିଗତ ଜୀବନକୁ ନିରେଖି ଦେଖିଲେ ସ୍ପଷ୍ଟ ଜଣାଯିବ ଯେ ସୁଖର ପରିମାଣଗତ ଆଧିକ୍ୟ ମଣିଷକୁ ବଞ୍ଚିବାପାଇଁ ପ୍ରେରଣା ଦିଏ, ଗଭୀର ଦୁଃଖରେ ଦୁଃଖୀ ବୋଲି କହି ନିଜପକ୍ଷ ସମର୍ଥନ ପୂର୍ବକ ଯେତେ ମନ୍ତବ୍ୟ ମଣିଷ ପ୍ରକାଶ କଲେ ମଧ୍ୟ ସେ ଯେ ଦୁଃଖଠାରୁ ବହୁଗୁଣିତ ସୁଖର ଅଧିକାରୀ, ଏଥିରେ ସନ୍ଦେହ ନାହିଁ । ଯେତିକି ଦୁଃଖ ଅଛି, ତାହା ଇଚ୍ଛା ବିରୁଦ୍ଧରେ ହେଲେ ମଧ୍ୟ ଆମେ ସହିବାକୁ ବାଧ୍ୟ ହେଉ । ଦୁଃଖ, ଯନ୍ତ୍ରଣା ଓ ଅଶ୍ୱସ୍ତିବୋଧର ସ୍ଥିତି ଜୀବନରେ ତଥାପି ରହିଛି, ଏହା ମୁକ୍ତ କଣ୍ଠରେ ମାନିବାକୁ ହୁଏ । ଏହାର କାରଣ ସମ୍ପର୍କରେ ସାମାନ୍ୟ ସୂଚନା ଓ ଆଲୋଚନା ବୋଧହୁଏ ଅପ୍ରାସଙ୍ଗିକ ହେବନାହିଁ । ଏହି ଦୁଃଖ କେଉଁଠାରୁ ଓ କାହିଁକି ଆସେ ? ଏ ପ୍ରଶ୍ନର ଉତ୍ତର ଦେବା ଅତ୍ୟନ୍ତ କଷ୍ଟସାଧ୍ୟ । ଏହି ବିଶ୍ୱ ତ ଭଗବତ ସତ୍ତାରେ ପରିପୂର୍ଣ୍ଣ, ଭଗବାନ ତ ଚିର ଆନନ୍ଦମୟତାର ପ୍ରତୀକ । ତେବେ ଆନନ୍ଦ ଭିତରୁ ଦୁଃଖ ଆସିଲା କିପରି ? ଏହାର ଉତ୍ତରରେ ଏତିକି କୁହଯାଇପାରେ ଯେ, ଆନନ୍ଦ ଭିତରେ ଅର୍ଥାତ୍ ଭଗବାନଙ୍କ ସତ୍ତାରେ ଦୁଃଖର ଭୂମି ନାହିଁ । ଦୁଃଖର ଭୂମି ରହିଛି ମଣିଷର ନିଜ



Digitized by PPRACHIN, SOA

ଭିତରେ । ତାହା ମଣିଷ ଅନୁଭବ ନ କରିପାରି ଭାବୁଛି ଦୁଃଖ ବାହାରୁ ଆସି ତାକୁ ଆକ୍ରମଣ କରୁଛି । କେତେକ ଦାର୍ଶନିକ ଓ ମହାପୁରୁଷ ଦୁଃଖର କାରଣ ସ୍ୱରୂପ କାମନା ବାସନାକୁ ଗ୍ରହଣ କରିଛନ୍ତି । ବୁଦ୍ଧଦେବଙ୍କ ମତରେ ଅସ୍ମିତାହିଁ ସବୁ ଦୁଃଖର କାରଣ । ଏ ମତ ବିଚାରଯୋଗ୍ୟ । ଏ ମତରେ କୁହାଯାଏ କାମନାର ବିନାଶରେ ଦୁଃଖର ବିନାଶ । ଦୁଃଖର ବିନାଶରେ ଆନନ୍ଦର ସମ୍ପ୍ରାପ୍ତି ।

ମଣିଷ ମନ ବାସନାର ଅନାବନାରେ ପରିପୂର୍ଣ୍ଣ । ସେହି ଅନାବନାରେ ବିଭିନ୍ନ ପ୍ରକାର ବିଷାକ୍ତ କୀଟପତଙ୍ଗ ଲୁଚିରହିବା ଯୁକ୍ତିଯୁକ୍ତ । ସେମାନେ ମନର ସ୍ୱାଭାବିକ ବିକାଶକୁ ବ୍ୟାହତ କରିବା ସଙ୍ଗେ ସଙ୍ଗେ ମଣିଷକୁ ଆନନ୍ଦ ଲାଭରୁ ବଞ୍ଚିତ କରନ୍ତି । ଏଠାରେ ମନକୁ ଆଉ ଏକ ପ୍ରଶ୍ନ ଆସିବା ସ୍ୱାଭାବିକ । ପ୍ରଶ୍ନ ହେଲା ମଣିଷ ଦୁଃଖ ଭୋଗ କରିବାପାଇଁ ଏତେ କାମନା ବାସନା ଜାଲରେ ଆବଦ୍ଧ ହେଲା କେତେବେଳେ ? ଏହାର ଉତ୍ତରରେ ଏହା କୁହାଯାଇପାରେ ଯେ କାମନା ବାସନା ଜନ୍ମ ଜନ୍ମାନ୍ତର ଧରି ଜୀବନ ସହିତ ମିଶି ରହିଥାଏ । ପୂର୍ବ ଜନ୍ମରେ ଥିବା କାମନାର ପ୍ରଭାବ ପର ଜନ୍ମରେ ମନକୁ ବିଚଳିତ କରିଥାଏ । ଗୋଟିଏ ବାସନାର ତୃପ୍ତି କରୁ କରୁ ଏକାଧିକ ବାସନା ଜାଲରେ ମଣିଷ ଆବଦ୍ଧ ହୁଏ । ଫଳତଃ ଚକ୍ରବତ୍ ଚାଲିଥାଏ କାମନାର ପୂର୍ଣ୍ଣତା ପାଇଁ ଲାଳସା ଓ ତଜ୍ଜନିତ ଦୁଃଖଭୋଗ । ତେବେ ପୁଣି ପ୍ରଶ୍ନ ଉଠେ, କେହି ତ ସ୍ୱଇଚ୍ଛାରେ ଦୁଃଖ କାମନା କରେ ନାହିଁ, ସମସ୍ତେ ସୁଖ କାମନା କରିଥାନ୍ତି । ସୁଖ ପ୍ରାପ୍ତି ତ ମଣିଷର ଦାବି । ସେ ଯଦି ସୁଖ କାମନା କରେ ତେବେ ତା'ର ଦୋଷ ରହିଲା କେଉଁଠି ଯେ ସେ ସେଥିଲାଗି ଦଣ୍ଡଭୋଗ କରିବ ? ଏହାର ଉତ୍ତରରେ କୁହାଯାଇପାରେ ଯେ ସୁଖକାମନା ପ୍ରକୃତ ଅର୍ଥରେ ମଣିଷ କରିପାରେ ନାହିଁ । ସେ ଯାହାକୁ ସୁଖ ବୋଲି ଭାବେ ତାହା ହେଉଛି ସୁଖର ଏକ ପ୍ରାତିଭାସିକ ରୂପ ଅଥବା ଛାୟାଚ୍ଛନ୍ନ ରୂପ । ଏ ସବୁର ଅନୁଭବ୍ୟ ମାଧ୍ୟମ ଭାବରେ ସେ ଇନ୍ଦ୍ରିୟମାନଙ୍କୁ ଗ୍ରହଣ କରେ ।

ଇନ୍ଦ୍ରିୟ ଲବ୍ଧ ସୁଖ ଯେ ପୂର୍ଣ୍ଣ ସୁଖ ନୁହେଁ ଏହା ସେ ସହଜରେ ବୁଝି ପାରେନାହିଁ । ଈଶ୍ୱରଙ୍କ ବିଚିତ୍ର ଲୀଳା ସହଜରେ ବୁଝି ହୁଏନାହିଁ । ସେ ଇନ୍ଦ୍ରିୟଗୁଡ଼ିକୁ ପୁରୋଭାଗରେ ରଖି ଅନ୍ତର୍ଦ୍ଦେଶରେ ପ୍ରକୃତ ସୁଖକୁ ଲୁଚାଇ ରଖିଛନ୍ତି । ଅନ୍ତରତମ ପ୍ରଦେଶରେ ନିହିତ ସୁଖକୁ ଅନୁଭବ କରିବାପାଇଁ ବାହାର ତୋରଣ ପାର ହୋଇଯିବା ବ୍ୟତୀତ ଅନ୍ୟ ପନ୍ଥା ନ ଥିବାରୁ ଇନ୍ଦ୍ରିୟଲବ୍ଧ ଜଗତ ମିଥ୍ୟା ନୁହେଁ କି, ଇନ୍ଦ୍ରିୟଲବ୍ଧ ଅନୁଭବ ପୂର୍ଣ୍ଣ ଭ୍ରମ ନୁହେଁ । ମାତ୍ର ଏହା ପୂର୍ଣ୍ଣ ସତ୍ୟ ନ ହୋଇଥିବାରୁ ଇନ୍ଦ୍ରିୟ ମାଧ୍ୟମରେ ସୁଖର କାମନା କରି ମନୁଷ୍ୟ ପୂର୍ଣ୍ଣ ସୁଖ ପାଇ ନ ପାରି ଦୁଃଖର ଜାଲରେ ପଡ଼ିଯାଇଛି । ଅତଏବ ଏହା ପ୍ରମାଣିତ ଯେ ଆନନ୍ଦଲାଭର ଅଭୀପ୍ସା ପ୍ରତ୍ୟେକ ଜୀବ ଭିତରେ ରହିଛି ଏବଂ ମନୁଷ୍ୟ ମଧ୍ୟରେ ରହିଛି ।



Digitized by PPRACHIN, SOA

ଅସୁବିଧା ରହିଛି ତାକୁ ଚିହ୍ନିବାରେ । ପ୍ରବୃତ୍ତି ମାର୍ଗର ତୋରଣ ପାରିହେଲେ ନିବୃତ୍ତି ମାର୍ଗ ଦୃଷ୍ଟିଗୋଚର ହେଲାପରି କ୍ଷଣିକ ସୁଖକୁ ପାରି ହେଲେ ଶାଶ୍ୱତ ସୁଖର ରାଜ୍ୟ ଦୃଷ୍ଟି ପଥାରୂଢ଼ ହୋଇଥାଏ ।

ବିଶ୍ୱର ମର୍ମରେ ତଥା ଜୀବନର ମର୍ମରେ ଆନନ୍ଦ ସାଗର ପରିବ୍ୟାପ୍ତ ହୋଇରହିଛି । ଏହି ମର୍ମରେ ପ୍ରବେଶ କଲେ ସାଗରର ବିମୁକ୍ତ ସୁଷମା ଓ ଅନନ୍ତ ନୀଳିମାର ମାଧୁରିମା ସହଜରେ ଅନୁଭବ କରାଯାଇପାରେ । ଏହି ଆନନ୍ଦର ଅପେକ୍ଷାରେ ରହିଛି ବୋଲି ମଣିଷର ମନଃସ୍ତରରେ ଅମରତ୍ୱ ଆଶା ବଳବତ୍ତର ରହିଛି । ଭଗବତ ସତ୍ତାର ତିନିଗୋଟି ଦିଗ ସତ୍, ଚିତ୍ ଓ ଆନନ୍ଦକୁ ବିଚାର କଲେ ଜଣାଯିବ ଯେ ସତ୍ ଓ ଚିତ୍‌ର ମୌଳିକ ରୂପ ହିଁ ଆନନ୍ଦ । ଭଗବାନ ନିଜେ ହିଁ ଅଭିନେତା, ପୁଣି ଅଭିନୟ ଓ ରଙ୍ଗମଞ୍ଚ ଭାବରେ ବିଦ୍ୟମାନ । ତାଙ୍କ ପ୍ରକଟନର ମୂଳଲକ୍ଷ୍ୟ ହେଉଛି ଆନନ୍ଦ ଲାଭ । ଅହମିକାର ସ୍ଥିତି ଥିବା ପର୍ଯ୍ୟନ୍ତ ଜୀବ ବା ମନୁଷ୍ୟ ପ୍ରକୃତ ତତ୍ତ୍ୱକୁ ଆସ୍ୱାଦନ କରିପାରିବ ନାହିଁ । କାରଣ ଅହମିକା ମନୁଷ୍ୟକୁ ବହିର୍ମୁଖୀ କରାଏ, ଅନ୍ତର୍ମୁଖୀ କରାଏ ନାହିଁ । ଅହମିକାର ବଳୟ ଭେଦ ପରେ ପ୍ରଶସ୍ତ ଅତିଚେତନାର ସବୁଜ କ୍ଷେତ୍ରମାନ ବିସ୍ତୃତ ହୋଇ ରହିଛି ବୋଲି ଯୋଗୀ ଋଷିମାନେ କହିଛନ୍ତି । ଅହମିକାର ଅନ୍ଧକାର ମନରୁ ଦୂରୀଭୂତ ହେଲେ ଅସଲ ଆନନ୍ଦର ଭୂତି ପ୍ରକଟିତ ହେବ ଏବଂ ଆନନ୍ଦର ସ୍ନିଗ୍ଧ ଲହରୀରେ ଦିଗ ଦିଗନ୍ତ ସୁଶୋଭିତ ହୋଇ ନୟନ ମନରେ ଅପୂର୍ବ ଆକର୍ଷଣ ସୃଷ୍ଟି କରିବ ।





Digitized by PPRACHIN, SOA

# ବିଶ୍ୱ ଭ୍ରାତୃତ୍ୱ ଓ ସ୍ୱାମୀ ବିବେକାନନ୍ଦ

ବୌଦ୍ଧିକ ଚେତନାର ବିକାଶ ଫଳରେ ମାନବଜାତି କେତେକ ସମସ୍ୟାର ସମ୍ମୁଖୀନ ହୋଇଛି ଏଥିରେ ଦ୍ୱିରୁକ୍ତି ନାହିଁ । ସମୟ ସ୍ରୋତରେ ଗୋଟିଏ ଦେଶର ସମସ୍ୟା ଆଉ କେବଳ ସେହି ଦେଶର ନହୋଇ ବିଶ୍ୱ ସମସ୍ୟାର ରୂପାୟିତ ହେଉଛି । ବିଶ୍ୱ ସମସ୍ୟାର ପ୍ରଭାବ ବ୍ୟକ୍ତିକୁ ଅଳ୍ପେ ବହୁତେ, ଆକ୍ରାନ୍ତ କରୁଛି । ଦେଶ ଦେଶ ଭିତରେ ପାରସ୍ପରିକ ବୁଝାମଣା, ସଦିଚ୍ଛା ଯେ ଆଜିର ପରିପ୍ରେକ୍ଷୀରେ ଏକାନ୍ତ ଆବଶ୍ୟକ, ଏକଥା କହିବା ବାହୁଲ୍ୟ ମାତ୍ର । ମଣିଷ ବୁଦ୍ଧିବଳରେ ବହୁ ନୂତନ ତଥ୍ୟ ଉଦ୍ଭାବନ କରିଛି ଯାହାକୁ ପ୍ରୟୋଗ କରି ସେ ଗୋଟିଏ ସ୍ଥାନରେ ରହି ଅନ୍ୟଦୂର ସ୍ଥାନର ସମ୍ବାଦ ରଖିପାରୁଛି । ମାତ୍ର ବ୍ୟକ୍ତି ଭିତରୁ ଆନ୍ତରିକତା, ସହାନୁଭୂତି କ୍ରମଶଃ କମି କମି ଆସୁଛି । ଦେଶ ଦେଶଭିତରେ ଚଳଣିଗତ ପାର୍ଥକ୍ୟ ରହିବା ସ୍ୱାଭାବିକ । ଭାଷାର ଭିନ୍ନତା, ଧର୍ମର ଭିନ୍ନତା, ବେଶଭୂଷଣର ଭିନ୍ନତା ସତ୍ତ୍ୱେ ମାନସିକ ସ୍ତରରେ ସମନ୍ୱୟର ଭାବ ଆସିଲେ ବହୁ ସମସ୍ୟାର ସମାଧାନ ହୋଇପାରିବ, ବ୍ୟକ୍ତି ବ୍ୟକ୍ତି ଭିତରେ, ଜାତି ଜାତି ଭିତରେ ସହନଶୀଳତା ତଥା ସହୃଦୟତା ରହିଲେ ବିଶ୍ୱକଲ୍ୟାଣ ସାଧିତ ହେବ । ପରମପୁରୁଷ ଶ୍ରୀରାମକୃଷ୍ଣ ଏହି ଭାବନା କରିଛନ୍ତି ଓ ସ୍ୱାମୀଜୀ ତାକୁ ଭାଷାରେ ରୂପ ଦେଇଛନ୍ତି । ଶ୍ରୀରାମକୃଷ୍ଣ ସୂର୍ଯ୍ୟ ହେଲେ ବିବେକାନନ୍ଦ ତା'ର କିରଣମାଳାର ମୂର୍ତ୍ତିମନ୍ତ ରୂପରେଖ । ଶ୍ରୀରାମକୃଷ୍ଣ ଅଗ୍ନି ହେଲେ ବିବେକାନନ୍ଦ ତା'ର ଦାହିକା ଶକ୍ତିର ସାମଗ୍ରିକ ରୂପ । ବିଶ୍ୱଭ୍ରାତୃତ୍ୱ ପ୍ରତିଷ୍ଠା ନିମନ୍ତେ ଶ୍ରୀରାମକୃଷ୍ଣଙ୍କ ପ୍ରୟାସ ସର୍ବ ପ୍ରଥମେ ଦୃଷ୍ଟି ଆକର୍ଷଣ କରିଥାଏ । ତାଙ୍କ ମତରେ ସବୁଧର୍ମର ସାରବତ୍ତା ଏକ ଓ ଆଭିମୁଖ୍ୟ ଏକ, ନାମରେ ଭିନ୍ନତା ରହିଛି ମାତ୍ର । ଏ ପ୍ରସଙ୍ଗରେ ସେ ପୋଖରୀର ଉଦାହରଣ ଦେଇ ସମସ୍ୟାଟିର ସରଳ ସମାଧାନ କରିଛନ୍ତି । ଯେପରି ଗୋଟିଏ ପୋଖରୀର ଭିନ୍ନ ଭିନ୍ନ ତୁଠରୁ ପାଣି ସଂଗ୍ରହ କରି ତାକୁ ଭିନ୍ନଭିନ୍ନ ନାମ ଦେଲେ ମଧ୍ୟ ସଂଗୃହୀତ ଜଳ ଭିନ୍ନ ହୁଏ ନାହିଁ, ସେପରି ଗୋଟିଏ ସତ୍ୟକୁ ଭିନ୍ନ ଭିନ୍ନ ଧର୍ମରେ ଭିନ୍ନ ଭିନ୍ନ ନାମ ଦେଲେ ହେଁ ତାହା ଭିନ୍ନ ହୁଏ ନାହିଁ ।

ସ୍ୱାମୀ ବିବେକାନନ୍ଦ ଏ ଦିଗରେ ସୁଦୃଢ଼ ପଦକ୍ଷେପ ନେଇଛନ୍ତି । ସେ ଭାରତୀୟ ଯୁବଶକ୍ତିକୁ ସଚେତନ ହେବାକୁ ପରାମର୍ଶ ଦେଇଛନ୍ତି । ଭାରତ ତାଙ୍କ ଦୃଷ୍ଟିରେ ଭାଷାର ଏକ ଅଳଙ୍କାର ନୁହେଁ, ଏକ ଜାଗ୍ରତ ଚେତନା । ଭାରତର ଉନ୍ନତିରେ ବିଶ୍ୱର ଉନ୍ନତ



Digitized by PPRACHIN, SOA

ସମ୍ଭବ ହେବ । ବିଶ୍ୱ ମାନବ ଜାତିକୁ ଉପଯୁକ୍ତ ମାର୍ଗ ଦର୍ଶନ ନିମନ୍ତେ ଭାରତ ନିକଟରେ ରହିଛି ଅମାପ ସାମର୍ଥ୍ୟ, ଅସୀମ ଶକ୍ତି । ଭାରତ ବର୍ଷ ସ୍ୱଇଚ୍ଛାରେ ଏହାର ସଦ୍‌ବ୍ୟବହାର କରିପାରିବ । ଭାରତ ମାଟି ତାଙ୍କପାଇଁ ସ୍ୱର୍ଗଠାରୁ ଅଧିକ ଥିଲା । ଭାରତବାସୀଙ୍କୁ ଆହ୍ୱାନଦେଇ ସେ କହିଛନ୍ତି, 'ସଦର୍ପରେ ଡାକି କହ, ଭାରତବାସୀ ମୋର ଭାଇ, ଭାରତବାସୀ ମୋର ପ୍ରାଣ, ଭାରତର ଦେବ ଦେବୀ ମୋର ଈଶ୍ୱର, ଭାରତର ସମାଜ ମୋର ଶିଶୁଶଯ୍ୟା, ମୋର ଯୌବନର ଉପବନ, ମୋର ବାର୍ଦ୍ଧକ୍ୟର ବାରଣାସୀ, କହ ଭାଇ, ଭାରତର ମୃତ୍ତିକା ମୋ'ର ସ୍ୱର୍ଗ' । ଏପରି ଉଦ୍‌ବୋଧନରେ ଯେଉଁ ଦୀପ୍ତିମୟତା ରହିଛି ତାହାର **ପଟାନ୍ତର** ନାହିଁ । ଭାରତ ବର୍ଷର ଇତିହାସକୁ ପର୍ଯ୍ୟାଲୋଚନା କରି ସେ ଏହି **ସିଦ୍ଧାନ୍ତରେ** ଉପନୀତ ହୋଇଛନ୍ତି ଯେ ବିଶ୍ୱ ଜୀବନରେ ଯେତେବେଳେ ଚେତନାର **ନବୀନ ଆଲୋକ** ରେଖା ସୃଷ୍ଟି ହୋଇଛି, ତାହାର ଉତ୍ପତ୍ତି ସ୍ଥଳ ହୋଇଛି ଭାରତ ବର୍ଷ । ସମସ୍ତ **ଜ୍ଞାନ ବିଜ୍ଞାନର** ଜନ୍ମଭୂମି ବୋଲି ସେ ଭାରତକୁ ବିଚାର କରିଛନ୍ତି । ତାଙ୍କ କଥାରେ,- "ବିଶ୍ୱର ଇତିହାସ ପର୍ଯ୍ୟାଲୋଚନା କର, ଯେଉଁଠି କୌଣସି ମହାନ ଆଦର୍ଶର ସନ୍ଧାନ ମିଳିବ, ଦେଖିବାକୁ ପାଇବ ତା'ର ଜନ୍ମ ଭାରତ ବର୍ଷରେ । ସ୍ମରଣାତୀତ କାଳରୁ ଭାରତ, ମାନବ ସମାଜ ପାଖରେ ମୂଲ୍ୟବୋଧ ସମୂହର ଖଣି ସ୍ୱରୂପ ହୋଇ ରହିଛି ।"

ଉନବିଂଶ ଶତାବ୍ଦୀରେ ଭାରତୀୟ ପରିବେଶରେ କୁସଂସ୍କାରର ଅଖଣ୍ଡ ରାଜତ୍ୱ ଚାଲିଥିବା ବେଳେ ସ୍ୱାମୀଜୀଙ୍କ ଆହ୍ୱାନ ସେହି ତମସାର ଆବରଣ ଛିନ୍ନକରି ଉଷାଲୋକର ସନ୍ଧାନ ଦେଇଥିଲା । ରାଜନୈତିକ, ସାମାଜିକ, ନୈତିକ ତଥା ଧାର୍ମିକ ପରିବେଶରେ ଆବଶ୍ୟକୀୟ ପରିବର୍ତ୍ତନ ଆଣିବା ଦିଗରେ ସ୍ୱାମୀଜୀ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ତା'ର ତୁଳନା ନାହିଁ । ଅସ୍ପୃଶ୍ୟତା ନିବାରଣ ନିମନ୍ତେ ତାଙ୍କର ଶୁଭଙ୍କର ପ୍ରୟାସ ଯେପରି ସ୍ମରଣୀୟ ସେପରି ବରଣୀୟ । ମୋଚି, ମେହେନ୍ତର, କୃଷକ, କୁମ୍ଭାର, କମାର, ତେଲି ଇତ୍ୟାଦି ଅନ୍ୟାନ୍ୟ ବହୁ ବୃତ୍ତିର ଲୋକଙ୍କୁ ସେ ନିଜର ଭାଇଜ୍ଞାନ କରିବା ସଙ୍ଗେ ସଙ୍ଗେ ଅନ୍ୟମାନେ ସେମାନଙ୍କୁ ଭ୍ରାତୃତ୍ୱର ବନ୍ଧନରେ ଆବଦ୍ଧ କରନ୍ତୁ, ଏହା ତାଙ୍କର ଇଚ୍ଛା ଥିଲା ।

ଭାରତର ଅତୀତର ଗୌରବ ଗାଥା ସ୍ୱାମୀଜୀ ସ୍ମରଣ କରିଛନ୍ତି । ବିଭିନ୍ନ କ୍ଷେତ୍ରରେ ଭାରତର ମହତ୍ତ୍ୱ ଓ ମୂଲ୍ୟବୋଧ ସମ୍ପର୍କରେ ସେ ଆଲୋଚନା କରିଛନ୍ତି । ଗଣିତ, ଜ୍ୟୋତିଷ, ଜଡ଼ବିଜ୍ଞାନ, ରସାୟନ ବିଜ୍ଞାନ, ଶଲ୍ୟ ଚିକିତ୍ସା ଇତ୍ୟାଦି କ୍ଷେତ୍ରରେ ପ୍ରାଚୀନ ଭାରତର ସମୃଦ୍ଧି ଥିଲା ଅସାଧାରଣ । ସମଗ୍ର ବିଶ୍ୱକୁ ପ୍ରାଚୀନ ଭାରତର ଅବଦାନ ଯେ ଅସୀମ ଏହା ମୁକ୍ତ କଣ୍ଠରେ ସ୍ୱୀକାର୍ଯ୍ୟ । ବହୁ ବୈଦେଶିକ ଆକ୍ରମଣ ଏବଂ ଅନ୍ୟ କେତେକ କାରଣ ଯୋଗୁ ମଧ୍ୟଯୁଗର ଭାରତରେ ସମୃଦ୍ଧିର ମାନ ହ୍ରାସ ହୋଇଥିବା କଥା ସ୍ୱାମୀଜୀ ଉଲ୍ଲେଖ କରିଛନ୍ତି । ଆଧୁନିକ ଭାରତ ପୁନର୍ବାର ଜାଗ୍ରତ ହେବ ଏବଂ ବିଶ୍ୱକଲ୍ୟାଣ



Digitized by PPRACHIN, SOA

ସାଧନରେ ବ୍ରତୀ ହେବ । ଜନ ଚେତନାର ସାମଗ୍ରିକ ବିକାଶ ଆଧୁନିକ ଭାରତରୁ ଉଦ୍ଭୁତ ହେବ । ସ୍ୱାମୀଜୀଙ୍କ ମତରେ,- "ଭାରତ ପୁନର୍ବାର ଉଠିବ, କିନ୍ତୁ ଜଡ଼ର ଶକ୍ତିରେ ନୁହେଁ, ଶାନ୍ତି ଓ ପ୍ରେମର ପତାକା ଉଡ଼ାଇ ।" ଆମର ଅତୀତର ସମୃଦ୍ଧି ଆଧୁନିକ ଭାରତରେ ବହୁଗୁଣିତ ହେବ, ଏହି ଦୃଢ଼ ବିଶ୍ୱାସ ସ୍ୱାମୀଜୀ ପୋଷଣ କରିଛନ୍ତି ।

ଭାରତର ପ୍ରଗତିରେ ଜଗତର ପ୍ରଗତି ସମ୍ଭବ, ଭାରତର ପ୍ରଗତି ନହେଲେ ଜଗତର ପ୍ରଗତି ହେବ ନାହିଁ । ଭାରତର ପ୍ରଗତିର ମୂଳ ମନ୍ତ୍ର ହେଉଛି ଧାର୍ମିକ ଉନ୍ନତି । ଧର୍ମ ହିଁ ଭାରତୀୟ ଚେତନାର ଅସଲ ଚାବିକାଠି । ଏହି ଧର୍ମ ତଥାକଥିତ ଧର୍ମ ନୁହେଁ । ଏହା ଜୀବନର ଯଥାର୍ଥ ଚେତନା ବୋଲି ସ୍ୱାମୀଜୀ ମତବ୍ୟକ୍ତ କରିଛନ୍ତି । ତାଙ୍କ ମତରେ,- "ଭାରତର ଯେ କୌଣସି ଉନ୍ନତିର ଚେଷ୍ଟା କରାଯାଉ, କିନ୍ତୁ ପ୍ରଥମେ ଧର୍ମର ଉନ୍ନତି ହେବା ଆବଶ୍ୟକ । ଧର୍ମ ହିଁ ଭାରତୀୟ ଜାତୀୟ ଜୀବନର କେନ୍ଦ୍ରବିନ୍ଦୁ । ଏହା ବେଦାନ୍ତର ଧର୍ମ ଯାହା କହେ 'ଆତ୍ମନୋ ମୋକ୍ଷାର୍ଥଂ ଜଗଦ୍ଧିତାୟଚ' ଅର୍ଥାତ୍ ନିଜର ଆଧାତ୍ମିକ ଉନ୍ନତି ଓ ଜଗତର କଲ୍ୟାଣ ଏ ଦୁଇଟି ଏକ ସଙ୍ଗେ କରିବାକୁ ହେବ ।" ଧର୍ମ ସମ୍ପର୍କରେ ଯେଉଁ ବ୍ୟାଖ୍ୟା ସ୍ୱାମୀ ବିବେକାନନ୍ଦ ଦେଇଛନ୍ତି, ତାହାର ମୂଲ୍ୟ ଅସାଧାରଣ । ଏଥିରେ ସଂକୀର୍ଣ୍ଣତା ନାହିଁ ବରଂ ରହିଛି ବିସ୍ତୃତିର ପରମ ପ୍ରତିଷ୍ଠା ଓ ଚରମ ପରାକାଷ୍ଠା । ତାଙ୍କ ମତରେ,- "ଅନ୍ୟର ମଙ୍ଗଳ କରିବା ହେଉଛି ଧର୍ମ, ଅନ୍ୟର କ୍ଷତି କରିବା ହେଉଛି ପାପ, ଅନ୍ୟକୁ ଆଦର କରିବା ହେଉଛି ଧର୍ମ ଅନ୍ୟକୁ ଘୃଣା କରିବା ହେଉଛି ପାପ ।"

ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚେତନାର ମଧୁର ମିଶ୍ରଣରେ ବିଶ୍ୱ ଭ୍ରାତୃତ୍ୱର ପ୍ରତିଷ୍ଠା ସମ୍ଭବ ହେବ । ପାଶ୍ଚାତ୍ୟର ଯୁକ୍ତିବାଦ, ବୈଜ୍ଞାନିକ ଦୃଷ୍ଟିକୋଣ ସହିତ ପ୍ରାଚ୍ୟର ଆତ୍ମଚେତନା, ଆଧାତ୍ମିକତାର ମିଶ୍ରଣ ହେଲେ ବିଶ୍ୱ ସମସ୍ୟାର ସରଳ ସମାଧାନ ହେବା ସଙ୍ଗେ ସଙ୍ଗେ ବିଶ୍ୱ ପରିବାର ଗଠନର ପଥ ବିମୁକ୍ତ ତଥା ପ୍ରଶସ୍ତ ହେବ । ଶରୀରର ସୁସ୍ଥତା ଏକାନ୍ତ, କାମ୍ୟ ବୋଲି ସ୍ୱାମୀଜୀ ଉଦ୍‌ଘୋଷଣା କରିଛନ୍ତି । ସେ କହିଛନ୍ତି,- "ଗୀତା ପାଠ ଅପେକ୍ଷା ଫୁଟବଲ ଖେଳିଲେ ତୁମେ ସ୍ୱର୍ଗର ଅଧିକ ନିକଟବର୍ତ୍ତୀ ହେବ ।" ସୁସ୍ଥ ଶରୀର ବିନା ଜୀବନରେ ପ୍ରଗତି କରିବା କଷ୍ଟସାଧ୍ୟ ବ୍ୟାପାର । ଚିକାଗୋ ଧର୍ମ ମହାସଭାରେ ୧୮୯୩ ମସିହା ସେପ୍ଟେମ୍ବର ୧୧ ତାରିଖରେ ସ୍ୱାମୀଜୀ ନିଜର ଭାଷଣର ଆରମ୍ଭରେ 'ଆମେରିକା ବାସୀ ଭଉଣୀ ଓ ଭାଇମାନେ' ବୋଲି ଉଦ୍‌ବୋଧନ ମାଧ୍ୟମରେ ଭ୍ରାତୃଭାବର ପ୍ରତିଷ୍ଠା ପାଇଁ ଯେଉଁ କଲ୍ୟାଣମୟ ପ୍ରୟାସ କରିଛନ୍ତି ତାହାର ତୁଳନା ନାହିଁ ।

ବିଭିନ୍ନ ଦୃଷ୍ଟିରୁ ବିଚାରକଲେ ଏହା ଯଥାର୍ଥ ଯେ ସ୍ୱାମୀ ବିବେକାନନ୍ଦ ଭାରତରେ ଜନ୍ମଲାଭ କରିଥିଲେ ହେଁ ସେ ଥିଲେ ବିଶ୍ୱଭ୍ରାତୃତ୍ୱର ପ୍ରତୀକ । ତାଙ୍କର ମହନୀୟତା ତେଣୁ ଦେଶ ଭିତରେ ଆବଦ୍ଧ ନରହି ପ୍ରସାରିତ ହୋଇଯାଇଛି ବିଶ୍ୱର କୋଣ ଅନୁକୋଣକୁ ।



Digitized by PPRACHIN, SOA

ସମଗ୍ର ବିଶ୍ୱଥିଲା ତାଙ୍କର ନିବାସ ସ୍ଥଳ । ଭାରତବର୍ଷର ଯୁବଶକ୍ତି ଉପରେ ଅସାମାନ୍ୟ ଗୁରୁତ୍ୱ ସେ ଆରୋପ କରିଯାଇଛନ୍ତି । ବିଶ୍ୱ ପରିବାର ଗଠନ ନିମନ୍ତେ ସେ ନିର୍ବାଚନ କରିଯାଇଛନ୍ତି ଭାରତବର୍ଷକୁ ଯିଏ ଏଥିନିମନ୍ତେ ଉପଯୁକ୍ତ ମାର୍ଗ ଦର୍ଶନ ଦେଇପାରିବ । ତାଙ୍କର ବାଣୀକୁ ବିଚାର ଓ ବିଶ୍ଳେଷଣ କଲେ ସେଥିରେ ଥିବା ଅମାପ ଶକ୍ତିମତ୍ତାକୁ ସଙ୍ଗେ ସଙ୍ଗେ ଉପଲବ୍ଧି କରିବାକୁ ହୁଏ । ଆଜି ଦେହରେ ନଥିଲେ ମଧ୍ୟ ସ୍ୱାମୀଜୀ ଏକ ଜାଗ୍ରତ ବିଶ୍ୱବ୍ୟାପ୍ତ ଚେତନା ହୋଇ ରହିଛନ୍ତି ।





Digitized by PPRACHIN, SOA

# ଅନୁରାଗର ଅନୁଚିନ୍ତା

ଋତୁ ଯାଏ, ଋତୁ ଆସେ । ଶୀତ କମିଗଲେ ବସନ୍ତ ଆସେ । ବସନ୍ତ ବଢ଼ି ବଢ଼ି ଗ୍ରୀଷ୍ମରେ ପରିଣତ ହୁଏ । ଗ୍ରୀଷ୍ମ ପୁଣି ରୂପାନ୍ତରିତ ହୁଏ ବର୍ଷାରେ । ବର୍ଷାଋତୁର ଛାୟାଛନ୍ନ ପରିଣତ ରୂପେ ଶୀତ ଆସେ । କଢ଼ିମାନେ ଫୁଲ ହୁଅନ୍ତି, ଫୁଲମାନେ ବାସ୍ନାୟିତ ଡେଣା ଝାଡ଼ି ଦେଇ ଝଡ଼ି ପଡନ୍ତି । ଝରା ଫୁଲ ମାଟିରେ ମିଶି ମାଟି ହୋଇଯାଏ, ମାତ୍ର ପବନରେ ରହିଯାଏ ଫୁଲର ମହୀମୋହନା ବାସ୍ନା । ଆମ୍ବ କଷି ପାକଳ ହୁଏ, ପାଚି ଗଛରେ ଦୋଳିଖେଳେ । ସମୁଦ୍ର ଉଚ୍ଛୁଳେ । ନଈ ବହେ ମନ୍ଦ ଗତିରେ । ଆକାଶରେ ତାରାମାନେ ନୀରବ ଭାଷାରେ କଥା ହୁଅନ୍ତି । ନିଜ ନିଜର ଆଲୋକରେ ଅନ୍ୟ ତାରାମାନଙ୍କୁ ଆଲୋକିତ କରୁଥାଆନ୍ତି ।

ନୀଳ ଆକାଶରେ କୃଷ୍ଣ ପ୍ରଲେପ ମାଖି ବର୍ଷା ଆସେ । ଝକ୍‌ମରା ବିଜୁଳିରେ ଅଳଙ୍କାର ପିନ୍ଧି ଶୋଭନ ଦିଶନ୍ତି ମେଘମାଳା । ଝରଝର ବର୍ଷା ଆତ୍ମମଗ୍ନା ମାଟିରେ ଅମୃତଧାରା ପରି ଝରି ପଡ଼େ । ଆଞ୍ଜୁଳା ଭରି ସେଇ ଅମୃତକୁ ପାନ କରିଥାନ୍ତି ଗଛଲତା । ଡାଳ, ପତ୍ର ଓ ଫୁଲରେ ନୂଆ ତେଜ ଆସେ । ମାଟି ଉପରେ ଘାସ ଫୁଲର ଲଳିତ କାନ୍ତି ନିରେଖିଲା ଆଖିକୁ ଜକଜକ ଦିଶେ । ବେଳେବେଳେ ଆକାଶରେ ଇନ୍ଦ୍ରଧନୁ ଭାସେ । ସାତରଙ୍ଗର ଅମର୍ତ୍ତ୍ୟଲାବଣ୍ୟ ପହଁରିଯାଏ । କାହା ବିରହ ବ୍ୟାକୁଳତା କେଉଁଠି 'ମେଘଦୂତ'ରେ ପ୍ରତିଧ୍ୱନିତ ହୁଏ ତ ଆଉ ତ କେଉଁଠି ଶୁଭେ ପ୍ରବରଷନ ଗିରିରୁ ଲକ୍ଷ୍ମଣଙ୍କ ପ୍ରତି ଶ୍ରୀରାମଚନ୍ଦ୍ରଙ୍କ ଉପଦେଶ । କେବଳ ବର୍ଷ ନୁହେଁ, ବର୍ଷସାରା ଦିଗେ ଦିଗେ ଭିନ୍ନ ରୁଚିପୂର୍ଣ୍ଣ ଦୃଶ୍ୟ ସମ୍ଭାରର ଚାରୁଚିତ୍ର ପ୍ରକଟିତ ହୁଏ ।

ବିଶ୍ୱପ୍ରକୃତିର ଏତେ ପରିକଳ୍ପନା, ପ୍ରଯୋଜନା ଓ ପରିଚାଳନା ଆଦୌ ନିରର୍ଥକ ନୁହେଁ । ସୂକ୍ଷ୍ମ ଦୃଷ୍ଟି ଦେଇ ସେ କ୍ରିୟାରତ ଓ ଚଳ ଚଞ୍ଚଳ । ସେ ଜଡ଼ ନୁହେଁ ଜୀବନ୍ତ ଜାଗ୍ରତ ଓ ଚୈତନ୍ୟଯୁକ୍ତ । ନିଜକୁ ନିଜ ଭିତରେ ହଜାଇ, ଖୋଜିବାର ଅନୁଭବ ତା'ର ଅଛି । ଏଇ ଅନୁଭବର ଅନ୍ୟନାମ ଅନୁରାଗ । ଏଇ ଅନୁରାଗ ହିଁ ବିଶ୍ୱ ବିକାଶର ମୂଳମନ୍ତ୍ର । ଗୁରୁ ହୋଇ ଏହା ମାର୍ଗ ଦର୍ଶନ ଦିଏ, ସଖା ହୋଇ ପାଖେ ପାଖେ ଛାଇ ପରି ରହେ, ମାଆ ହୋଇ ମୁଣ୍ଡ ଆଉଁଷି ଦେଇ ଆଶିଷ ଢାଳିଦିଏ । ଅନୁରାଗ ଦିଏ ବଞ୍ଚିବାର ନିଶା ଓ ଆଗକୁ ଚାଲିବାକୁ ପାଦକୁ ପ୍ରେରଣା । ଶ୍ରୁତିମଧୁର ସ୍ୱରଟିଏ ହୋଇ ବାଜି ଉଠେ ଅନ୍ତଃକର୍ଣ୍ଣରେ । ରମ୍ୟ ସୁଷମ ଛବିଟିଏ ହୋଇ ଦିଶେ ଅନ୍ତଃଚକ୍ଷୁରେ । ଯିଏ ଏଇ ସ୍ୱରକୁ



Digitized by PPRACHIN, SOA

ସ୍ପଷ୍ଟ ଶୁଣିପାରେ, ଦିଏ ଏଇ ଚିତ୍ରକୁ ଦେଖିପାରେ, ତାର ଜୀବନ ହୋଇ ଉଠେ ଏକ ସୁଶ୍ରୀଶୋଭନ କାରୁଶିଳ୍ପ । ଜୀବନାନୁରାଗ ବିବର୍ତ୍ତିତ ହୋଇ ଜଗତାନୁରାଗର ରୂପ ନିଏ । ନିଜ ଭିତରେ ଜଗତକୁ ଓ ଜଗତ ଭିତରେ ନିଜକୁ ଦେଖିବାକୁ ବଳ ଦିଏ । ଅନ୍ତରର ସୂକ୍ଷ୍ମ ତନ୍ତ୍ରୀରେ ଝଙ୍କାର ତୋଳେ । ପୁରୁଣା କଥା ସବୁ ନୂଆ ଲାଗନ୍ତି । ନୂଆ କଥା ସବୁ ଭାଷାତୀତ ରୂପରେ ଆବିର୍ଭୂତ ହୁଅନ୍ତି । ଭୂମି ଓ ଭୂମାଙ୍କୁ ବାରମ୍ବାର ପ୍ରଣାମ କରିବାକୁ ଇଚ୍ଛା ହୁଏ । ପବନ ସେତେବେଳେ କଥା କହେ, ଝରଣା ଗୀତ ଗାଏ, ଦିଗ୍‌ବଳୟ ଦିଗ୍‌ଦର୍ଶନ ଦିଏ ନୀରବଭଙ୍ଗୀରେ । ଅତୀତର ସ୍ମୃତିଧ୍ୱନି ନିମିଷକେ ପ୍ରତିଧ୍ୱନିତୋଳେ । ଅଧିକରୁ ଅଧିକ ଆପଣାର ଲାଗେ ପତ୍ରଫାଙ୍କରୁ ଝରୁଥିବା ଜହ୍ନ କିରଣ, ନଈ ପଠାର ଗଛମାନେ ଅଧିକରୁ ଅଧିକ ଶ୍ୟାମଳ ଦିଶନ୍ତି। ଦୃଶ୍ୟକୁ ଜିଣି ଅଦୃଶ୍ୟ ଆସି ବେଳେବେଳେ ଠିଆ ହୁଏ । ସେତେବେଳେ ଭିତରେ ଓ ବାହାରେ ଅନୁପମ ଲାବଣ୍ୟର ଲେପଟିଏ ମାଖି ହୋଇଯାଏ ଜୀବନର ମାନଚିତ୍ର ଓ ମାପକାଠି ବଦଳି ଯାଏ ।

ଚେତନା ବିକଶିତ ହୁଏ ଅନୁଲମ୍ବ ଓ ଅନୁପ୍ରସ୍ଥ ଉଭୟ ଦିଗରେ ସେତେବେଳେ ଆଉ ନିଜର ସ୍ୱାର୍ଥ ପାଇଁ ଏଡେ ବଡ଼ ଗଛଟିକୁ ହାଣି ତଳେ ଶୁଖାଇ ଦେବାକୁ ମନ ବଳେ ନାହିଁ, ଫୁଲ ତୋଳୁ ତୋଳୁ କଢ଼ି, ପତ୍ର ଓ ଡାଳକୁ ମୋଡ଼ି ଦେବାକୁ ହାତ ଯାଏ ନାହିଁ । ସାଇକେଲରେ ଯାଉଥିବା ପିଲାଟିର ଧେଡ଼ିଆ କୁକୁରଟିକୁ ଗୋଇଠାଟିଏ ପକାଇବାକୁ ଇଚ୍ଛା ହୁଏ ନାହିଁ । ଆଉ ଆଉ ମଣିଷର ପଦୋନ୍ନତି କଥା ଶୁଣି ମନରେ ଈର୍ଷା ଆସେ ନାହିଁ । ଅନ୍ୟ ଦ୍ୱାରା କେତେ ଆଦୃତ ହେଲି ସେ ହିସାବ ମନକୁ ଆସେ ନାହିଁ ବରଂ ଅନ୍ୟକୁ ଆଦର କରିବାର ମାନସିକତା ବଢ଼ିଯାଏ । ସ୍ମିତ ହାସ୍ୟର ମାଧୁରିମା ଓଠରେ ପହଁରିଯାଏ ଅନ୍ୟକୁ ବୁଝିଲା ବେଳେ ଓ ବୁଝାଇଲାବେଳେ ।

ସମାଜରୁ କିଛି ନେଇ ଯିବାର ମାନସିକତା ବଦଳରେ ସମାଜକୁ କିଛି ଦେଇ ଯିବାର ଆନ୍ତରିକତା ଆସେ । ଏକ ଅଦୃଶ୍ୟ ଶକ୍ତି ପ୍ରତି ପ୍ରଣାମ ଆଭୂମ ହୁଏ । ଖାଇବା, ପିନ୍ଧିବା, ଖେଳିବା ବୁଲିବା, ସବୁ କିଛି ରହେ, ମାତ୍ର ସେ ସବୁ ଜୀବନର ଲକ୍ଷ୍ୟ ନହୋଇ ମାଧ୍ୟମ ହୋଇଯାଆନ୍ତି । ମାଧ୍ୟମ ରହେ ମାଧ୍ୟମ ଭୂମିକାରେ, ଲକ୍ଷ୍ୟ ଥାଏ ଲକ୍ଷ୍ୟ ଭାବରେ । ନିଜକୁ ଅତିକ୍ରମ କରି ନିଜେ ନିଜକୁ ପାଇ ହୁଏ ଏଇ ଅନୁରାଗରେ । ବୈରାଗ୍ୟ ନୁହେଁ କି ଆସକ୍ତି ନୁହେଁ । ଏଇ ଦୁଇଟିର ଉର୍ଦ୍ଧ୍ୱରେ ଅନୁରାଗର ସ୍ଥିତି, ଯାହାର ଅନୁଚିନ୍ତା ଓ ଅନୁଭବ ଜୀବନକୁ ମୂଲ୍ୟ ଦିଏ, ଅସୀମ ସରସତାରେ ଭରିଦିଏ ଜୀବନର କୋଣ ଅନୁକୋଣ । ଦୃଷ୍ଟିଭଙ୍ଗୀକୁ ବଦଳାଇ ଦିଏ । ଜୀବନ, ଜଗତ ଓ ବିଶ୍ୱାତୀତଚେତନାକୁ ଏକ ସୂତ୍ରରେ ବାନ୍ଧେ । ଅନ୍ୟ ଭାଷାରେ କହିଲେ ଭୂମି ଓ ଭୂମା ଚେତନାର ରମ୍ୟସମନ୍ୱୟ



Digitized by PPRACHIN, SOA

ଘଟାଏ । ସେତେବେଳେ ବିଶ୍ୱ ହୁଏ ବିକାଶର ଚାରଣ ଭୂମି, ଓ ଜୀବନ ହୁଏ ନବ ଜ୍ୟୋତିର ଝଲସିତ ଏକ ଶୁଦ୍ଧ ସାର୍ଥକ ସତ୍ତା । ଅନ୍ଧାରୀ ଦିଗନ୍ତରେ ସିନ୍ଦୂରା ଫାଟେ, ପ୍ରଭାତର ପ୍ରଭା ଉକୁଟି ଉଠେ । ଅରୁଣ କିରଣରେ ଝଲସି ଉଠେ ପ୍ରାଚୀ ଦିଗ ପୁଣି ପରେ ପରେ ଅନ୍ୟ ଦିଗ ଓ ଦିଗନ୍ତ ।





Digitized by PPRACHIN, SOA

# ଦୋଷ କେଉଁଠି ?

ଗଣ ମାଧ୍ୟମରେ ପ୍ରତିଦିନ ଯେତେ ସମ୍ବାଦ ପ୍ରକାଶିତ, ପ୍ରଚାରିତ ଓ ପ୍ରସାରିତ ହୁଏ, ତହିଁର ବହୁଳାଂଶ ଅପରାଧ ଭିତ୍ତିକ । ଦେଶର ବଡ଼ ବଡ଼ ନେତୃସ୍ଥାନୀୟ ବ୍ୟକ୍ତିଗଣ ଏଥିରୁ ବାଦ୍ ପଡନ୍ତି ନାହିଁ । କେତେବେଳେ ଲାଞ୍ଚ ମାମଲାରେ ତ ଆଉ କେତେବେଳେ ଜମି ଦୁର୍ନୀତି ମାମଲାରେ ଦୋଷୀ ସାବ୍ୟସ୍ତ ହୋଇ କାରାଦଣ୍ଡାଦେଶ ଲାଭ କରନ୍ତି । ଅଭିଯୁକ୍ତ ଆସାମୀମାନଙ୍କର ମନରେ ଦୁଃଖ ନ ଥାଏ କି ମୁହଁରେ ଅବସାଦର ଚିହ୍ନ ନଥାଏ । ଏସବୁ ସେମାନଙ୍କ ପାଇଁ ଆଭୂଷଣ, ପାରିବାର ପଣିଆ, ବୁଦ୍ଧିମତ୍ତାର ପ୍ରମାଣପତ୍ର । ସଂପ୍ରତି ଯିଏ ଯେତେ ଦୁର୍ନୀତିଗ୍ରସ୍ତ ସେ ସେତେ ବୁଦ୍ଧିମାନ, ସେ ସେତେ ବଳିଷ୍ଠ ବ୍ୟକ୍ତିତ୍ୱର ଅଧିକାରୀ । ଯେନତେନ ପ୍ରକାରଣେ ଧନୀ ହେବା ଦରକାର । ଦୁର୍ନୀତି ଏବେ ନୀତିର ପର୍ଯ୍ୟାୟଭୁକ୍ତ । ଅସଲ ନୀତି ଦୂରକୁ-ଦୂରକୁ ଅପସରି ଯାଇ କେଉଁଠି ଆତ୍ମଗୋପନ କରିଛି ଯେ ତାକୁ ଠାବ କରିବା ଏକ ପ୍ରକାର ଅସମ୍ଭବ । ଯଦି କିଏ ନୀତିରେ ଚଳିଲା ତେବେ ତା'ର ନାମ ଦୁର୍ବଳ ଲୋକଙ୍କର ତାଲିକାଭୁକ୍ତ ହେଉଛି । ନୀତି କଥା କହୁଥିବା ଯୁବକଟି ପୁରୁଣା କାଳିଆ ବୃଦ୍ଧରେ ଗଣା ହେଉଛି ।

ସମସ୍ୟାଟି ଏହିପରି ଯେ ତଥାକଥିତ ପ୍ରତିଷ୍ଠିତ ବ୍ୟକ୍ତିଗଣ ଯଦି ଏପରି ଅସାମାଜିକତାକୁ ଗଳାହାର କରନ୍ତି ଓ ତଦ୍‌ଜନିତ ସମ୍ବାଦ ପରିବେଷଣରେ ନିଜକୁ ଗୌରବାନ୍ୱିତ ମନେ କରନ୍ତି ତେବେ ସାଧାରଣ ଲୋକେ କାହାକୁ ଚାହିଁ ବାଟ ଚାଲିବେ ? ସମାଜ ଜୀବନର ସୁସ୍ଥତା ପାଇଁ ଆବଶ୍ୟକୀୟ ଏକ ଆଦର୍ଶ ଓ ଲକ୍ଷ୍ୟ । ଯଦି କିଛି ଆଦର୍ଶ ନ ରହିବ, ତେବେ ଜନ ସାଧାରଣ ଉଦ୍‌ଭ୍ରାନ୍ତ ନ ହୋଇ ଆଉ ହେବେ କଅଣ ? କଥା ପ୍ରସଙ୍ଗରେ ସେଦିନ ଜଣେ ଭଦ୍ରଲୋକ କହୁଥିଲେ "ଆଜ୍ଞା, ହିଂସ୍ରତା ଓ ବ୍ୟଭିଚାର ଏ ଦୁଇଟି ଗୋଟିଏ ମୁଦ୍ରାର ଦୁଇପାଖ ପରି ଓତପ୍ରୋତ ଭାବରେ ଜଡ଼ିତ । ଯେଉଁଠି କାମବାସନା ପ୍ରବଳ, ସେଇଠି ହିଂସତା ପ୍ରବଳ । ଗୀତାର କଥା ଅନୁସାରେ କାମାତ୍ କ୍ରୋଧ ଉତ୍ପନ୍ନ । ସେ କାମନା ଶାରୀରିକ, ପ୍ରାଣିକ ବା ମାନସିକ ହୋଇପାରେ ।"

ଅତୀତରେ କାମନା ଥିଲା ଓ ତା'ର ପରିପୂର୍ତ୍ତି ନିମନ୍ତେ କିଛି ନୀତି ନିୟମ ଥିଲା । ଏବେ କିଛି ନୀତି ନିୟମ ନ ଥିବାରୁ କାମନାର ଅଗ୍ନି ଅଧିକ ଜଳୁଛି ଓ ଚତୁର୍ଦ୍ଦିଗକୁ ଜାଳି ଦେଉଛି । ଅବଶ୍ୟ ପାଠକେ କହିବେ ପୂର୍ବ ଅପେକ୍ଷା ତ ଆଇନ ଅଧିକ ସଂଶୋଧିତ ଓ



Digitized by PPRACHIN, SOA

ପ୍ରଣୀତ ହେଉଛି, ଆଉ ନୀତିନିୟମ ନାହିଁ କଅଣ ? ପ୍ରକୃତରେ ନୀତିନିୟମର ସୃଷ୍ଟି ହୁଏ ଅନ୍ତର ଶିକ୍ଷାରୁ । ଭିତରୁ ନୀତି ପାଇଁ ଆନ୍ତରିକତା ନ ଆସିଲେ ଆଇନକାନୁନ୍ ବଳରେ ବିଶେଷ କିଛି ଉପକାର ହୁଏ ନାହିଁ । ଏକଥା କ'ଣ ଜ୍ଞାନୀ ଲୋକମାନେ ବୁଝିପାରୁ ନାହାନ୍ତି ? ହୁଏତ ବୁଝିଛନ୍ତି କିନ୍ତୁ ତାହାକୁ କାର୍ଯ୍ୟକାରୀ କରିପାରୁ ନାହାନ୍ତି । ହୁଏତ ଏହା ହୋଇପାରେ ଯେ ବୁଝିବା ଲୋକଙ୍କର ସଂଖ୍ୟା କମ୍ ଓ ନ ବୁଝିବା ଲୋକଙ୍କର ସଂଖ୍ୟା ଅଧିକ । ତେଣୁ ମୂଢ଼ ସଭାରେ ମୂକ ଯଥା ଧାର୍ମିକ ନ୍ୟାୟରେ ସେମାନେ ନୀରବ ରହୁଛନ୍ତି । ମୋର କହିବା କଥା ଯେ ବୁଝିବା ଲୋକଙ୍କର ସଂଖ୍ୟା ବଢ଼ିବା ଏକାନ୍ତ ଜରୁରୀ । ଆଇନକାନୁନ୍ ରହୁ, ମାତ୍ର ଅପରାଧ ପ୍ରବଣତା ମଣିଷ ମନରୁ ନ କମିଲା ପର୍ଯ୍ୟନ୍ତ ସମାଜ ସୁସ୍ଥ ହେବ ନାହିଁ, ପୂର୍ଣ୍ଣ ବିକଶିତ ହେବ ନାହିଁ । ନୈତିକତାର ଭୟ ହିଁ ପ୍ରକୃତ ଭୟ । ମଣିଷ ମନର ପରିବର୍ତ୍ତନ ନ ହେଲେ ସମାଜର ପରିବର୍ତ୍ତନ ହେବ ନାହିଁ । ଉଦାହରଣସ୍ୱରୂପ ଗୋଟିଏ କଥା କୁହାଯାଇପାରେ ଯେ ନାରୀ ନିର୍ଯ୍ୟାତନା ରୋକିବା ପାଇଁ ଓ ଯୌତୁକ ନେବା ଦେବାକୁ ରୋକିବା ପାଇଁ ଆଇନ୍ ବଳରେ ସମାଜ ସୁସ୍ଥ ହୋଇଛି, ଏଥିସହିତ ଯଦି ଶିକ୍ଷାନୀତିରେ ଏହାକୁ ମାନବିକତା ଦିଗରୁ ବିଚାର କରାଯାଇ ସାମିଲ କରାଯାଇଥାଆନ୍ତା ତେବେ ସମାଜ ଅଧିକ ସୁସ୍ଥ ହୁଅନ୍ତା । ଭିତରୁ ରୋଗଜୀବାଣୁ ନ ମଲା ଯାଏ ବାହାର ମଲମ ଲଗାଇ ରୋଗ ଚାପିଦେଲେ ବିଶେଷ କିଛି ଲାଭ ହୁଏ ନାହିଁ । ଟିକିଏ ସୁବିଧା ପାଇଲେ ସେ ରୋଗ ପୁଣି ଫୁଟି ବାହାରେ ।

ଅଧିକ ଆଲୋଚନା କରିବାକୁ ମୁଁ ବସିନାହିଁ । ଗୋଟିଏ କଥା କହିବାର ଅଛି ଯେ ଗୋଟିଏ ପୀଢ଼ି ଉପଯୁକ୍ତ ଭାବରେ ଶିକ୍ଷିତ ତଥା ସଚେତନ ହେଲେ ତାକୁ ଆଦର୍ଶ କରି ହୁଏତ ପରବର୍ତ୍ତୀ ପୀଢ଼ି ଆଗେଇ ଯିବେ । ଏଥିପାଇଁ ପ୍ରସ୍ତୁତି, ନିଷ୍ଠା, ଆନ୍ତରିକତା, ଏକାଗ୍ରତା ଆବଶ୍ୟକ । ମୋ ବିଚାରରେ ଯାହା ବଳରେ ଗୋଟିଏ ସଚେତନ ପୀଢ଼ି ଗଢ଼ା ହେବ ତାହା ହେଲା ଏହିପରି ।

୧. ପାରିବାରିକ ଶିକ୍ଷା
୨. ଆନୁଷ୍ଠାନିକ ଶିକ୍ଷା
୩. କର୍ମାଭିମୁଖୀ ଶିକ୍ଷା
୪. ପାରସ୍ପରିକ ଆଲୋଚନା ।

ପାରିବାରିକ ଶିକ୍ଷା କହିଲେ ଏକଥା ଆଦୌ ବୁଝାଏ ନାହିଁ ଯେ ବାପାମାଆ ଅତିକମ୍‌ରେ ବି.ଏ ବା ଏମ୍.ଏ ପଢ଼ିଥିବେ । ପଢ଼ିଥିଲେ ଭଲ । ପଢ଼ନ୍ତୁ ବା ନ ପଢ଼ନ୍ତୁ ସେମାନଙ୍କର ମନ ଟିକିଏ ପ୍ରଶସ୍ତ ହୋଇଥିବା ଦରକାର । ନୀଚ ମନର ବାପାମାଆଙ୍କଠାରୁ ଉଚ୍ଚମନର ଓ ଉଚ୍ଚମାନର ପିଲାଟିଏ ଯଦି ସମାଜ ଆଶାକରେ ତେବେ ସେ ହତାଶ ହେବ



Digitized by PPRACHIN, SOA

ନାହିଁ କି ? ଉଦାହରଣଟିଏ ଦେଲେ କଥାଟି ଟିକିଏ ସ୍ପଷ୍ଟ ହେବ । ମାଆଟିଏ ତା' ପିଲାଟି ପାଇଁ ବ୍ୟସ୍ତ ଅଥଚ ପରିବାରରେ ଥିବା ଅନ୍ୟ ସଦସ୍ୟମାନେ ପିଲାଟି ପାଇଁ ବ୍ୟସ୍ତ ନୁହଁନ୍ତି । ଏହାଦ୍ୱାରା କାହାର କିଛି ଲାଭ ହୁଏ ନାହିଁ ଏପରିକି ପିଲାର ମଧ୍ୟ ବିଶେଷ କିଛି ଲାଭହୁଏ ନାହିଁ । ଆଉ ଗୋଟିଂଏ ଉଦାହରଣ ଦିଆଯାଇପାରେ । ନିଜ ପିଲା ପାଇଁ ବ୍ୟସ୍ତତା ଥିବ ଅଥଚ ଦାଣ୍ଡରେ ନିଜପିଲା ବୟସର ପିଲାଟିଏ ଝୁଣ୍ଟି ପଡ଼ି କାନ୍ଦିଲେ ତୁଣ୍ଡରେ ଆହାପଦ ନାହିଁ, ତେବେ ସେ କଥାଟି ଠିକ୍ ହୁଏ ନାହିଁ। ତା'ଠାରୁ ଜନ୍ମ ନେଇଥିବା ପିଲାଟି ଦରଦୀ, ସହାନୁଭୂତିଶୀଳ ହେବ କିପରି ? ବାପା ନୁହେଁ କି ମାଆ ନୁହେଁ କାହାରି ଭିତରେ ବିଶ୍ୱ ତ ଦୂରର କଥା, ନିଜ ଦେଶ ପାଇଁ, ଜାତି ପାଇଁ, ସଂସ୍କୃତି ପାଇଁ ଟିକିଏ ଆନ୍ତରିକତା ନାହିଁ, ଅଛି କେବଳ ଫୁଲାଏ ଅହଂ, ଏଥିରୁ ଜନ୍ମିତ ଏହି ପରିବେଶରେ ଲାଳିତ ପାଳିତ ପିଲାଟିଏ ଉଦାର ଚେତା, ପ୍ରଶସ୍ତମନା, ପ୍ରକୃତ ଅର୍ଥରେ ସଂସ୍କୃତି ସଂପନ୍ନ ହେବା ସମ୍ଭବ କି ? ଅବଶ୍ୟ ଆପଣ କହିପାରନ୍ତି ଖତଗଦାରେ କ'ଣ ପଦ୍ମ ଫୁଟେ ନାହିଁ କି ? ଉତ୍ତରରେ କୁହାଯାଇପାରେ ଯେ ଯେତେ ପଦ୍ମ ଆବଶ୍ୟକ, ଖତଗଦା ସେତେ ପଦ୍ମ ଯୋଗାଇପାରେ କି ? ଖତଗଦାର ପଦ୍ମଫୁଲ ଉପରେ ଭରସା କରି ରହିଲେ ମହତ୍ ଲକ୍ଷ୍ୟ ପୂରଣ ହୁଏ କି ? ଅତଏବ ଏତେବେଳେ ବାପମାଆ କେତେ ସଚେତନ ହେବାକୁ ପଡିବ ତାହା ବେଶି ବୁଝାଇବ ଦରକାର ନାହିଁ । ଏପରି ସଚେତନତା ପ୍ରକୃତରେ ଦେଶ ସେବା ବା ଜାତିର ଯଥାର୍ଥ ସେବା ବୋଲି କହିଲେ ଭୁଲ ହେବ କି ?

ଆନୁଷ୍ଠାନିକ ଶିକ୍ଷାର ପ୍ରଭାବ ଅତୁଳନୀୟ । ଅନୁଷ୍ଠାନ କହିଲେ ଶିକ୍ଷକ ଓ ଶିକ୍ଷାୟତନକୁ ମୁଖ୍ୟତଃ ବୁଝାଏ । ଶିକ୍ଷକର ପ୍ରଥମ ଗୁଣ ହେଉଛି ଅହଂଶୂନ୍ୟତା । ଅହଂ ରହିଲେ ଶିକ୍ଷା କସ୍ମିନ କାଳେ ପ୍ରଭାବଶାଳୀ ହେବ ନାହିଁ । ଶବ୍ଦର ଓ ଚାଲିଚଳନର ଏକ ଭାବତରଙ୍ଗ ଅଛି । ଏ ଭାବତରଙ୍ଗ ଅହଂଦ୍ୱାରା ପ୍ରଦୂଷିତ ହେଲେ ତାହା କେବେ ସଫଳ ହେବନାହିଁ । ଶିକ୍ଷକର ଅନ୍ୟତମ ଗୁଣ ଓ ଲକ୍ଷଣ ହେଉଛି ସାମ୍ୟନୀତି । ପକ୍ଷପାତିତା ରହିଲେ ଶିକ୍ଷା ବ୍ୟବସ୍ଥା କଳଙ୍କିତ ହୁଏ ଏବଂ ଶିକ୍ଷା ନାମରେ ଅଶିକ୍ଷାର ପ୍ରେତନାଚ ବଢିଚାଲେ । 'ଏ ବଡ଼ଲୋକର ପିଲା', 'ଗରିବଘରର ଏ ପିଲା ଏପରି ସଂକୀର୍ଣ୍ଣଭାବ ଓ ଭାବନା ଥିବା ଶିକ୍ଷକଙ୍କର ଛାତ୍ର ଯେ ପ୍ରଶସ୍ତ ହେବ, ଏ ଆଶା କରିବା ବୃଥା । ନିଜର ଯଶ ଲାଭ ଓ କ୍ଷମତା ଲାଳସା ଶିକ୍ଷକତାର ବଡ଼ ଶତ୍ରୁ । ଏପରି ଲୋଭୀ ଶିକ୍ଷକଙ୍କର ଛାତ୍ର କ'ଣ ନିର୍ଲୋଭ ହେବ, ନିଃସ୍ୱାର୍ଥପର ହେବ ? ପୁନଶ୍ଚ ଶିକ୍ଷାୟତନକୁ ନିର୍ମଳ ନ ରଖିଲେ ଶିକ୍ଷା କଳଙ୍କିତ ହୁଏ । ଶିକ୍ଷା ରୂପକ ଦେବତାଙ୍କ ପାଇଁ ମନ୍ଦିର ହେଉଛି ଶିକ୍ଷାୟତନ । ଶିକ୍ଷାୟତନର ଶୁଦ୍ଧତା ଏକାନ୍ତ ଜରୁରୀ । ରାଜନୀତି ଯଦି ଶିକ୍ଷାୟତନ ଭିତରକୁ ଧସେଇ ପଶେ ଓ ଶିକ୍ଷକ ତଥା ଛାତ୍ରଙ୍କ କାନ୍ଧରେ ସବାର ହୋଇ ସେମାନଙ୍କୁ ଚାପି ଦିଏ ତେବେ



Digitized by PPRACHIN, SOA

ସେହି ପରିବେଶରୁ ଶିକ୍ଷାପ୍ରାପ୍ତ ଛାତ୍ର ଅର୍ଥାତ୍ ଦେଶର ଭାବି ନାଗରିକ କଳା ଅଙ୍ଗାର ହୋଇ ବାହାରିବେ ନାହିଁକି ? ଶିକ୍ଷକଙ୍କର ଭୂମିକା ମାଆର ଭୂମିକା ପରି ଅତି ମୂଲ୍ୟବାନ । ତେଣୁ ଶିକ୍ଷକଙ୍କୁ କୁହାଯାଏ ଦ୍ୱିତୀୟ ମାଆ ଏବଂ ମାଆକୁ କୁହାଯାଏ ପ୍ରଥମ ଶିକ୍ଷକ । କେବଳ ସମ୍ବାଦ ଭିତ୍ତିକ ଶିକ୍ଷାଦାନ (Information based teaching) ରେ ଶିକ୍ଷକ ସନ୍ତୁଷ୍ଟ ରହିଲେ ତେବେ ସେ ଶିକ୍ଷା ଫଳପ୍ରଦ ହୁଏ ନାହିଁ କି ସେ ଶିକ୍ଷକ ସମାଜ ଗଠନ କରିପାରନ୍ତି ନାହିଁ । ଶିକ୍ଷକ ନିଜର ଆଚାର ବ୍ୟବହାରକୁ ଉନ୍ନତ ତଥା ମାର୍ଜିତ କରିବା ଉଚିତ୍, କାରଣ ଶିକ୍ଷକଟିଏ ବୋଲି ସାମାନ୍ୟ ବ୍ୟକ୍ତିଟିଏ ନୁହେଁ, ତାଙ୍କ ଦ୍ୱାରା ଜଣେ ନୁହେଁ ବହୁ ଛାତ୍ର ପ୍ରଭାବିତ ହୋଇପାରନ୍ତି । ଅତଏବ ସଚେତନ ଶିକ୍ଷକ ହେଉଛନ୍ତି ସମାଜର ଭୂଷଣ, ଏହା ମୁକ୍ତ କଣ୍ଠରେ ସ୍ୱୀକାର୍ଯ୍ୟ ।

କର୍ମାଭିମୁଖୀ ଶିକ୍ଷାର ଆବଶ୍ୟକତା ଅଧିକରୁ ଅଧିକ ରହିଛି । କେବଳ ନୈତିକ ଶିକ୍ଷା ବା ପୋଥିଗତ ଶିକ୍ଷା ଯଥେଷ୍ଟ ନୁହେଁ । କର୍ମରେ ପ୍ରଯୁକ୍ତ ହେଉଥିବା ଶିକ୍ଷା ହିଁ ଅସଲ ଶିକ୍ଷା । ଶିକ୍ଷା ଏକ ଯୌଗିକ ପ୍ରକ୍ରିୟା ଯାହାର ପ୍ରୟୋଗ ପାଇଁ କ୍ଷେତ୍ର ହେଉଛି କର୍ମ । କର୍ମରେ କୁଶଳତା ହିଁ ଶିକ୍ଷାର ମହତ୍ ଲକ୍ଷ୍ୟ । କର୍ମରେ ବ୍ୟାପୃତ ନ ରହିଲେ ଶିକ୍ଷା ପ୍ରାପ୍ତ ଯୁବ ସମାଜର ସମୟ ଓ ଶକ୍ତିର ଅପବ୍ୟବହାର ହେବ ହିଁ ହେବ, ଯାହା ଦେଶର ଏବେ ଘଟୁଅଛି । ଯାହା କୁହାଯାଏ 'Idle mind is the evil's workshop', ତାହା କାର୍ଯ୍ୟରେ ପରିଣତ ହେଉଛି ଓ ହେବ । ଘରେ ଖାଇ ବାହାରେ ପୁଞ୍ଜି ପୁଞ୍ଜି ହୋଇ ବସି ପର ଅନିଷ୍ଟ ଚିନ୍ତାକରିବା, ଯୌନ ଆବେଗ ମୂଳକ କଥାବାର୍ତ୍ତାରେ ବ୍ୟାପୃତ ରହିବା, ଟିକିଏ ସୁବିଧା ପାଇଲେ କ୍ଷତି କରିବାର ମାର୍ଗ ପ୍ରଶସ୍ତ ହେବ । କର୍ମ ବ୍ୟସ୍ତତା ରହିଲେ ଜୀବନରେ ଏସବୁ ପାଇଁ ସମୟ ଓ ପରିବେଶ ମିଳିବ ନାହିଁ । ଶିକ୍ଷା ଦରକାର ଓ କର୍ମ ଦରକାର । ଯେଉଁ କର୍ମ ପ୍ରତି ଯାହାର ଆଗ୍ରହ ଅଛି, ତାକୁ ପ୍ରୋତ୍ସାହନ ଓ ତାଲିମ ଦିଆଗଲେ କର୍ମାଭିମୁଖୀର ଶିକ୍ଷା ଫଳପ୍ରଦ ହୋଇପାରିବ । ଶିକ୍ଷକ ଏଥିପାଇଁ ନିଜକୁ ଅଧିକ କୁଶଳୀ କରି ଗଢ଼ିବା ଦରକାର । ରାଜନୈତିକ ସ୍ତରରେ କର୍ମାଭିମୁଖୀ ଶିକ୍ଷା ନିମନ୍ତେ ଅକପଟ ଆନ୍ତରିକତା ଲୋଡ଼ା । ଆତ୍ମପ୍ରଚାର ପାଇଁ ଅଥବା ଯଶ ପ୍ରଶଂସା ପାଇଁ କର୍ମାଭିମୁଖୀ ଶିକ୍ଷାର ପ୍ରଚଳନ କଲେ ତାହା କଦାପି ସଫଳ ହେବ ନାହିଁ । ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ଏ ଦିଗରେ ବହୁ ଅନୁଭୂତି ବହୁଲୋକଙ୍କର ରହିଛି ।

ପୁନଶ୍ଚ ପାରସ୍ପରିକ ଆଲୋଚନା ମାଧ୍ୟମରେ ଲୋକ ଶିକ୍ଷାର ଭିତ୍ତି ଦୃଢ଼ ହୁଏ । ସରାକାରୀ ଓ ବେସରକାରୀ ଉଭୟ ସ୍ତରରେ ଏହା ହେବା ଆବାଶ୍ୟକ । ଅତୀତର ବିଶିଷ୍ଟ ବ୍ୟକ୍ତିମାନଙ୍କର ଜୀବନୀ ଆଲୋଚନା ଓ ସ୍ମୃତିଚାରଣ ଗୋଟିଏ ଜାତିକୁ ଆଲୋକ ଦେଖାଏ । ଅତୀତକୁ ଝୁରିବା ନୁହେଁ, ବରଂ ଅତୀତର ସ୍ମୃତିକୁ ଶ୍ରଦ୍ଧାର ସହ ସ୍ମରଣ ରଖି



Digitized by PPRACHIN, SOA

ଆଗକୁ ପାଦ ବଢାଇବା ପାଇଁ ଏପରି ଆଲୋଚନାର ଆବଶ୍ୟକତା ଅଛି । ଛାତ୍ରମାନଙ୍କ ମଧ୍ୟରେ ବିଶେଷତଃ ଶିକ୍ଷାୟତନ ମାନଙ୍କରେ ଏପରି ଆଲୋଚନା ଅତ୍ୟନ୍ତ ଜରୁରୀ । ଶସ୍ତା ସଂଗୀତ ଶୁଣି ସମୟର ଅପଚୟ ନ କରି ରୁଚିକର ସଂଗୀତ ଶୁଣିବା ଓ ବାଜେ ଗପ କରିବା ପରିବର୍ତ୍ତେ ଗଠନମୂଳକ ଆଲୋଚନାରେ ପ୍ରବୃତ୍ତ ହେବାର ମାନସିକତା ଆମର ଏ ଯାବତ ଆସିନାହିଁ । ଫଳତଃ ଆମର ଚେତନା ପ୍ରସାରିତ ହେଉନାହିଁ । ଅହଂର ପିଣ୍ଡୁଳାଟିଏ ହୋଇ ଛାତ୍ରଟିଏ ଶିକ୍ଷାନୁଷ୍ଠାନରୁ ଡିଗ୍ରୀ ପାଇ ବାହାରୁଛି ।

ବିଭିନ୍ନ ଦିଗରୁ ବିଚାର କଲେ ଏପରି ଅବସ୍ଥାରେ ପୀଢ଼ିଟିଏ ପ୍ରସ୍ତୁତ ହେବ କିପରି ? କେତେକ ଏକା ମାନସିକତାର ବୟସର ପିଲାଙ୍କୁ ନେଇ ପୀଢ଼ିଟିଏ ପ୍ରସ୍ତୁତ ହୁଏ। ପ୍ରାୟ କୌଣସି ପିଲା ଘରୁ କି ବାହାରୁ କିଛି। ବିଶେଷ ଆସ୍ତିବାଚକ ଶିକ୍ଷା ପାଉନାହାନ୍ତି । ପିଲାଟିର ସାଙ୍ଗସାଥି ଅଛନ୍ତି ମାତ୍ର ସେମାନଙ୍କ ଭିତରେ ପ୍ରକୃତ ଏକତା ବା ଆନ୍ତରିକତା ନାହିଁ । ଯାହା ଅଛି ତାହା କେବଳ ବିକୃତ ଏକତା, ଯାହା ନିଜ ନିଜର ସ୍ୱାର୍ଥ ସିଦ୍ଧି ନିମନ୍ତେ ଅଭିପ୍ରେତ । ଏହି ଏକତା ରେଳ ରୋକ, ରାସ୍ତାରୋକ, ବସପୋଡି, ଜାତୀୟସଂପତ୍ତି ପୋଡାଜଳା ତଥା ଭଙ୍ଗାରୁଜା କାର୍ଯ୍ୟରେ ଲାଗେ। ଏସବୁ ଜାଣିଲା ପରେ ଆଉ ପିଲାଟିକୁ ଦୋଷଦେବା କେତେଦୂର ଯୁକ୍ତିଯୁକ୍ତ ତାହା ବିଚାର୍ଯ୍ୟ ବିଷୟ ।





Digitized by PPRACHIN, SOA

# ବିଜ୍ଞାନ ଓ ଆତ୍ମଜ୍ଞାନ

ପ୍ରଥମରୁ କହିରଖେ ଯେ ବିଜ୍ଞାନ କହିଲେ ପରୀକ୍ଷାଗାରରୁ ଲବ୍ଧ ଜ୍ଞାନ ଓ ତତ୍ତ୍ୱର ବାହ୍ୟ ପ୍ରୟୋଗ ଓ ପରିଣତିକୁ କେବଳ ବୁଝାଏ ନାହିଁ, ଏହା ସହିତ ବିଶ୍ୱସମ୍ପର୍କରେ ବିଶେଷ ଜ୍ଞାନକୁ ମଧ୍ୟ ବୁଝାଏ । ଅନ୍ୟଭାଷାରେ କୁହାଯାଇପାରେ ଯେ, ବିଜ୍ଞାନ ହେଉଛି ରହସ୍ୟମୟ ବିଶାଳ ବିଶ୍ୱ ବ୍ରହ୍ମାଣ୍ଡର ଗାଣିତିକ ତଥା ଯୁକ୍ତିଭିତ୍ତିକ ବିଶ୍ଳେଷଣ ଓ ଅନୁସନ୍ଧାନ । ଏଥିପାଇଁ ପରୀକ୍ଷାଗାର ଏକ ମାଧ୍ୟମ ମାତ୍ର ।

ଆତ୍ମଜ୍ଞାନ କହିଲେ ଧାର୍ମିକତା, ସନ୍ୟାସ, ସଂସାର ତ୍ୟାଗ, ଜଟାଧାରଣକୁ ବୁଝାଏ ନାହିଁ । ଆତ୍ମଜ୍ଞାନ କେବଳ ଆତ୍ମାସମ୍ପର୍କରେ ଜ୍ଞାନ ନୁହେଁ, ବ୍ୟକ୍ତିର ସମସ୍ତ ସତ୍ତା ସମ୍ପର୍କରେ ଜ୍ଞାନ ହିଁ ଆତ୍ମଜ୍ଞାନ । ଜୀବନର ସବୁ ଆବଶ୍ୟକତା ଓ ଅନୁଭବକୁ ଉଚିତ ଅର୍ଥରେ ଗ୍ରହଣ କରାଗଲେ, ସେସବୁ ଆତ୍ମଜ୍ଞାନର ଅନ୍ତର୍ଭୁକ୍ତ ହୋଇପାରନ୍ତି ।

ବିଜ୍ଞାନ ଓ ଆତ୍ମଜ୍ଞାନର ମୂଳକଥା ହେଉଛି ଜିଜ୍ଞାସା । ଜିଜ୍ଞାସା ହିଁ ଜୀବନର ଚିହ୍ନ। ଏପରି କୁହାଯାଇପାରେ ଯେ ଜିଜ୍ଞାସା ହିଁ ଜୀବନ ଏବଂ ଜୀବନ ହିଁ ଜିଜ୍ଞାସା । ଜିଜ୍ଞାସା ଅଛି ତ ଜୀବନ ଅଛି, ଜିଜ୍ଞାସା ନାହିଁ ତ ଜୀବନ ନାହିଁ । ବ୍ୟକ୍ତିର ଜିଜ୍ଞାସା ମୁଖ୍ୟତଃ ଦୁଇଭାଗରେ ବିଭକ୍ତ- (୧) ବିଶ୍ୱକୁ ଜାଣିବାର ଇଚ୍ଛା (୨) ନିଜକୁ ଜାଣିବାର ଇଚ୍ଛା । ଗୋଟିଏ ମୁଦ୍ରାର ଦୁଇ ପାଖଭଳି ପ୍ରତ୍ୟେକ ପରସ୍ପର ସହ ଓତପ୍ରୋତ ଭାବରେ ଜଡ଼ିତ । ଗୋଟିଏ ଥିଲେ ଅନ୍ୟଟି ତା' ପାଖେ ପାଖେ ନିଶ୍ଚୟ ଥିବ । ସାଧାରଣ ବିଚାରରେ ଉଭୟ ପରସ୍ପରର ପରିପନ୍ଥୀ । ପ୍ରକୃତରେ କଥାଟି ଆଦୌ ସେପରି ନୁହେଁ । ଉଭୟର ସ୍ଥିତି ଏକାଧାରାରେ ସ୍ୱୀକୃତ ଓ ପ୍ରତିଷ୍ଠିତ । ପ୍ରକୃତ ବିଜ୍ଞାନୀ କେବେହେଲେ ଆତ୍ମଜ୍ଞାନକୁ ଅବମାନନା କରନ୍ତି ନାହିଁ, ପ୍ରକୃତ ଆତ୍ମଜ୍ଞାନୀ କେବେହେଲେ ବିଜ୍ଞାନକୁ ଅବଜ୍ଞା କରନ୍ତି ନାହିଁ । ନିଜକୁ ଜାଣିଲେ ବିଶ୍ୱକୁ ଜାଣିବା ସହଜ ସାଧ୍ୟ, ସେହିପରି ବିଶ୍ୱକୁ ଜାଣିଲେ ନିଜକୁ ବୁଝିବା ସହଜ ସାଧ୍ୟ । ବ୍ୟକ୍ତି ହେଉଛି ବିଶ୍ୱର ଏକକ(Unit)। ବ୍ୟକ୍ତିର ମନ, ବ୍ୟକ୍ତିର ପ୍ରାଣ ହେଉଛି ବିଶ୍ୱମନ ଓ ବିଶ୍ୱପ୍ରାଣର ଏକ ଏକ ଏକକ । ବ୍ୟକ୍ତି ଭିତରେ ବିଶ୍ୱ ବିଦ୍ୟମାନ, ବିଶ୍ୱ ମଧ୍ୟରେ ବ୍ୟକ୍ତି ବିଦ୍ୟମାନ। ଭାରତୀୟ ଦର୍ଶନରେ ଏବଂ ସାହିତ୍ୟରେ ଏହି କଥାକୁ ଏକ ତତ୍ତ୍ୱରୂପରେ ଗ୍ରହଣ କରାଯାଏ । ତତ୍ତ୍ୱଟି ହେଉଛି ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ । ଏହି ତତ୍ତ୍ୱ ଅନୁସାରେ ପିଣ୍ଡ ଅର୍ଥାତ୍ ବ୍ୟକ୍ତିଜୀବନକୁ ବିଶ୍ୱଜୀବନର ପ୍ରତିନିଧି ବୋଲି ବିଚାର



Digitized by PPRACHIN, SOA

କରାଯାଏ । ସାହିତ୍ୟରେ ଏ ତତ୍ତ୍ୱର ଅବତାରଣା ବହୁଳ ଭାବରେ ଦେଖିବାକୁ ମିଳେ । କ୍ଷିତି, ଅପ, ତେଜ, ମରୁତ, ବ୍ୟୋମ ସହିତ ଆଉ ଯେତେ କଥା ବହିଃବିଶ୍ୱରେ ରହିଛି ବ୍ୟକ୍ତି ଭିତରେ ସେସବୁ ସମନ୍ୱିତ ଏବଂ ସ୍ତରୀଭୂତ ହୋଇ ରହିଛି ।

ଅଦ୍ୟାବଧି ଏଇ ଦୁଇଟି କଥା ଯେ ଏକ ଓ ଅଭିନ୍ନ, ଏହା ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇପାରି ନାହିଁ । କିଛି ଲୋକଙ୍କ ଦୃଷ୍ଟିରେ ବିଜ୍ଞାନବେତ୍ତା ହେଉଛନ୍ତି ଆତ୍ମଜ୍ଞାନୀଠାରୁ ବଡ଼, ଆଉ କିଛି ଲୋକଙ୍କ ଦୃଷ୍ଟିରେ ଆତ୍ମଜ୍ଞାନୀ ହେଉଛନ୍ତି ବିଜ୍ଞାନବେତ୍ତାଙ୍କଠାରୁ ବଡ଼ । ପ୍ରକୃତରେ ଉଭୟଙ୍କର ସ୍ଥିତି ଏକ ଉଚ୍ଚତମ ଉଚ୍ଚତାରେ ଯେଉଁଠାରେ 'ବଡ଼' ଆଉ 'ସାନ' ଶବ୍ଦର ସ୍ଥିତି ନାହିଁ । ଏତେ ବିରାଟ ଚେତନାକୁ ବୁଝାଇବା ପାଇଁ 'ବଡ଼' ଆଉ 'ସାନ' ଶବ୍ଦ ସମ୍ପୂର୍ଣ୍ଣ ଅସମର୍ଥ, ଏହା କହିବା ବାହୁଲ୍ୟ ମାତ୍ର ।

**ଅହଂ** ପ୍ରଣୋଦିତ ହୋଇ ବ୍ୟକ୍ତି ଏପରି ବିଭାଜନ କରିଥାନ୍ତି । ଅନ୍ୟ କଥାରେ କୁହାଯାଇପାରେ ଯେ ବିଜ୍ଞାନ ଓ ଆତ୍ମଜ୍ଞାନ ମଝିରେ ବ୍ୟକ୍ତିର ଅହଂ ହି ପ୍ରାଚୀର ସଦୃଶ ଦଣ୍ଡାୟମାନ । ଅହଂର କାର୍ଯ୍ୟ ହେଉଛି ଭୁଲ ମାର୍ଗଦର୍ଶନ । ସେ କହିଦେଉଛି ଏ ବଡ଼, ଏ ସାନ । ଫଳତଃ ବିଭେଦ ସୃଷ୍ଟି ହେଉଛି ବ୍ୟକ୍ତି ଜୀବନରେ, ସମାଜ-ଜୀବନରେ ସର୍ବୋପରି ବିଶ୍ୱ ଜୀବନରେ । ସମ୍ପ୍ରଦାୟ ଗଢ଼ି ଉଠିଛି, ଧ୍ୱଜାର ମାପରେ ଧର୍ମର ମାପ ହେଉଛି । ବିଭାଜନ ଫଳରେ ବିଶ୍ୱର ସାମଗ୍ରିକ ଜୀବନର ବହୁ କ୍ଷତି ଘଟିଛି । ଉଭୟ ମଧ୍ୟରେ ସହଯୋଗ ନ ଥିବାରୁ ଉଭୟର ଶକ୍ତି କ୍ଷୁର୍ଣ୍ଣ ହୋଇଛି । ବିଭାଜନରୁ କଳହ, କଳହରୁ ଅଶାନ୍ତି ଓ ଅଶାନ୍ତିରୁ ଅବକ୍ଷୟ ହିଁ ଘଟିଚାଲିଛି । ଅହଂ ଓ ସ୍ୱାର୍ଥ ଯୋଗୁଁ ଏତେ ଅଘଟଣ ଘଟୁଛି, ଏହା ବୁଝିବାର ସମୟ ଆସିଛି । ନିଜର ଆନନ୍ଦ ପାଇଁ ଅହଂ ଓ ସ୍ୱାର୍ଥ ଏପରି ବିଭୀଷିକା ସୃଷ୍ଟି କରିଛନ୍ତି । ଏମାନଙ୍କୁ ମନରୁ ଦୂରକଲେ ପ୍ରକୃତ ସତ୍ୟ ଉଦ୍‌ଘାଟିତ ହେବ । ଜୀବନର ଯଥାର୍ଥ ମୂଲ୍ୟବୋଧ ପ୍ରତିଷ୍ଠିତ ହେବ । ଚେତନା ଓ ଆନନ୍ଦର ମଧୁ ମହକରେ ବିଶ୍ୱଜୀବନ ମହକି ଉଠିବ, ସର୍ବାଙ୍ଗୀଣ ଉନ୍ନତିର ସୁକୁମାର ପରିବେଶ ଅଚିରେ ସୃଷ୍ଟି ହେବ ।

ଆତ୍ମଜ୍ଞାନକୁ ଅନ୍ୟ ଭାଷାରେ ଆଧ୍ୟାତ୍ମଜ୍ଞାନ ବୋଲି କୁହାଯାଇପାରେ । ଆଧ୍ୟାତ୍ମଜ୍ଞାନ ବା ଆଧ୍ୟାତ୍ମିକତା କେବେ ହେଲେ ଜୀବନକୁ ଅସ୍ୱୀକାର କରେ ନାହିଁ । ବରଂ ଅଧିକ ସ୍ୱୀକାର କରେ । ଧର୍ମ ଓ ଆଧ୍ୟାତ୍ମିକତା ମଧ୍ୟରେ ସ୍ପଷ୍ଟ ପାର୍ଥକ୍ୟ ରହିଛି । ବେଳେବେଳେ ଧର୍ମ କହେ ପଳାୟନର କଥା, ଦିଏ ଅବାଞ୍ଛିତ ବୈରାଗ୍ୟର ବାର୍ତ୍ତା । କିନ୍ତୁ ଆଧ୍ୟାତ୍ମିକତା କେବେହେଲେ ପଳାୟନ ବା ବୈରାଗ୍ୟର କଥାକହେ ନାହିଁ, କହେ ପୂର୍ଣ୍ଣତାର କଥା, ଦିଏ ଦିବ୍ୟ ଚେତନାର ବାର୍ତ୍ତା । ମହାଯୋଗୀ ଶ୍ରୀ ଅରବିନ୍ଦଙ୍କ ମତରେ "ଜୀବନ କ୍ଷେତ୍ରରୁ ପଳାୟନ ନୁହେଁ, ବରଂ ଦିବ୍ୟ ପୂର୍ଣ୍ଣତାରେ ଜୀବନକୁ ପୂର୍ଣ୍ଣାଙ୍ଗ କରି ଗଢ଼ିତୋଳିବା ହିଁ ଯଥାର୍ଥ ଆଧ୍ୟାତ୍ମିକତା ।" ପୁନଶ୍ଚ ସେ କହିଛନ୍ତି, "ସତ୍ୟର ଉପଲବ୍ଧି ପାଇଁ ଆମକୁ ଏ



Digitized by PPRACHIN, SOA

ପୃଥିବୀକୁ ଛାଡ଼ିଯିବାକୁ ହେବନାହିଁ, ଆତ୍ମାର ପ୍ରାପ୍ତି ପାଇଁ ବ୍ୟକ୍ତିକୁ ଜୀବନ ପରିତ୍ୟାଗ କରିବାକୁ ପଡ଼ିବ ନାହିଁ, ଭଗବାନଙ୍କ ସହିତ ସମ୍ପର୍କ ସ୍ଥାପନ କରି ପାଇଁ ବ୍ୟକ୍ତିକୁ ସଂସାର ବର୍ଜନ କରିବାକୁ ହେବନାହିଁ ।"

ସୁତରାଂ ବିଜ୍ଞାନ ଓ ଆଧାତ୍ମିକତା ଉଭୟେ ଜୀବନବାଦୀ । ବିଜ୍ଞାନ ଚାହେଁ ଜୀବନର ବିକାଶ ଏବଂ ଆଧାତ୍ମିକତା ଚାହେଁ ଜୀବନର ସାମଗ୍ରିକ ବିକାଶ । ଚିନ୍ତା ଚେତନାରେ ତଥା କ୍ରିୟା ପ୍ରତିକ୍ରିୟାରେ ଏକ ବିରାଟ ଶକ୍ତି ସହ ସମ୍ପର୍କ ସ୍ଥାପନ ହିଁ ଆଧାତ୍ମିକତା । ସେହି ବିରାଟ ଶକ୍ତିଙ୍କର ନାମ ଦେଶ ଭେଦରେ ଭାଷା ଭେଦରେ ଭିନ୍ନ ଭିନ୍ନ । କିଏ ତାଙ୍କୁ ଈଶ୍ୱର, କିଏ ଆଲ୍ଲା, କିଏ ଗଡ୍, ନାମରେ ତାଙ୍କୁ ଡାକନ୍ତି । ଏହାଦ୍ୱାରା ଭଗବାନ ବା ବିଶ୍ୱ ସୃଷ୍ଟିକର୍ତ୍ତା ବିଭାଜିତ ହୁଅନ୍ତି ନାହିଁ । ସେ ସର୍ବଦା ଏକ ଓ ଅଭିନ୍ନ ହୋଇ ରହିଥାନ୍ତି । ଆକାଶକୁ ଆମେ ଦେଶ ଭେଦରେ, ପୁଣି ପ୍ରଦେଶ ଭେଦରେ ପୁଣି ଅଞ୍ଚଳ ଭେଦରେ ବାଣ୍ଟି କହୁ 'ଏ ଭାରତ ଆକାଶ, ଏ ଜାପାନର ଆକାଶ, ଏ ଆମେରିକାର ଆକାଶ, ଏ ଓଡ଼ିଶାର ଆକାଶ ଇତ୍ୟାଦି ।' ଏହାଦ୍ୱାରା ଆମ ଚିନ୍ତାଧାରାର ସଙ୍କୁଚିତ ଅବସ୍ଥାଟି ଜଣାପଡ଼େ । ପ୍ରକୃତରେ ଆକାଶର କୌଣସି କ୍ଷୟକ୍ଷତି ଘଟେ ନାହିଁ । ଭଗବାନ ଆକାଶ ପରି ପରିବ୍ୟାପ୍ତ, ପବନଠାରୁ ଆହୁରି ସୂକ୍ଷ୍ମ ଭାବରେ ସର୍ବତ୍ର ବିରାଜିତ । ତାଙ୍କୁ କେବଳ ଉପଲବ୍ଧି କରାଯାଏ ଚେତନା ମାଧ୍ୟମରେ । ଜଡ଼ବିଜ୍ଞାନ ଆଦୌ ଭଗବାନଙ୍କୁ ଅସ୍ୱୀକାର କରନାହିଁ, ଅବମାନନା କର ନାହିଁ । ବିଶ୍ୱ ବିଖ୍ୟାତ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କ ଉକ୍ତିରୁ ଏହା ସ୍ପଷ୍ଟ ଭାବରେ ଜଣାଯାଏ । ତାଙ୍କ ମତରେ "ମୁଁ ଈଶ୍ୱରଙ୍କୁ ବିଶ୍ୱାସ କରେ । ସୃଷ୍ଟିର ନିୟମଗୁଡ଼ିକୁ ସେହି ଈଶ୍ୱର ନିୟନ୍ତ୍ରଣ କରନ୍ତି । ମୁଁ ସ୍ୱୀକାର କରେ ଯେ ପ୍ରକୃତିର ଅନ୍ତରାଳରେ ଏକ ଚେତନ ଶକ୍ତି କାର୍ଯ୍ୟ କରୁଅଛି । ସୃଷ୍ଟି ଅକସ୍ମାତ୍ ହୋଇଯାଇନାହିଁ । ଏହାର ନିୟମ, ପ୍ରୟୋଜନ ଓ ଉଦ୍ଦେଶ୍ୟ ରହିଛି ।"

ଆଜିର ଆଧ୍ୟାତ୍ମିକତା ହେଉଛି ପ୍ରୟୋଗବାଦୀ ଆଧ୍ୟାତ୍ମିକତା। କେବଳ ଧ୍ୟାନ ଧାରଣା ଏହାର ଅଂଗ ନୁହେଁ, ଜୀବନର ପ୍ରତ୍ୟେକ ଯଥାର୍ଥ କ୍ରିୟା ହିଁ ଆଧ୍ୟାତ୍ମିକତାର ଅନ୍ୟ ରୂପ । ଅତଏବ ବିଜ୍ଞାନ ମଧ୍ୟ ଆଧାତ୍ମିକତାର ଅଙ୍ଗବିଶେଷ । ଗୋଟିଏ ମୁଦ୍ରାର ଦୁଇ ପାଖ ଭଳି ପରସ୍ପର ସହ ସଂଶ୍ଳିଷ୍ଟ ବୋଲି କହିବା ଅପେକ୍ଷା ଅଧିକ ଠିକ୍ ଅର୍ଥରେ କୁହାଯାଇପାରେ ଯେ ବିଜ୍ଞାନ ହେଉଛି ଆଧାତ୍ମିକତାର ବଳୟଭୁକ୍ତ ଏକ ଜୀବନ ଧର୍ମୀ ଉପାଦାନ । ଉଭୟ ମଧ୍ୟରେ ଆଦୌ ବିରୋଧ ନାହିଁ, ବିଭେଦ ନାହିଁ, ପ୍ରକୃତରେ ବିରୋଧ ଅଛି, ବିଭେଦ ଅଛି ଆମ ଚେତନାରେ ।





Digitized by PPRACHIN, SOA

# ଜୀବନ ସୌରଭ

କଥାରେ ଅଛି 'କଥା କହି ଜାଣିଲେ ସୁନ୍ଦର, ମଥା ବାନ୍ଧି ଜାଣିଲେ ସୁନ୍ଦର ।' ଅର୍ଥାତ୍ କହିଜାଣିବା ଉପରେ କଥାର ମହତ୍ତ୍ୱ ନିର୍ଭରକରେ ଏବଂ ବାନ୍ଧିଜାଣିବା ଉପରେ ମଥାର ସୌନ୍ଦର୍ଯ୍ୟ ନିର୍ଭର କରେ । ଠିକ୍ ସେହିପରି ଜୀବନ ଜୀଇଁ ଜାଣିଲେ ସୁନ୍ଦର । ଜୀଇଁ ଜାଣିବା ଉପରେ ଜୀବନର ମୂଲ୍ୟବୋଧ ନିର୍ଭର କରେ । ବଞ୍ଚିବା ଓ ବଞ୍ଚିବାର କଳା ଜାଣିବା ଭିତରେ ପାର୍ଥକ୍ୟ ରହିଛି । ସମାଜର ବହୁ ସମସ୍ୟାର ସମାଧାନ ବଞ୍ଚିବାର କଳା ଜାଣିବା ଉପରେ ନିର୍ଭରକରେ । କେବଳ ଆଇନକାନୁନ୍ ଦ୍ୱାରା ସବୁ ସମସ୍ୟାର ସମାଧାନ ସମ୍ଭବ ନୁହେଁ । ଭଲ କଥା ପିଲାଦିନୁ ନ ଶିଖାଇ ବଡ଼ ହେଲେ ଦୋଷୀକୁ ଦଣ୍ଡ ଦେବାର ବିଧି ବ୍ୟବସ୍ଥା ରଖିଦେଲେ କ'ଣ ସୁସ୍ଥ ସମାଜ ଗଠିତ ହୋଇଯିବ ? କହିବାର ତାତ୍ପର୍ଯ୍ୟ ଏହିକି ଯେ ଆଇନ ରହୁ ଏହା ସହିତ ପିଲାଦିନରୁ ଭଲକଥା ଶିଖାଇବାର ବ୍ୟବସ୍ଥା ମଧ୍ୟ ରହୁ । ନିଜସ୍ୱ ଚେତନା ବଳରେ ଜୀବନର ବାସ୍ତବତାକୁ ସମ୍ମୁଖୀନ ହେବାର ପ୍ରଣାଳୀ ଓ ପ୍ରକ୍ରିୟା ହିଁ ଭଲକଥାର ଅନ୍ତର୍ଭୁକ୍ତ । ଭଲକଥାରୁ ମାର୍ଜିତ ରୁଚି ଭିତ୍ତିକ ଦୃଢ଼ ମାନସିକତା ସୃଷ୍ଟି ହୁଏ । ଗୋଟିଏ ଶବ୍ଦରେ କହିଲେ ତାହାହିଁ ଯଥାର୍ଥ ସଚେତନତା ।

ସଚେତନତା ଥିଲେ ବ୍ୟକ୍ତି ଉଚିତମାର୍ଗରେ ଚାଲିପାରେ ଓ ପରିବେଶକୁ ସୁନ୍ଦର ତଥା ଶାନ୍ତିମୟ କରିପାରେ । କିନ୍ତୁ ସଚେତନତାର ଅଭାବ ଘଟିଲେ ବ୍ୟକ୍ତି ଦାରୁଣ ଦୁଃଖର ସମ୍ମୁଖୀନ ହୁଏ । ମନ ତା'ର ଅଶେଷ ଯନ୍ତ୍ରଣାରେ ଜର୍ଜରିତ ହୋଇଉଠେ। ଆନନ୍ଦର ସବୁଜ ସୁଷମ, ଦିଗଦିଗନ୍ତ ଭରିଯାଏ ଗ୍ଲାନି ଓ ହାହାକାରରେ । ଜୀବନ ତା'ର ବୋଝରେ ପରିଣତ ହୁଏ ଏବଂ ସେ ନିଜେ ହୁଏ ସମାଜର ଏକ ବୋଝ । ଏଇ ଧରାଯାଉ, ଜଣେ ଯଦି ସବୁବେଳେ ଲୋକମାନେ କ'ଣ କହୁଛନ୍ତି ବା ନ କହୁଛନ୍ତି, ସେଇ ଉପରେ ଅଧିକ ଗୁରୁତ୍ୱ ଆରୋପ କରନ୍ତି, ତେବେ ସେ କେବେହେଲେ ମାନସିକ ଶାନ୍ତି ପାଇବେ ନାହିଁ । ଲୋକଙ୍କ କହିବା ସରିବ ନାହିଁକି ତାଙ୍କର ଅନ୍ତର୍ଦ୍ୱନ୍ଦ୍ୱ ସରିବ ନାହିଁ । ଲୋକଙ୍କ କାମ ହେଉଛି କହିବା, ଯାହା କଲେ ମଧ୍ୟ ଲୋକେ କହିବେ । ସାଧାରଣ ଲୋକଙ୍କୁ ସବୁବେଳେ ସନ୍ତୁଷ୍ଟ କରିବା ଆଦୌ ସମ୍ଭବ ନୁହେଁ । ନିଜର ବିବେକାନୁମୋଦିତ କାର୍ଯ୍ୟଦ୍ୱାରା ଆତ୍ମସନ୍ତୋଷ ପ୍ରାପ୍ତି ଏକାନ୍ତ କାମ୍ୟ । ଏହି ଆତ୍ମସନ୍ତୋଷ ହିଁ ଭାଗବତ ଆରଧନା ପାଇଁ ସୁବାସିତ ସଜଫୁଲ । ଶ୍ରୀ ମା' କହନ୍ତି "ଲୋକମାନଙ୍କ କଥାରେ ନିଜକୁ ଉତ୍ପୀଡ଼ିତ ହେବାକୁ ଛାଡ଼ିଦିଅ ନାହିଁ ।"



Digitized by PPRACHIN, SOA

ଅନ୍ୟପକ୍ଷରେ ଅନ୍ୟର ଅନିଷ୍ଟ ଚିନ୍ତା ଓ ଅନ୍ୟପ୍ରତି ଈର୍ଷା ଅନ୍ୟ ଅପେକ୍ଷା ନିଜର ଅଧିକ କ୍ଷତି ଘଟାଏ । ନିଜ ମନ ଏହାଦ୍ୱାରା ରୁଗ୍ଣ ଓ ଅଯଥା ଭାରାକ୍ରାନ୍ତ ହୋଇଯାଏ । ବୁମେରାଂ ଭଳି ସେ ଅସ୍ତ୍ର ନିଜ ଉପରକୁ ଲେଉଟି ଆସେ ଓ ନିଜର ବହୁ କ୍ଷତି କରିଥାଏ । ଅନ୍ୟପ୍ରତି ସଦିଚ୍ଛା ପୋଷଣ କଲେ ମନ ପ୍ରଶସ୍ତ ହୁଏ, ଆନନ୍ଦମଗ୍ନ ହୁଏ । ଏସବୁ ହିଁ ଯଥାର୍ଥରେ ଶିକ୍ଷାର ଅନ୍ତର୍ଭୁକ୍ତ । ଏଥିପାଇଁ ଆନୁଷ୍ଠାନିକ ଶିକ୍ଷାର ଯେତିକି ଅବଦାନ ରହିଛି, ପାରିବାରିକ ଶିକ୍ଷାର ତଦପେକ୍ଷା ଅଧିକ ଅବଦାନ ରହିଛି ।

ପରିବେଶ ସମ୍ବନ୍ଧରେ ସଚେତନତା ତଥା ରାଷ୍ଟ୍ର ସଂପର୍କରେ ସଚେତନତା ପିଲାଟି ମନରେ ଆଣିଦେବା ପାଇଁ ପରିବାରର ଲୋକେ ଅଧିକ ଯତ୍ନଶୀଳ ହେବା ଏକାନ୍ତ ଜରୁରୀ । ପିଲାକୁ ଅତିବେଶୀରେ 'ପଢ଼', 'ବହି ଧରି ବସ' କହିଦେଲେ ଅଭିଭାବକମାନଙ୍କର କର୍ତ୍ତବ୍ୟ ସରିଯାଏ । ବହି ପାଠ ସହିତ ଦେଶ, ଜାତି, ସଂସ୍କୃତି, ଆଧ୍ୟାତ୍ମିକତା ସର୍ବୋପରି ମାନବିକତା ସମ୍ପର୍କରେ କିଛି ଭଲକଥା ଶୁଣାଇବା ଦାୟିତ୍ୱ ଯେ ଅଭିଭାବକ ମାନଙ୍କର ଅଛି, ଏକଥା ସେମାନେ ଭୁଲି ଯାଇଥାନ୍ତି । ଏପରିକି ପନ୍ଦର ଅଗଷ୍ଟ ଆସେ, ଛବିଶ ଜାନୁୟାରୀ ଆସେ, ସ୍କୁଲ ବା କୌଣସି ଅନୁଷ୍ଠାନକୁ ପିଲାମାନେ ଆସନ୍ତି ପତାକା ଉତ୍ତୋଳନ ଉତ୍ସବରେ ଅଂଶଗ୍ରହଣ କରିବା ନିମନ୍ତେ । ଉତ୍ସବସବୁ କାହିଁକି ପାଳନ କରାଯାଉଛି ଓ ସେମାନେ କାହିଁକି ଆସିଛନ୍ତି ବୋଲି ପଚାରିଲେ ପିଲାମାନେ ଉତ୍ତରରେ ପ୍ରାୟ କିଛି କହନ୍ତି ନାହିଁ। କହିଲେ କହିବେ ଶିକ୍ଷକମାନେ ସ୍କୁଲରେ, ଘରେ ବା କହିବ କିଏ ? ନିଜ ତରଫରୁ ତ କହିବାର ନାହିଁ, ପିଲାମାନେ ଅନୁସନ୍ଧିତ୍ସୁ ହୋଇ ବିଭିନ୍ନ ପ୍ରଶ୍ନ କଲେ ତା'ର ଉତ୍ତର ଦେବା ପରିବର୍ତ୍ତେ କେବଳ ବିରକ୍ତି ପ୍ରକାଶ କରାଯାଏ । ଏହା ଫଳରେ ପିଲାଙ୍କର ମନ ଦବିଯାଏ ।

ଅନ୍ୟ ଦେଶର ଶିଶୁ ଓ କିଶୋର ମାନଙ୍କର ମନୋଭାବ ଅପେକ୍ଷା ଆମଦେଶର ଶିଶୁ ଓ କିଶୋରଙ୍କର ମନୋଭାବ ଭିନ୍ନ । କେତେକ ଦେଶର ପିଲାମାନେ ନିଜ ଦେଶ ସମ୍ପର୍କରେ ଅଙ୍କେ ବହୁତେ ସଚେତନ ଥାଆନ୍ତି, ସେମାନଙ୍କୁ ସେମାନଙ୍କର ପ୍ରିୟ କଥାଟି କ'ଣ ବୋଲି ପ୍ରଶ୍ନ କଲେ କେତେକ କଥା ସହିତ ନିଜ ଦେଶର ନାମ ସେମାନେ ଉଚ୍ଚାରଣ କରିଥାନ୍ତି । ମାତ୍ର ଆମ ପିଲାମାନଙ୍କୁ ଏଇ ପ୍ରଶ୍ନଟି ପଚାରିଲେ ଉତ୍ତର ମିଳେ ଚକୋଲେଟ୍, ଖେଳଣା, ଆମଘର, ଅଜା, ଆଈ ଇତ୍ୟାଦି ଇତ୍ୟାଦି। ଏତେ କଥା ସହ ଆମ ଦେଶକୁ କେହି ଜଣେ ହେଲେ ପ୍ରାୟ ସାମିଲ ନାହିଁ । ଏଥିପାଇଁ ଅଭାବବୋଧଟି କେଉଁଠାରେ ରହୁଛି ତାହା ବିଚାର୍ଯ୍ୟ ବିଷୟ ।

ଯୁବ ସମ୍ପ୍ରଦାୟ କଥା ନ କହିଲେ ଭଲ । ସେମାନଙ୍କ ଦୃଷ୍ଟିରେ ନିୟମ ଭାଙ୍ଗିବା ହେଉଛି ବୀରତ୍ୱର ଚିହ୍ନ ଏବଂ ନିୟମ ମାନିବା ହେଉଛି ଦୁର୍ବଳତାର ଚିହ୍ନ । ଟ୍ରାଫିକ୍



Digitized by PPRACHIN, SOA

ନିୟମ ଠାରୁ ଆରମ୍ଭ କରି ଅଫିସ କଚେରୀର ନିୟମ ଭାଙ୍ଗିଲେ ପ୍ରଶଂସା ମିଳେ, ମାନିଲେ ନିନ୍ଦା ଶୁଣିବାକୁ ମିଳେ । ଅନ୍ୟପ୍ରତି ଅଯଥାରେ କର୍କଶରୁକ୍ଷ ବ୍ୟବହାର କରିବା ହେଉଛି ବ୍ୟକ୍ତିତ୍ୱର ଏକ ବିଶିଷ୍ଟ ଦିଗ ବୋଲି ଆମେ ଭାବୁ । ବୟସ୍କ ବ୍ୟକ୍ତିଙ୍କୁ ନମ୍ର ବ୍ୟବହାର ପ୍ରଦର୍ଶନ କରିବା ପୁରୁଣା ପୋଥିର କଥା ହୋଇଗଲାଣି । ଏପରିକି ବେଳେବେଳେ ଅଭିଭାବକଙ୍କ ମୁଖରୁ ଶୁଣିବାକୁ ମିଳିଲାଣି "ଆ ପିଲାଟି ଧୀର ସ୍ଥିର, ହେଲେ ଏ ଯୁଗକୁ ନୁହେଁ ।" ଏବେ ହେଲାଣି ବିଶୃଙ୍ଖଳା ଯେଉଁଠି ବୀରତ୍ୱ ସେଇଠି । ଘରେ ବାହାରେ ଛୋଟ ସମସ୍ୟାଟିକୁ ଜଟିଳ କରିବା ହେଉଛି ବୀରର ଲକ୍ଷଣ । ସମସ୍ୟାଟିର ସରଳ ସମାଧାନର ପ୍ରୟାସ ଓ ପ୍ରଚେଷ୍ଟା ଏବେ ଦୁର୍ବଳତାର ଚିହ୍ନ । ଏଇ ପରିପ୍ରେକ୍ଷୀରେ 'ପ୍ରଗତି', 'ପ୍ରଗତି' ଖାଲି ଚିତ୍କାରର ବିଷୟ ଓ ଆନୁଷ୍ଠାନିକ ବାର୍ଷିକ ଉତ୍ସବରେ ପୁରସ୍କାର ବିତରଣ ନିମନ୍ତେ ପ୍ରତିଯୋଗିତାର କଥାବସ୍ତୁ ହୋଇ ରହିବାକୁ ବାଧ୍ୟ ।

ବୟସ୍କ ଲୋକମାନଙ୍କ କଥା ଆଉ ଟିକିଏ ଭିନ୍ନ । ସାଧାରଣ ଲୋକଙ୍କ କାମ ହେଉଛି ପରକଥାରେ ମୁଣ୍ଡ ଖେଳାଇବା । ନିଜ ଚିନ୍ତାକରିବାକୁ ତାଙ୍କୁ ବେଳ ନଥାଏ । ନିଜର ବହୁ ଅସୁବିଧା ପ୍ରତି ନଜର ନ ଥାଏ, ନଜରଥାଏ ଅନ୍ୟର ଟିକିଏ ଦୋଷ ତ୍ରୁଟି, ସୁବିଧା ଅସୁବିଧା ପ୍ରତି । ପରଚିନ୍ତାରୁ, ପରଚର୍ଚ୍ଚାରୁ ସେମାନଙ୍କୁ ଯେଉଁ ଆନନ୍ଦ ମିଳେ ତା'ର କଳନା ନ ଥାଏ ।

ଏସବୁ ବ୍ୟତୀତ ସାମାଜିକ ବିପର୍ଯ୍ୟୟ ପାଇଁ ଦୁଇଗୋଟି ଅଶୁଭ ଶକ୍ତି ମୁଖ୍ୟତଃ ଦାୟୀ । ତାହାହେଲା ଦାରିଦ୍ର୍ୟ ଓ ବେକାରୀ । ଦାରିଦ୍ର୍ୟ କେବଳ ଏକ ବାସ୍ତବତା ନୁହେଁ, ଏକ ମାନସିକତା ମଧ୍ୟ । ଧନୀ ହେବାର ସହଜ ମନୋଭାବ ହିଁ ଦାରିଦ୍ର୍ୟର ମୂଳ କାରଣ । ଅର୍ଥର ସଫଳ ବିନିଯୋଗରେ ଦାରିଦ୍ର୍ୟର ଦୂରୀକରଣ କେତେକାଂଶରେ ସମ୍ଭବ । ଗଚ୍ଛିତ ହୋଇ ରହି ବ୍ୟକ୍ତିର ଅହଂ ବୃଦ୍ଧି କରିବା ଅର୍ଥର କାର୍ଯ୍ୟ ନୁହେଁ। ସମାଜର କୋଣ ଅନୁକୋଣରେ ଅର୍ଥ ଶକ୍ତି ପହଞ୍ଚିବା ଆବଶ୍ୟକ । ଏହି ପହଞ୍ଚିବାର ପଦ୍ଧତି ହେଉଛି ବେକାରୀ ଦୂରୀକରଣର ଅନ୍ୟତମ ପରିଭାଷା । ଦାରିଦ୍ର୍ୟ ଦୂରୀକରଣ ଓ ବେକାରୀ ଦୂରୀକରଣ ଗୋଟିଏ ମୁଦ୍ରାର ଦୁଇପାଖ ଭଳି ଓତପ୍ରୋତ ଭାବରେ ଜଡ଼ିତ ହେଲେ ସାମାଜିକ ବିକାଶ ତଥା ରାଷ୍ଟ୍ରୀୟ ବିକାଶ ତ୍ୱରାନ୍ୱିତ ହବ ।

ଆମର ସମସ୍ୟା ସବୁକୁ ଆମେ ବିଶ୍ଳେଷଣ କରିବା ଏବଂ ସମାଧାନର ପନ୍ଥା ନିର୍ଣ୍ଣୟ କରିବାକୁ ପ୍ରୟାସୀ ହେବା ହିଁ ଆଜରି ଅନୁଚିନ୍ତା ।





Digitized by PPRACHIN, SOA

# ଶେଷ କେଉଁଠି

ଶେଷ ଫୁଲଟ ଏପର୍ଯ୍ୟନ୍ତ ଫୁଟି ନାହିଁ । ଯଦିବା ପ୍ରତିଦିନ ବହୁତ ଫୁଲ ଫୁଟୁଛି । ଶେଷ ଲହରୀଟି ଏ ପର୍ଯ୍ୟନ୍ତ ଉଠିନାହିଁ ଯଦିବା ପ୍ରତିଦିନ ବହୁ ଲହରୀ ଉଠୁଛି । ଶେଷ ଶ୍ରାବଣଟି ଏ ପର୍ଯ୍ୟନ୍ତ ଆସିନାହିଁ ଯଦିବା କେତେଥର ବନ୍ୟା କେତେ ନଦୀରେ ଆସିଛି । ଶେଷ ପ୍ରେମ ଏ ପର୍ଯ୍ୟନ୍ତ ପୃଥିବୀକୁ ଆସିନାହିଁ ଯଦିବା ରାଧା ପ୍ରେମ ଶ୍ରେଷ୍ଠ ବୋଲି ସ୍ୱୀକୃତ ଓ ସମ୍ମାନିତ ହୋଇଛି । ଶେଷ କ୍ଷମା ଏ ପର୍ଯ୍ୟନ୍ତ ରୂପାୟିତ ହୋଇନାହିଁ ଯଦିବା ଯୀଶୁଖ୍ରୀଷ୍ଟ ତାଙ୍କର ହତ୍ୟାକାରୀମାନଙ୍କୁ କ୍ଷମା ଦେଇ ସାରିଛନ୍ତି । ଅହିଂସାର ଶେଷ ପ୍ରୟୋଗଟି କରାଯାଇନାହିଁ ଯଦିବା ମହାତ୍ମାଗାନ୍ଧୀ ଅହିଂସାର ଶ୍ରେଷ୍ଠ ପୂଜାରୀ ଭାବରେ ବିଶ୍ୱବିଖ୍ୟାତ ହୋଇଛନ୍ତି ।

'ଶେଷ' ଓ 'ଆରମ୍ଭ'-ଏଇ ଦୁଇ ଶବ୍ଦକୁ ନେଇ ବହୁ ପ୍ରଶ୍ନ ଜନମାନସରେ କାଳେକାଳେ ସୃଷ୍ଟି ହୋଇଛି । କଥାଟି ଯେତିକି ବୁଝି ହେଉଛି, ତା'ଠାରୁ ଅଧିକ ଅବୁଝା ହୋଇ ରହିଯାଉଛି । 'ଶେଷ' ଶବ୍ଦଟିର ଅର୍ଥ ଛାୟାଛନ୍ନତା ଭିତରେ ରହି ଏକପ୍ରକାର କୁହୁକ ଲଗାଇ ଦେଉଛି । ଏପଟରୁ ବୁଝିଲେ ସେପଟରୁ ବୁଝି ହେଉନାହିଁ, ସେ ପାଖରୁ ବୁଝିଲେ ଏ ପାଖରୁ ବୁଝି ହେଉନାହିଁ । କଥାଟି ଯେତିକି ବୁଝି ହେଉଛି ସେଥିରୁ ଏତିକି ଜାଣିହେଉଛି ଯେ ଗୋଟିଏ ଶେଷ ହିଁ ଅନ୍ୟ ଏକ ଆରମ୍ଭର ଦ୍ୱାରଦେଶ । ଶେଷ କଥାଟିର ଶେଷ ଯେଉଁଠି ହୁଏ, ଆରମ୍ଭର ଆରମ୍ଭ ହିଁ ସେଇଠି ହୁଏ । ଅନ୍ୟଭାଷାରେ କୁହାଯାଇପାରେ ଯେ ଶେଷର ଶେଷ ପାହାଚ ହିଁ ଆରମ୍ଭର ପ୍ରଥମ ପାହାଚ । ଆହୁରି ମଧ୍ୟ କୁହାଯାଇପାରେ ଯେ ପ୍ରତ୍ୟେକ ଶେଷ ଭିତରେ ତାହାର ଅନ୍ୟ ଏକ ଆରମ୍ଭ ଯେପରିଥାଏ, ପ୍ରତ୍ୟେକ ଆରମ୍ଭ ଭିତରେ ତାହାର ଶେଷ ସେହିପରି ସଂଗୋପିତ ତଥା ସଂଗଠିତ ହୋଇଥାଏ । ଅତଏବ ଏଥିରୁ ଏତିକି ସ୍ପଷ୍ଟ ଯେ 'ଆରମ୍ଭ'ର ବିପରୀତ ଧର୍ମୀ ଶବ୍ଦ 'ଶେଷ' ନୁହେଁ । ବରଂ ଆରମ୍ଭର ରୂପାନ୍ତରିତ ରୂପ ହେଉଛି ଶେଷ ଓ ଶେଷର ରୂପାନ୍ତରିତ ରୂପ ହେଉଛି । ଶେଷ ଭିତରେ ଆରମ୍ଭର ଉପସ୍ଥିତି ଓ ଆରମ୍ଭ ଭିତରେ ଶେଷର ସ୍ଥିତି ଅଦୃଶ୍ୟଭାବରେ ସଂଲଗ୍ନ ହୋଇ ରହିଥାଏ । ସୁତରାଂ ଆମକୁ ଯେତେ ଯେତେକଥା ଶେଷ ବୋଲି ମନେହୁଏ, ପ୍ରକୃତରେ ସେଇ ସେଇ କଥା ଶେଷ କଥା ନୁହେଁ । ପ୍ରାୟତଃ ଆମକୁ ଶ୍ରେଷ୍ଠକଥାଗୁଡ଼ିକ ଶେଷ କଥା ବୋଲି ମନେହୁଏ । ପ୍ରକୃତରେ ଶ୍ରେଷ୍ଠ ଓ ଶେଷ ଭିତରେ ଅକାଶ ପାତାଳ ତଫାତ୍ ରହିଛି । ଶ୍ରେଷ୍ଠର ପରିଚିତି ଦେଶ, କାଳ ଓ ପାତ୍ରରେ ନିର୍ଦ୍ଧାରିତ, ମାତ୍ର 'ଶେଷ'ଟି ଦେଶ, କାଳ ଓ ପାତ୍ରର ଉର୍ଦ୍ଧ୍ୱରେ ଥାଇ କ୍ରିୟାଶୀଳ । କିପରି ଆରମ୍ଭର



Digitized by PPRACHIN, SOA

କିପରି ଶେଷ ପୁଣି କିପରି ଶେଷର କିପରି ଆରମ୍ଭ ହେବ, ତାହା କୌଣସି ଗାଣିତିକ ସୂତ୍ରଦ୍ୱାରା ନିୟନ୍ତ୍ରିତ ନୁହେଁ ସତ୍ୟ, ମାତ୍ର ଏଥିପାଇଁ ଯେ ଏକ ନିୟନ୍ତ୍ରକ ତଥା ନିୟାମକ ଶକ୍ତି ରହିଛି, ଏହାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ସେହି ଶକ୍ତିହେଉଛି ବିଶ୍ୱ ପ୍ରକୃତି । ମାନସ ବୁଦ୍ଧିର ଅଲକ୍ଷ୍ୟରେ ତାହାର କ୍ରିୟା ସମ୍ପାଦିତ ଓ ସଂଗଠିତ ହୁଏ ।

ବିଶ୍ୱପ୍ରକୃତି ନିରନ୍ତର କେତେ କଥା ଗଢ଼େ ଓ ଭାଙ୍ଗେ । ଗଢ଼େ ବୋଲି ଭାଙ୍ଗେ କି ଗଢ଼ିବା ପାଇଁ କି ଭାଙ୍ଗେ, ଭାଙ୍ଗେ ବୋଲି ଗଢ଼େ କି ଭାଙ୍ଗିବା ପାଇଁ ଗଢ଼େ, ଏ ପ୍ରଶ୍ନର ଉତ୍ତର ଏ ପର୍ଯ୍ୟନ୍ତ କାହାକୁ ମିଳିନାହିଁ । ତେବେ ଏତିକି ଲକ୍ଷ୍ୟକରି ହେଉଛି ଯେ ଯେଉଁ ବିଶ୍ୱପ୍ରକୃତି ଗଢ଼ିବାରେ ଉଲ୍ଲସିତ, ସେଇ ବିଶ୍ୱପ୍ରକୃତି ଭାଙ୍ଗିବାରେ ଉଦାସୀନ ନୁହେଁ । ଉଦାସୀନ ହେବା ପାଇଁ ତା' ପାଖରେ ସମୟ ମଧ୍ୟ ନାହିଁ । କାରଣ ସେ ଅହରହ କ୍ରିୟାରତ । ତା'ର କ୍ଳାନ୍ତି ନାହିଁ, ବିରକ୍ତି ନାହିଁ କି ବିତୃଷ୍ଣା ମଧ୍ୟ ନାହିଁ, ବରଂ ଅଛି କର୍ମ ପ୍ରବଣତା, ଅନୁରକ୍ତି ଓ ଆଗକୁ ଯିବାକୁ ଅନେକ ତୃଷ୍ଣା । ଏଇ ତୃଷ୍ଣା ତାକୁ ପ୍ରେରଣା ଦିଏ, ଉତ୍ସାହ ଦିଏ । ପ୍ରଗତି ପଥରେ ଅଗ୍ରଗତି କରିବାକୁ ଅସୀମ ଶକ୍ତି ଓ ଅଶେଷ ସାମର୍ଥ୍ୟ ଦିଏ । ଶେଷ ଓ ଆରମ୍ଭ ଭିତରେ ଆମ ପାଇଁ ଅସ୍ପଷ୍ଟ, ମାତ୍ର ତା'ପାଇଁ ସ୍ପଷ୍ଟ ସୀମାରେଖାଟି ସେ କେତେବେଳେ ଓ କିପରି ଟାଣେ, ସେକଥା ସେ ହିଁ ଜାଣେ । ପ୍ରତି କଥାକୁ ଅଧିକ ମହନୀୟ ଓ ମୋହନୀୟ କରି ଗଢ଼ିବାକୁ ସେ ଚାହେଁ । ଅନୁପମ ମୋହିନୀ ମନ୍ତ୍ରରେ ମନ୍ତ୍ରାୟିତ, ମନୋରମ ସୁଚାରୁ ଛନ୍ଦରେ ଛନ୍ଦାୟିତ ସେ ଏକ ଅଦୃଶ୍ୟ ଅନୁଭବ୍ୟ ସତ୍ତା ।

ବିଶ୍ୱ ପ୍ରକୃତିର ମୁଗ୍ଧ ମଧୁରିମା ପହଁରିଯାଏ ପାଣିରୁ ପବନ ପର୍ଯ୍ୟନ୍ତ । ତରୁରୁ ତୃଣ ପର୍ଯ୍ୟନ୍ତ କଅଁଳ ପତ୍ରର ଧାରେ ଧାରେ ତାହା ମାଖି ହୋଇଯାଏ । ସବୁଜ କେଦାରର ଲହରୀରେ ଫୁଟା ଫୁଲର ପାଖୁଡ଼ାରେ, ଭ୍ରମରର ଗୁଞ୍ଜନରେ ପୁଣି ଦିଗ୍‌ବଳୟର ଗାରେ ଗାରେ ତା'ର ରୂପବିଭା ଜକ ଜକ ଦିଶେ ଓ ମଧୁର ଛନ୍ଦରେ ଝରିଝରି ପଡ଼େ । ସାତ ସମୁଦ୍ର ତେର ନଈ ଡେଇଁ ପବନ ହୋଇ ସବୁକିଛିକୁ ଛୁଇଁଯାଏ, ପୁଣି ସଭିଙ୍କ କାନରେ କହିଯାଏ ନୂଆ ନୂଆ କଥା ଓ ସଭିଙ୍କ ଅନ୍ତରରେ ଦେଇଯାଏ ନୂଆ ନୂଆ ବାର୍ତ୍ତା । ସେ କଥାର ଧ୍ୱନିମାଳା ଓ ସେ ବାର୍ତ୍ତାର ଭାବଧାରା ଅନନ୍ୟ ଓ ଅସାଧାରଣ । କାହା କଥାରେ ସିଏ ଅନୁମାନରୁ ଅନୁଭବ ଓ ଭାବନାରୁ ଭାଷା ପର୍ଯ୍ୟନ୍ତ ବିକଶିତ ଓ ବିସ୍ତୃତ । ସିଏ ପୁଣି ରୂପାୟିତ 'ଆରମ୍ଭ'ରେ ଓ 'ଶେଷ'ରେ । ଆରମ୍ଭର ଆରମ୍ଭ ସିଏ, ପୁଣି ଶେଷର ଶେଷ ମଧ୍ୟ ସିଏ । ପଥ ସିଏ, ପାଥେୟ ସିଏ ପୁଣି ପଥପ୍ରାନ୍ତର ଛାଇ ମଧ୍ୟ ସିଏ । ସେ ଚାଲେ ଓ ଚଲାଏ, ହସେ ଓ ହସାଏ, କାନ୍ଦେ ଓ କନ୍ଦାଏ, ଭାସେ ଓ ଭସାଏ । ସେ ବାଟରେ ଅଟକେ ନାହିଁ, କି କେହି ଅଟକି ଯାଆନ୍ତୁ ବୋଲି ସେ ଚାହେଁ ନାହିଁ । ଆରମ୍ଭ ତା'ପାଇଁ ଆରମ୍ଭ ନୁହେଁ କି ଶେଷ ତା'ପାଇଁ ଶେଷ ନୁହେଁ । ସେ ହିଁ ଆରମ୍ଭ, ସେ ହିଁ ଶେଷ । ସେ ହିଁ ବିଶେଷ, ସେ ହିଁ ନିର୍ବିଶେଷ । ତାକୁ ମଥାନତ ପ୍ରଣାମ ।





Digitized by PPRACHIN, SOA

# ଆଲୋକର ଜୟଗାନ

ଅନ୍ଧାର ଅନ୍ଧାର ବୋଲି ଚିତ୍କାର କଲେ ଅନ୍ଧାର ଯାଏନାହିଁ। ଆଲୁଅ ଆସିଲେ ଅନ୍ଧାର ଯାଏ। ଅତଏବ ଚିତ୍କାର କରିବା ଠାରୁ ଦୀପ ଶିଖାଟିଏ ଜଳାଇବାର ପ୍ରୟାସ କରିବା ଶତଗୁଣେ ଶ୍ରେୟସ୍କର। ଅନ୍ଧାର ହୋଇଛି ଅନ୍ଧାର ହୋଇଛି ବୋଲି କେବଳ ପ୍ରଚାର କଲେ ବକ୍ତା ଓ ଶ୍ରୋତା ଉଭୟଙ୍କର ସମସ୍ତ ଶକ୍ତି, ସମୟ ଓ ଏକାଗ୍ରତା ଅନ୍ଧାର ଆଡକୁ ଯାଏ। କ୍ରମଶଃ ଅନ୍ଧାରର ଉପାସନା ଅଧିକ ହେଲେ ଅନ୍ଧାରର ଆଧିପତ୍ୟ ବଢ଼ିଯାଏ। ଆଲୋକର କଥା ପ୍ରାୟତଃ ଲୋକମାନେ ଭୁଲିଯାଆନ୍ତି। ହତାଶା, ଗ୍ଲାନି, ମିଥ୍ୟା, କପଟ, ଛଳନା, ଈର୍ଷା, ହିଂସା, କଳହ ଇତ୍ୟାଦି ଅପଶକ୍ତିମାନେ ପ୍ରବଳ ହୁଅନ୍ତି। ଜୀବନ ଏହି ଅପଶକ୍ତିମାନଙ୍କ କବଳରେ ପଡ଼ି ଛଟପଟ ହୁଏ, ଅଶାନ୍ତ ହୁଏ। ଆଜିର ସମୟ ଏପରି ଏକ ସମୟ ଯେତେବେଳେ କି ଅପଶକ୍ତିମାନେ ଜୀବନକୁ କରାୟତ୍ତ କରିରଖିଛନ୍ତି। ଅପଶକ୍ତିମାନଙ୍କୁ ଗୁରୁତ୍ୱ ଦେବାରୁ ସେମାନେ ଏତେ ପ୍ରବଳ ହୋଇଛନ୍ତି, ଗୁରୁତ୍ୱ ନଦେଲେ ସେମାନେ ଦୁର୍ବଳ ହେବାକୁ ବାଧ୍ୟ ହେବେ। ଆଲୋକର ଅଭିପ୍ସାରେ ଅନ୍ଧାରର ଶକ୍ତି ହ୍ରାସ ହେବ। ଅତଏବ ଅନ୍ଧାରର ସପକ୍ଷରେ ବହୁ କଥା କହିବା ଅପେକ୍ଷା ଆଲୋକର ସପକ୍ଷରେ ଅଳ୍ପ କଥା କହିବା ବହୁଗୁଣରେ ଅଭିନନ୍ଦନୀୟ। ପ୍ରକୃତରେ ଆଶା ଓ ବିଶ୍ୱାସ ବଳରେ ହତାଶା ଓ ଅବିଶ୍ୱାସର କଳାମେଘ ଅପସାରିତ ହୋଇପାରେ। ନବଚେତନାର ସୁଲଳିତ ମଧୁଜୋଛନାରେ ଜୀବନ ସୁଶ୍ରୀଶୋଭନ ହୋଇପାରେ। ଆନନ୍ଦର ନୀଳ କଇଁଫୁଲ ପାଖୁଡା ପାଖୁଡା ବୋଲି ଫୁଟିଯାଇପାରେ। ପରିବେଶ ପରିଣତ ହୋଇପାରେ ଅପାର୍ଥିବ ସୁକୁମାରତାର ସୁଲଳିତ କାବ୍ୟରେ।

ଦିବ୍ୟ ମାଧୁରିମାର ମୋହନ ବିଳାସ ମୂର୍ତ୍ତିମନ୍ତ ହୋଇପାରେ ବିଶ୍ୱ ପରିବେଶରେ, ଆଲୋକର ଆଗମନ ନିର୍ଭର କରେ ଆବାହନରେ ଆନ୍ତରିକତା ଉପରେ। ଆବାହନ ଯେତେ ତୀବ୍ର ହୁଏ, ଆଲୋକର ଆଗମନ ପଥ ସେତେ ସରଳ ହୁଏ। ଏଥିପାଇଁ ମୁଖ୍ୟତଃ ଜନସଚେତନତା ଉପରେ ଗୁରୁତ୍ୱ ଆରୋପିତ ହୁଏ। ଜନଶିକ୍ଷାରୁ ଜନସଚେତନତା କେତେକାଂଶରେ ସୃଷ୍ଟି ହୁଏ। ଶିକ୍ଷା କହିଲେ ଡିଗ୍ରୀକୁ ବୁଝାଏ ନାହିଁ। ଶିଖିବାର ମନୋବୃତ୍ତି ହିଁ ଶିକ୍ଷାର ମୂଳମନ୍ତ୍ର। ଶିକ୍ଷା ଆନୁଷ୍ଠାନିକ ହୋଇପାରେ ପୁଣି ଅଣଆନୁଷ୍ଠାନିକ ମଧ୍ୟ ହୋଇପାରେ। ବିଦ୍ୟାଳୟ, ମହାବିଦ୍ୟାଳୟ ତଥା ବିଶ୍ୱବିଦ୍ୟାଳୟରୁ ଜଣେ ଯେପରି ଶିକ୍ଷା



Digitized by PPRACHIN, SOA

ଲାଭ କରିପାରେ ସେପରି ନିଜର ପରିବାର, ସମାଜ ତଥା ପରିବେଶରୁ ମଧ୍ୟ ଶିକ୍ଷା ଅର୍ଜନ କରିପାରେ। ଶିକ୍ଷା ଏକ ନିର୍ମଳ ସ୍ୱଚ୍ଛ ପ୍ରବାହ ଯାହା ଅବିରତ ଧାରାରେ ଜୀବନ ଭୂମିରେ ପ୍ରବାହିତ ହୁଏ। ଅଭିଜ୍ଞତାରୁ ବହୁ କଥା ଶିଖିବାକୁ ହୁଏ। ବୟସ୍କ ବ୍ୟକ୍ତିଙ୍କ ଠାରୁ ବହୁ କଥା ଶିଖିବାକୁ ଥାଏ। ଆମ ସଂସ୍କୃତିରେ ଅଭିଜ୍ଞତା ଉପରେ ବିଶେଷ ଗୁରୁତ୍ୱ ଆରୋପିତ ହୁଏ। ଡିଗ୍ରୀର ମାନଦଣ୍ଡରେ ବୟସ୍କ ବ୍ୟକ୍ତିଙ୍କର ମାନସମ୍ମାନ ମପାଯାଏନାହିଁ। ଅତଏବ ପିଲାମାନଙ୍କୁ ସଚେତନ ଓ ଯଥାର୍ଥରେ ଶିକ୍ଷିତ କରିବାର ଦାୟିତ୍ୱ ଗୁରୁ ଗୁରୁଜନଙ୍କ ଉପରେ ରହିଛି, ଏହା ଅସ୍ୱୀକାର କଲେ ଚଳିବନାହିଁ। ଅନ୍ୟ ଅର୍ଥରେ ଏପରି କୁହାଯାଇପାରେ ଯେ, ଅଭିଭାବକମାନେ ସ୍ୱଇଚ୍ଛାରେ ନହେଲେ ମଧ୍ୟ ଅନିଚ୍ଛାରେ ଅନ୍ତତଃ ଉଚିତ୍ ଅର୍ଥରେ ସଚେତନ ବା ଶିକ୍ଷିତ ହେବା ଉଚିତ୍। ପିଲାମାନଙ୍କୁ ଶିକ୍ଷିତ କରିବା ପାଇଁ ଏ କଷ୍ଟ ସ୍ୱୀକାର କରିବା ଏକ ଅପରିହାର୍ଯ୍ୟ ଆବଶ୍ୟକତା। ପିଲାମାନଙ୍କୁ ଭଲ କଥା ନ ଶିଖାଇ, ଭଲ ଶିକ୍ଷା ନଦେଇ ତାଙ୍କଠାରୁ  ଭଲ ଆଶା କରିବା ବିଡମ୍ବନା ମାତ୍ର। ପିଲାଙ୍କଠାରୁ ଭଲ କଥା ନପାଇଲେ ସେମାନଙ୍କୁ ଦୋଷ ଦେବା ଏକପ୍ରକାର ଅନ୍ୟାୟ ନୁହେଁ କି? ଖାଲି ଭଲ କଥା ଶୁଣାଇଲେ ବା ଜଣାଇଲେ ଅଭିଭାବକ ମାନଙ୍କର ଦାୟିତ୍ୱ ସରେନାହିଁ। ଭଲ କଥାକୁ କାର୍ଯ୍ୟରେ ପରିଣତ କରି ନିଜକୁ ଉଦାହରଣ ରୂପରେ ପିଲାମାନଙ୍କ ଆଗରେ ରଖିପାରିବା ହିଁ ଯଥାର୍ଥ ଅଭିଭାବକତ୍ୱ।

ଏପରି ସମୟରେ ସଂପ୍ରତି ଆମେ ବାସ କରୁଛୁ ଯେତେବେଳେ ଚତୁର୍ଦ୍ଦିଗରେ ହତାଶାର ହିମଶୀତଳ ପରିବେଶ ଅନୁଭୂତ ହେଉଛି। ଯେତେ ଅଘଟଣ ସବୁ ଘଟୁଛି, ଯାହା ସାଧାରଣ କଳ୍ପନାର ବାହାରେ ଥିଲା, ସେପରି ଘଟଣା ଘଟୁଛି। ପ୍ରକୃତରେ ଏସବୁ ଆଉ କେଉଁ ଗ୍ରହରୁ ଆମଦାନୀ ହୋଇଆସୁନାହିଁ। ମଣିଷ ମନର କେଉଁ ଏକ ଅନ୍ଧାରୀକୋଣରେ ଲୁଚି ରହିଥିବା ଅପଶକ୍ତିମାନେ ଲମ୍ଫ ପ୍ରଦାନ ପୂର୍ବକ ଆତ୍ମପ୍ରକାଶ କରୁଛନ୍ତି। ଏହାର କାରଣ ହେଉଛି ଯେ, ମଣିଷ ମନର ପୂର୍ଣ୍ଣତା ଆସିଲାଣି। ବହୁ ଭଲ ଚିନ୍ତାର ସୁବର୍ଣ୍ଣ ସମ୍ଭାବନା ମନକୁ ଅଧିକାର କରିବାକୁ ବସିଲାଣି। ଏହି ପରିପ୍ରେକ୍ଷୀରେ ମନର ମଇଳା ସବୁ ଉପରିଭାଗକୁ ଉଠିଆସିବାକୁ ଉଦ୍ୟମ କରୁଛି। ତେଣୁ ଅଘଟଣ ସବୁ ଘଟିଚାଲିଛି। ମଣିଷର ଭବିଷ୍ୟତ ଆଉ ଏକ ଉଚ୍ଚ ମାନସିକତା। ସେଥିପାଇଁ ପ୍ରସ୍ତୁତିର ପର୍ବ ଚାଲିଛି।

ଅତଏବ ସାଂପ୍ରତିକ ଜୀବନରେ ଏସବୁ ଅଘଟଣ ଦେଖି ବିବ୍ରତ ନହୋଇ ଶାନ୍ତ ହୋଇ ନିଜର ଗୁରୁ ଦାୟିତ୍ୱକୁ ସ୍ମରଣ କରିବା ଉଚିତ୍। ଆଲୋକର ଅଭିଷେକ ପାଇଁ ଲଳିତ ସ୍ୱରରେ ସ୍ୱାଗତିକା ସହ ଶୁଭ ପ୍ରଦୀପମାଳା ସଜାଇ ରଖିବା ଆମର କର୍ତ୍ତବ୍ୟ। ଆଲୋକର କ୍ରିୟା ତ୍ୱରାନ୍ୱିତ ହେଲେ ଅତିମନର ଅଭିବ୍ୟକ୍ତି ସହଜ ଓ ସରଳ ହେବ। ପ୍ରାଚୁର୍ଯ୍ୟ ଓ ମାଧୁର୍ଯ୍ୟର ମଧୁମିଳନରେ ବିଶ୍ୱଜୀବନ ଅନୁପମ ବିକାଶର ଅଧିକାରୀ ହେବ।



Digitized by PPRACHIN, SOA

ଅତିମନର ପ୍ରଭାବରେ ଦିବ୍ୟସୌରଭ ବିଛୁରିତ ହେବ ଦିଗଦିଗନ୍ତରେ। ଭରିଯିବ ଜୀବନରେ ଅନେକ ମୂଲ୍ୟବୋଧ।

ପ୍ରକୃତିର ଅଭୀପ୍‌ସା ବଳରେ ପ୍ରାଣରୁ ମନର ସୃଷ୍ଟି ହେଲା। ଚତୁଷ୍ପଦ ପ୍ରାଣୀରୁ ଦ୍ୱିପଦ ପ୍ରାଣୀର ବିକାଶ ଘଟିଲା। ମନ ସୃଷ୍ଟି ହେବା ପରେ ମନର ସମୁଚିତ ବିକାଶ ନିମନ୍ତେ ଆବଶ୍ୟକୀୟ ପ୍ରୟାସ ଓ ଉଦ୍ୟମ ମନୁପୁତ୍ରକୁ ହିଁ କରିବାକୁ ପଡ଼ିବ। କେବଳ ପ୍ରକୃତିର ଅଭୀପ୍‌ସା ଉପରେ ନିର୍ଭର କରିହେବନାହିଁ। ନିର୍ଭର କଲେ ବହୁ ସହସ୍ର ବର୍ଷ ବିତିଯିବ। ପ୍ରକୃତିର ଅଭୀପ୍‌ସା ସହ ମାନବର ଅଭୀପ୍‌ସା ସମନ୍ୱୟରେ ବିକାଶ ହେବ ସର୍ବାଙ୍ଗୀନ ଓ ପୂର୍ଣ୍ଣାଙ୍ଗ। ଚେତନାରେ ଅଗ୍ରଗତି ପାଇଁ ସଂକଳ୍ପ କରିବାକୁ ହେବ। ସଂକଳ୍ପର ଦୃଢ଼ତା ପାଇଁ ହୃଦୟ ମନ୍ଦିରକୁ ଶୁଦ୍ଧ ରଖିବାକୁ ହେବ।





Digitized by PPRACHIN, SOA

# ନିନ୍ଦାଜୀବନ ହିଁ ଶ୍ରଦ୍ଧାଜୀବନ

ଶ୍ରଦ୍ଧା ଏକ ଶବ୍ଦ ମାତ୍ର ନୁହେଁ, ଏକ ବିରଳ ଅନୁଭବ। ଏ ଶବ୍ଦର ପ୍ରତିଶବ୍ଦ କି ଏ ଅନୁଭବର ପ୍ରତି ଅନୁଭବ ନାହିଁ। ଏ ଶବ୍ଦକୁ ବିଦେଶୀ ଭାଷାରେ ସହଜରେ ଅନୁବାଦ କରାଯାଇପାରିବ ନାହିଁ। ଶ୍ରଦ୍ଧାର ଅର୍ଥକୁ ଯେତେ ବୁଝାଇଲେ ମଧ୍ୟ ତାହା ଅବୁଝା ରହିବ। ସେ ତ ମହାସମୁଦ୍ର, ତାକୁ ଜାଲ ପକାଇ ଧରିବ କିଏ? ଜାଲରେ ତ ମହାସମୁଦ୍ର ଧରି ହୁଏନାହିଁ, ଧରିହୁଏ କେତେ **ବିନ୍ଦୁଜଳ**।

ମା'ର ପିଲାଟି ପାଇଁ ଶ୍ରଦ୍ଧାର କଳନା ନାହିଁ, ପିଲାଟି ସୁନ୍ଦର ହେଉ ଅଥବା ଅସୁନ୍ଦର ହେଉ, ସୁଠାମ ହେଉ ଅଥବା ବିକଳାଙ୍ଗ ହେଉ, ସୁସ୍ଥ ହେଉ ଅଥବା ରୁଗ୍‌ଣ ହେଉ, ମା' ମନରୁ କାହୁଁ ଭିତରୁ ଆସି ଅଜାଡ଼ି ହୋଇପଡ଼େ ଶ୍ରଦ୍ଧା, ସେ ଗଭୀରତା ମାପିହୁଏନା। ସେ ଶ୍ରଦ୍ଧାର ସ୍ୱରୂପ ଅତ୍ୟନ୍ତ ସୁନ୍ଦର ଓ ସୁକୁମାର। ମା'ର ଶ୍ରଦ୍ଧାକୁ ପିଲାଟିଏ ଶତ ପ୍ରତିଶତ ବୁଝିପାରେନାହିଁ। ଆଉ ଯେତିକି ବୁଝେ ସେତିକି ବୁଝିବାରେ 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ନ କହି ରହିପାରେ ନାହିଁ। ପିଲାଟି ପାଖରେ ସମୟ ଓ ପରିବେଶ ଅନୁସାରେ କିଛି କିଛି ପ୍ରଲୋଭନ ଥାଇପାରେ ମା'ର ଶ୍ରଦ୍ଧାକୁ ଭୁଲିଯିବା ପାଇଁ, ମାତ୍ର ମାଆ ପାଖରେ କେବେ ହେଲେ କିଛି ପ୍ରଲୋଭନ ନଥାଏ ପିଲାକୁ ଭୁଲିଯିବାପାଇଁ। ସପ୍ତାଶ୍ଚାର୍ଯ୍ୟ ବ୍ୟତୀତ ଆଉ ଏକ ଆଶ୍ଚର୍ଯ୍ୟର କଥା ହେଉଛି ଯେ ପିଲାଟିର ବୟସ ଯେ ବଢୁଛି, ଏ କଥା ମା' ବୁଝିପାରେ ନାହିଁ।

ଶ୍ରଦ୍ଧା ଏକ ସାମଗ୍ରୀ ନୁହେଁ ଯାହାକୁ କିଣିହେବ ଅଥବା ବିକି ହେବ। ତା'ର ମୂଲ୍ୟନାହିଁ, ତେଣୁ ତ ସିଏ ଅମୂଲ୍ୟ। ତାହା ହାଟବଜାରରେ ମିଳେ ନାହିଁ କି ମଲମଣ୍ଡିରେ ମିଳେ ନାହିଁ। ଦିନ ଥିଲା ଆମ ଦେଶରେ ଏହି ଶ୍ରଦ୍ଧାର ମାନଦଣ୍ଡରେ ଜୀବନର ମାପ ହେଉଥିଲା। ଜୀବନ ଥିଲା ଶ୍ରଦ୍ଧାମୟ, ଶ୍ରଦ୍ଧାର ଅନ୍ୟନାମ ଥିଲା ଜୀବନ। ପୁରାଣରେ ଏହାର ବହୁ ଉଦାହରଣ ରହିଛି। ଶ୍ରଦ୍ଧାରେ ଭଗବାନ କଦଳୀ ଚୋପା, ଶାଗଭଜା, ଅଇଁଠା ଫଳ ଭକ୍ତହାତରୁ ଖାଇପାରନ୍ତି। ଅଇଁଠା ହୋଇନଥିବା ଫଳକୁ ନ ଖାଇ ପଚାରନ୍ତି, ତହିଁରେ ଦାନ୍ତଚିହ୍ନ କାହିଁକି ନାହିଁ ବୋଲି?

ମାଆ ଗାଳି ଦିଅନ୍ତି, ଗଛରେ ବାନ୍ଧିଦିଅନ୍ତି ଆଉ ସେଇ ଗାଳି ଓ ଦଣ୍ଡକୁ ଭଗବାନ ଶ୍ରଦ୍ଧାରେ ଫୁଲମାଳିପରି ତୋଳି ନିଅନ୍ତି। ଭଗବାନ ପୁଣି ରାଜା ଶ୍ରଦ୍ଧାରେ ଦରିଦ୍ର ସାଙ୍ଗଠାରୁ ଖୁଦଭଜା ଛଡ଼ାଇ ଖାଇପାରନ୍ତି। ଗୋପିମାନଙ୍କର ପାଦଧୂଳିକୁ ଶ୍ରଦ୍ଧାରେ ଭଗବାନ ଦେହରେ



Digitized by PPRACHIN, SOA

ବୋଲି ହୋଇପଡନ୍ତି । କିମ୍ବଦନ୍ତି, ଜନଶ୍ରୁତି ଓ ଇତିହାସରେ ମଧ୍ୟ ଶ୍ରଦ୍ଧାର ବହୁ ଉଦାହରଣ ରହିଛି । ଶ୍ରଦ୍ଧାରେ ଭଗବାନ ଲେଖିଦେଇ ପାରନ୍ତି- 'ଦେହି ପଦପଲ୍ଲବ ମୁଦାରମ୍' । ଶ୍ରଦ୍ଧାରେ ସୈନିକ ସାଜି ଯାଇପାରନ୍ତି ଓ ସଂଗ୍ରାମ ଭୂମିରେ ଗଜପତିଙ୍କୁ ଜୟଯୁକ୍ତ କରାଇ ପାରନ୍ତି । ଅଇଁଠା ଦାନ୍ତକାଠି, ଘଣ୍ଟା ହୋଇଥିବା ଖେଚେଡ଼ିକୁ ଖୁସିରେ ଖାଇପାରନ୍ତି ଓ ବାଈହାଣ୍ଡି ନାମକୁ ସାର୍ଥକ କରିପାରନ୍ତି । ଶ୍ରଦ୍ଧାରେ ବନ୍ଧୁମହାନ୍ତିଙ୍କୁ ଭୋଗ ଥାଳିଯାଚି ଦେଇ ପାରନ୍ତି ଏବଂ ଦାସିଆ ବାଉରୀ ହାତରୁ ଶ୍ରୀଫଳ ଓ ପାଚିଲା ଆମ୍ବ ନେଇପାରନ୍ତି । ଭକ୍ତର ଭଗବାନଙ୍କ ପ୍ରତି ଶ୍ରଦ୍ଧା ଓ ଭଗବାନଙ୍କର ଭକ୍ତପ୍ରତି ଶ୍ରଦ୍ଧାକୁ ଭାଷାରେ ବୁଝାଇ ହେବ ନାହି ।

ଶ୍ରଦ୍ଧାରେ ଫୁଲ ଫୁଟେ, ପକ୍ଷୀଗାଏ, ଝରଣା ଝରେ, ସମୁଦ୍ରନାଚେ । ଦେଶପ୍ରତି ଶ୍ରଦ୍ଧାରୁ ସୈନିକ ଜନ୍ମଭୂମିର ସୁରକ୍ଷା ଲାଗି ଘୋର ସଂଗ୍ରାମ କରେ, ଦରକାର ପଡ଼ିଲେ ଜୀବନ ପର୍ଯ୍ୟନ୍ତ ଦେଇପାରେ । ଜନ୍ମଭୂମିପ୍ରତି ଶ୍ରଦ୍ଧାରୁ ହିଁ ପରାଧୀନ ଭାରତରେ ସ୍ୱାଧୀନତା ସଂଗ୍ରାମର ସୂତ୍ରପାତ ହୋଇଥିଲା । ଶ୍ରଦ୍ଧା ହିଁ ସବୁ ସଫଳତା ଓ ପୂର୍ଣ୍ଣତାର ମୂଳକଥା । ଯେକୌଣସି କର୍ମଟିକୁ ଯାନ୍ତ୍ରିକ ଭାବରେ ସଂପାଦନ କରିବା ଏବଂ ଶ୍ରଦ୍ଧାର ସହିତ ସଂପାଦନ କରିବା ଭିତରେ ଆକାଶପାତାଳ ତଫାତ୍ । ଜାତି ପ୍ରତି ଶ୍ରଦ୍ଧା, ଦେଶ ପ୍ରତି ଶ୍ରଦ୍ଧା ସର୍ବୋପରି ବିଶ୍ୱ ପ୍ରତି ଶ୍ରଦ୍ଧା ଆଜିର ଅପରିହାର୍ଯ୍ୟ ଆବଶ୍ୟକତା ହୋଇପଡିଛି । ନିଜଠାରୁ ନିଜକୁ ମୁକ୍ତ କରିପାରିଲେ ହିଁ ଚେତନାର ପରିବ୍ୟାପ୍ତି ଘଟିଥାଏ ।

ସାରା ବିଶ୍ୱ ସଂପ୍ରତି ସଂକଟମୟତାର ସମ୍ମୁଖୀନ । ବିଶୃଙ୍ଖଳା ଏହାକୁ ବାସଗୃହ କରିଛି । ବିଶ୍ୱଗ୍ରାମର ସ୍ୱପ୍ନ ସାକାର ହୋଇପାରୁନାହିଁ । ଜାତି, ଭାଷା, ସଂସ୍କୃତି ଓ ଦେଶ କ୍ଷେତ୍ରରେ ସଂକୀର୍ଣ୍ଣତା ଯୋଗୁଁ ପୂର୍ଣ୍ଣଜଗତୀକରଣ ସମ୍ଭବ ହୋଇପାରୁନାହିଁ ।

ଏତେବେଳେ ସାରା ବିଶ୍ୱ ସଚେତନ ଭାବରେ ହେଉ ଅଥବା ଅଚେତନ ଭାବରେ ହେଉ ଚାହିଁରହିଛି ଭାରତ ବର୍ଷ ଆଡ଼କୁ । ବିଶ୍ୱର ପ୍ରଗତି ଭାରତର ପ୍ରଗତି ଉପରେ ନିର୍ଭର କରେ ବୋଲି କୁହାଯାଇଛି । ଶ୍ରୀଅରବିନ୍ଦଙ୍କ ମତରେ- "ଆଜି ସମଗ୍ର ପୃଥିବୀ ଯେଉଁ ସବୁ ସମସ୍ୟାକୁ ନେଇ ବିବ୍ରତ ଓ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଛି ଭାରତ ଦେଇପାରେ ତାର ମୀମାଂସା ଓ ଯଥାଯଥ ସମାଧାନ । ଭାରତ ହେଉଛି ପୃଥିବୀର ଆତ୍ମା, ପୃଥିବୀକୁ ବଞ୍ଚାଇବାକୁ ହେଲେ ଭାରତକୁ ବଞ୍ଚାଇବାକୁ ହେବ ।" ଶ୍ରୀମା କହିଛନ୍ତି "ଭାରତ ହେବ ଆଗାମୀ ବିଶ୍ୱର ଗୁରୁ, ଦେବ ବିଶ୍ୱକୁ ଯଥାର୍ଥ ଦିଗ୍‌ଦର୍ଶନ ।"

ଏସବୁ କଥାକୁ କାର୍ଯ୍ୟକାରୀ କରିବାର କ୍ଷମତା ଓ ଯୋଗ୍ୟତା ବିଶେଷତଃ ଭାରତୀୟ ଯୁବଶକ୍ତି ନିକଟରେ ରହିଛି । ଯୁବମାନସରେ କିନ୍ତୁ ଦେଶପ୍ରତି, ସଂସ୍କୃତି ପ୍ରତି ଶ୍ରଦ୍ଧା ଆବଶ୍ୟକ ପରିମାଣରେ ନରହି ଆଶାତୀତ ଭାବରେ ରହୁଛି ବସ୍ତୁପ୍ରତି । କେମିତି କେମିତି ଧାରଣା ହୋଇଯାଇଛି ଯେ ବସ୍ତୁ ଦେବ ସୁଖ, ସମ୍ମାନ, ଯଶ, କ୍ଷମତା, ସମେତ ବହୁତ କିଛି ।



Digitized by PPRACHIN, SOA

ତେଣୁ ବସ୍ତୁ ପ୍ରତି ଶ୍ରଦ୍ଧା ବହୁତ ବଢ଼ିଛି। ମୁଁ ଏକଥା କହୁନାହିଁ ଯେ ବସ୍ତୁ ଅଲୋଡ଼ା ବୋଲି। ବସ୍ତୁର ଆବଶ୍ୟକତା ରହିଛି। ବସ୍ତୁର ଗୁରୁତ୍ୱପୂର୍ଣ୍ଣ ଭୂମିକା ଜୀବନ କ୍ଷେତ୍ରରେ ରହିଛି। ବସ୍ତୁ ଆମର ମାଲିକ ହେବା ଉଚିତ ନୁହେଁ, ବରଂ ଆମେ ବସ୍ତୁର ମାଲିକ ହେବା ଆବଶ୍ୟକ, ଅନ୍ୟପ୍ରକାରେ ଆମେ କହିପାରିବା ଯେ ବସ୍ତୁ ଆମର କାମ୍ୟ ମାତ୍ର ବସ୍ତୁବାଦ ଆମର କାମ୍ୟ ନୁହେଁ। ଯୁବମାନସରେ ଦେଶପାଇଁ ଶ୍ରଦ୍ଧା ଆହୁରି ବଢ଼ିଲେ ଆମଦେଶ ଅଧିକରୁ ଅଧିକ ପ୍ରଗତିଶୀଳ ହୋଇପାରିବ। ଯୁବଶକ୍ତିର ପ୍ରଗତି ହିଁ ଦେଶର ପ୍ରଗତି। ଏ ପ୍ରଗତି ଆଗାମୀଦିନରେ ଅଧିକରୁ ଅଧିକ ନିଶ୍ଚୟ ହେବ, ଏ ଆଶା ଓ ବିଶ୍ୱାସ ରହିଛି। ଦେବଭୂମି ଭାରତର ଜୟ ହେଉ, ଯୁବଶକ୍ତିର ଜୟ ହେଉ।





Digitized by PPRACHIN, SOA

# କୃତଜ୍ଞତାର ମର୍ମକଥା

କୃତଜ୍ଞତା ଏକ ଶବ୍ଦ ମାତ୍ର ନୁହେଁ, ଏକ ଭାବ, ଏକ ଗଭୀର ଅନୁଭବ। ଜୀବନର ଚଲାପଥରେ ଆଉ କାହାର ଅହେତୁକ ଶ୍ରଦ୍ଧା, ସାହାଯ୍ୟ ଓ ସହଯୋଗ ପାଇଲେ ମନରେ ଯେଉଁ ଭାବାନ୍ତର ଆସେ, ତାହାର ଅଭିବ୍ୟକ୍ତି ହେଉଛି କୃତଜ୍ଞତାର ଅନ୍ୟନାମ। ଅହେତୁକ କହିବାର ଅର୍ଥ ହେଉଛି ବିଶେଷ କିଛି ଲାଭର ଆଶା ଓ ଲାଳସା ନ ରଖି ସାହାଯ୍ୟ ସହଯୋଗ କରିବା। ସାହାଯ୍ୟ ବା ସହଯୋଗଟି ଛୋଟ ହେଉ ବା ବଡ଼, ସେଥିରେ କିଛି ଯାଏ ଆସେ ନାହିଁ, ଅସଲ କଥାଟି ହେଉଛି ତା' ପଛରେ ଥିବା ମନୋଭାବ। ଏପରି ମନୋଭାବ ପ୍ରସ୍ତୁତ ହୋଇଥାଏ ନୈତିକତା, ସଚେତନତା ଓ ସହାନୁଭୂତି ପ୍ରଭୃତି ଉପାଦାନ ଦ୍ୱାରା। ଏ ତ ଗଲା ସହଯୋଗ କରିଥିବା ବ୍ୟକ୍ତିର ମନୋଭାବର କଥା। ବର୍ତ୍ତମାନ ଦେଖିବା ଏହାକୁ ଗ୍ରହଣ କରୁଥିବା ବ୍ୟକ୍ତିର କଥା। କୃତଜ୍ଞତା ଏହି ଗ୍ରହଣଶୀଳତାର ଅନୁପମ ଅଭିବ୍ୟକ୍ତି। ଏପରି ବ୍ୟକ୍ତି ଅଛନ୍ତି ଯେଉଁମାନେ ଅଯାଚିତ ଅହେତୁକ ସହଯୋଗ ଓ ସାହାଯ୍ୟ ଅଳ୍ପ ଟିକିଏ ପାଇଲେ ମଧ୍ୟ ବହୁ ପ୍ରକାରେ କୃତଜ୍ଞ ହୋଇଥାଆନ୍ତି। କୃତଜ୍ଞତା ସେମାନଙ୍କର ଅନ୍ତରରୁ ପ୍ରକଟିତ ସ୍ୱତଃସ୍ଫୂର୍ତ୍ତ ଭାବପ୍ରବାହ। ସେମାନଙ୍କୁ ଏଥିପାଇଁ ବତାଇବାକୁ ପଡ଼େ ନାହିଁ ଅଥବା ମହାବିଦ୍ୟାଳୟ/ ବିଶ୍ୱବିଦ୍ୟାଳୟକୁ ଯିବାକୁ ପଡ଼େ ନାହିଁ। ଡିଗ୍ରୀ, ଡିପ୍ଲୋମାର ଏହା ସହିତ କିଛି ସମ୍ପର୍କ ନାହିଁ, ଏହା ମୁକ୍ତକଣ୍ଠରେ ସ୍ୱୀକାର୍ଯ୍ୟ। ପୁଣି ଏପରି ଲୋକ ଅଛନ୍ତି ଯେଉଁମାନେ ଅନ୍ୟଠାରୁ ଉପକାର ପାଇଲେ ତାକୁ ସେମାନଙ୍କର ପ୍ରାପ୍ୟ ବୋଲି ବିଚାରିଥାନ୍ତି ଓ ଅଳ୍ପ ସମୟ ମଧ୍ୟରେ ଭୁଲି ଯାଇଥାନ୍ତି। ସେମାନେ ମନେ ମନେ ଅନ୍ୟମାନଙ୍କଠାରୁ ବଡ଼ ବୋଲି ନିଜକୁ ଭାବୁଥିବାରୁ ତାହା ଅନ୍ୟମାନଙ୍କର ତାଙ୍କ ପ୍ରତି ଅବଶ୍ୟ କର୍ତ୍ତବ୍ୟ ବୋଲି ବିଚାରିଥାନ୍ତି। ପୁଣି କେତେକ ଲୋକ ଅଛନ୍ତି ଯେଉଁମାନେ ଅନ୍ୟର ସାହାଯ୍ୟ ଉପକାରକୁ କାକତାଳୀୟ ଅଥବା ଆକସ୍ମିକ ଯୋଗାଯୋଗ ତଥା ଏକଏକ ଘଟଣା ବୋଲି ବିଚାରିଥାନ୍ତି। କୃତଜ୍ଞତାର ସାମାନ୍ୟତମ ଭାବ ସେମାନଙ୍କ ମନରେ ପ୍ରକଟିତ ହୁଏନାହିଁ, ମୁହଁରେ ପ୍ରକାଶ ପାଇବା ତ ଦୂରର କଥା। ଖାଣ୍ଟି ମଣିଷ ଅର୍ଥାତ୍ ଭଲ ମଣିଷକୁ ଚିହ୍ନିବାକୁ ହେଲେ କୃତଜ୍ଞତା ଏକ ମାନଦଣ୍ଡ, ଏହା ସ୍ୱୀକୃତ ହୋଇଛି। ଏହି ପରିପ୍ରେକ୍ଷୀରେ କବିବର ରାଧାନାଥଙ୍କ ରଚନାରୁ ପଦେ ଅଧେ ସ୍ମରଣକୁ ଆସେ-



Digitized by PPRACHIN, SOA

ମହତଜନଠାରେ କରୁଣା କଲେ।
ସେ କରୁଣା ନ ଯାଏ କେବେ ବିଫଳେ॥
ଆଶୁ ସୁଫଳ ଜାତ ନିଶ୍ଚେ ହୁଅଇ।
ପୁଣି କରୁଣାପ୍ରଭା ପ୍ରତିଫଳଇ ॥

ଆମର ସୃଷ୍ଟି, ସ୍ଥିତି ଓ ସମୃଦ୍ଧି ପାଇଁ ଯେଉଁମାନଙ୍କର ଅବଦାନ ରହିଛି, ସେମାନଙ୍କ ପ୍ରତି ଅଶେଷ କୃତଜ୍ଞତା ଜ୍ଞାପନ ଆମର ପରମ କର୍ତ୍ତବ୍ୟ। ମାତାପିତା ଆମକୁ ପୃଥିବୀକୁ ଆସିବାକୁ ସୁଯୋଗ ଦେଇଛନ୍ତି, ଆମ ପ୍ରତି ଅସୀମ ଶ୍ରଦ୍ଧା ଓ ଅମାପ ସ୍ନେହ ଅଜାଡ଼ି ଦେଇଛନ୍ତି। ଆମ ଓଠରେ ଟିକିଏ ହସ ଦେଖିବା ପାଇଁ କେତେ ଯତ୍ନ କରିଛନ୍ତି, ପରିଶ୍ରମ କରିଛନ୍ତି। ପାଇବାର ଆଶା ନ ରଖି କେବଳ ଦେବାରେ ଆନନ୍ଦ ପାଇଛନ୍ତି। ନିଜ ବୟସ ଗଣିଛନ୍ତି। ମାତ୍ର ଆମ ବୟସ ଗଣିବାକୁ ଭୁଲି ଯାଇଛନ୍ତି। ଆମ ମଳିନ ମୁହଁର କାରଣ କହିବା ଆଗରୁ ବୁଝିପାରିଛନ୍ତି। ସେମାନଙ୍କ ଋଣ ତ କାଳେ କାଳେ ଅଶୁଝା, ତଥାପି କୃତଜ୍ଞତା ମାଧ୍ୟମରେ ଶୁଝିବାର ପ୍ରୟାସ ଟିକିଏ କରାଯାଇପାରେ।

ଆମ ଦେଶ ଆମ ପାଇଁ ସ୍ୱର୍ଗଠାରୁ ବଡ଼। ଆମ ପାଇଁ କେତେ ଯେ ଶ୍ରଦ୍ଧା ତା'ର ଯାହା କହିବାକୁ ଭାଷା ନାହିଁ। ସେ ମାଟିଦେଇଛି ଠିଆହେବା ପାଇଁ। ବାଟଦେଇଛି ଚାଲିବା ପାଇଁ, ପାଣି ଦେଇଛି ପିଇବା ପାଇଁ। ଶସ୍ୟ ଦେଇଛି ଖାଇବା ପାଇଁ, ଅମ୍ଳଜାନ ଦେଇଛି ପ୍ରଶ୍ୱାସ ନେବାପାଇଁ। ସେ ଆମକୁ ଦେଇଛି ପରିଚୟ, ପ୍ରତିଷ୍ଠା ଓ ସ୍ୱାଭିମାନ। ତାକୁ ଯେତେ ପ୍ରଣାମ ଜଣାଇଲେ ମଧ୍ୟ ନିଅଣ୍ଟ ହେବ। ତାକୁ ସହସ୍ର ପ୍ରଣାମ ହିଁ ତା' ପ୍ରତି କୃତଜ୍ଞତାର ଅନ୍ୟନାମ।

ଭଗବାନ ସର୍ବତ୍ର ସମାନ ଭାବରେ ବିଦ୍ୟମାନ। ଆମେ ଆମକୁ ଯେତିକି ଭଲ ପାଉ, ସେ ଆମକୁ ତା'ଠାରୁ ବହୁ ଗୁଣରେ ଅଧିକ ଭଲପାଆନ୍ତି। ଆମେ ତାଙ୍କୁ ଦାୟିତ୍ୱ ଦେଉ କି ନ ଦେଉ ସେ ଆମର ଦାୟିତ୍ୱ ନେଇଛନ୍ତି। ଏ ଦାୟିତ୍ୱ ସୁରକ୍ଷା ଓ ସମୃଦ୍ଧିର ଦାୟିତ୍ୱ। ସେ ଭିତରେ ଓ ବାହାରେ ଆମକୁ ଆବୋରି ରହିଛନ୍ତି। ଆମେ ଚିହ୍ନୁ କି ନ ଚିହ୍ନୁ ବିପଦରେ ବନ୍ଧୁ ଏବଂ ଅଭାବରେ ମାତା ହୋଇ ସେ ଆମକୁ ଚଳାଇ ନିଅନ୍ତି। ସତରେ ଆମ ଅଲକ୍ଷ୍ୟରେ ଆମ ହାତଧରି ଚଳାଇ ନେଉଥିବା ଭଗବାନଙ୍କୁ ଅସୀମ କୃତଜ୍ଞତା ଜଣାଇବା ଉଚିତ। ପୁରୁଷର ଶକ୍ତିରେ ସେ, କୁମାରୀର ଲାଜରେ ସେ, ଶିଶୁର ହସରେ ସେ, ମାଟିର ଗନ୍ଧରେ ସେ, ଫୁଲର ସୁବାସରେ ସିଏ। ସୂର୍ଯ୍ୟର ଆଲୋକ ସିଏ, ପବନର ଝଙ୍କାର ସିଏ, ସମୁଦ୍ରର ଜୁଆର ସିଏ, ଅଗ୍ନିର ଉତ୍ତାପ ସିଏ, ବରଫର ଶୀତଳତା ସିଏ। ଆମେ ତ ଆମେ, ଆମ ପ୍ରଥମ ବଂଶଧର ଆସିବାର ବହୁ ଆଗରୁ ସେମାନଙ୍କ ବଞ୍ଚିବା ଓ ବଢ଼ିବା ପାଇଁ ମାଟି, ପାଣି, ପବନ, ଆଲୋକ ଓ ତେଜ ଯିଏ ଖଞ୍ଜି ଦେଇଛନ୍ତି, ସେ ହେଉଛନ୍ତି ଭଗବାନ। ତାଙ୍କୁ କୃତଜ୍ଞତା ଜଣାଇବା ପାଇଁ ସବୁ ଶବ୍ଦ ପୃଥିବୀରୁ ସରିଯିବ,



Digitized by PPRACHIN, SOA

ତଥାପି ତାଙ୍କ ପାଇଁ କୃତଜ୍ଞତା ଅଧାହୋଇ ରହିଯିବ। ଦୁଇଧାର ଅଶ୍ରୁ ଅପର ଅଧାକୁ ପୂରଣ କରିବା ପାଇଁ ପ୍ରୟାସ କରିବ ମାତ୍ର।

ଅତଏବ ମାଟି, ପାଣି, ପବନ, ବୃକ୍ଷଲତା, ଆଲୋକ କେହି ଜଡ଼ ଭୌତିକ ଉପାଦାନ ମାତ୍ର ନୁହଁନ୍ତି, ପ୍ରତ୍ୟେକ ଏକ ଏକ ଚିନ୍ମୟ ସତ୍ତା। ପ୍ରତ୍ୟେକ ଭିତରେ ଅମାପ ସାମର୍ଥ୍ୟ ଓ ଅନୁପମ ଅନୁଭବ ଶକ୍ତି ରହିଛି। ପ୍ରତ୍ୟେକେ ହେଉଛନ୍ତି ଜୀବନୀଶକ୍ତିର ଏକ ଏକ ଉତ୍ସ। ସେହି ଜୀବନୀ ଶକ୍ତି ଆମକୁ ଜୀବନ୍ତ କରି ରଖିଛି। ତାଙ୍କ ମହିମା ଗାଇବା ପାଇଁ ଆମ ନିକଟରେ ଭାଷା ନାହିଁ। ନୀରବତାର ଭାଷାରେ ସହାସ୍ୟ ସ୍ୱୀକୃତି ହିଁ ତାଙ୍କ ପାଇଁ ଅସଲ କୃତଜ୍ଞତା।

ଜୀବନର ଚଲାପଥରେ ଯେଉଁଠାରୁ ଏବଂ ଯେଉଁମାନଙ୍କଠାରୁ ଆମେ ଶ୍ରଦ୍ଧା ସ୍ନେହ, ସୁରକ୍ଷା ଓ ଆଶୀର୍ବାଦ ପାଇଛୁ, ତାହାର କଳନା ନାହିଁ। ପ୍ରାପ୍ତି ସ୍ୱୀକାର ସହ କୃତଜ୍ଞତା ଜ୍ଞାପନ ହିଁ ଆମର କର୍ତ୍ତବ୍ୟ। ଆମେ କୃତଜ୍ଞତା ଜ୍ଞାପନ କଲେ, ଆମ ପିଲାଏ ଆମଠାରୁ ଶିଖିବେ। ଉପଦେଶ ନ ଦେଇ ଉଦାହରଣ ହେଲେ ବାତାବରଣ ବିଶୁଦ୍ଧ ଓ ବିମୁଗ୍ଧ ହେବ। କୃତଜ୍ଞତା ଜ୍ଞାପନ ବହିର ପାଠ ନୁହେଁ, ବ୍ୟବହାରର ପାଠ। କୃତଜ୍ଞତାରେ ଶାନ୍ତି ମିଳେ। କୃତଜ୍ଞତାର ସଦ୍‌ବ୍ୟବହାରରେ ଆମେ ସମସ୍ତଙ୍କର ଏବଂ ସମସ୍ତେ ଆମର ଅତି ଆପଣାର ହୋଇପାରିବେ। 'ବସୁଧୈବ କୁଟୁମ୍ବକମ୍'- ଏହି କଥାର ମହତ୍ତ୍ୱ ସେଦିନ ଅଧିକ ବୁଝିହେବ।





Digitized by PPRACHIN, SOA

# ନାସ୍ତି ନୁହେଁ ଅସ୍ତି

ଆମ ଜୀବନରେ ଯେତେକଥା ଅଛି ତାହାର ଏକ ଅସ୍ତିଦିଗ ଅଛି ପୁଣି ଏକ ନାସ୍ତିଦିଗ ରହିଛି। ତା'ର କାରଣ ହେଉଛି ଦ୍ୱୈତତତ୍ତ୍ୱ ଦ୍ୱାରା ଜୀବନ ନିୟନ୍ତ୍ରିତ, ମଣିଷର ମନ ନିର୍ମିତ। ଦୁଇଟି କଥା ଯଥା- ସୁଖ ଓ ଦୁଃଖ, ସୁବିଧା ଓ ଅସୁବିଧା, ଭଲ ଓ ମନ୍ଦ, ଲାଭ ଓ କ୍ଷତି, ଶାନ୍ତି ଓ ଅଶାନ୍ତି, ଜ୍ଞାନ ଓ ଅଜ୍ଞାନ, ଭୁଲ୍ ଓ ଠିକ ଇତ୍ୟାଦି ଇତ୍ୟାଦି କଥାକୁ ନେଇ ଜୀବନ ପରିଚାଳିତ ହେଉଛି।

କେବଳ ଭଗବାନ ଏକ ଅଦ୍ୱିତୀୟ। ସେ କେବଳ ଶାନ୍ତିର ପ୍ରତୀକ, ଆନନ୍ଦର ପ୍ରତୀକ, ଆଲୋକର ପ୍ରତୀକ ସର୍ବୋପରି ପୂର୍ଣ୍ଣତାର ପ୍ରତୀକ। ତାଙ୍କ ଭିତରେ ଅଶାନ୍ତି, ଦୁଃଖ, ଅନ୍ଧାର ଅଥବା ଅପୂର୍ଣ୍ଣତା ନହିଁ। ସବୁ ତାଙ୍କର ସୁଧାମୟ ଓ ମଧୁମୟ। ସେ ଅସ୍ତିର ପ୍ରତୀକ, ନାସ୍ତିର ନୁହେଁ। ସେ ମଧୁରତାର ପ୍ରତୀକ, ରୁକ୍ଷତାର ନୁହେଁ, ସେ ଜ୍ଞାନର ପ୍ରତୀକ, ଅଜ୍ଞାନତାର ନୁହେଁ।

ଆମ ଜୀବନର ପ୍ରତ୍ୟେକ କଥାର ଭଲ ଦିଗ ରହିଛି ପୁଣି ମନ୍ଦ ଦିଗ ମଧ୍ୟ ରହିଛି। ଉଦାହରଣ ସ୍ୱରୂପ ଧନର କଥା ଦେଖାଯାଉ। ଧନ ଏକାନ୍ତ ଆବଶ୍ୟକ, ଏହା ଏକ ଶକ୍ତି। ପାର୍ଥିବ ଜୀବନ ପାଇଁ ତାହା ଅତ୍ୟନ୍ତ ମୂଲ୍ୟବାନ। ମାତ୍ର ଏହାର ଆଧିକ୍ୟ ଅସୁବିଧାରେ ପକାଏ, ଏହାର ଅପବ୍ୟବହାର ଆମକୁ ବାଟବାଉଳା କରେ। ଅଧିକ ହେଲେ ଆହୁରି ଅଧିକ ପାଇଁ ଲୋଭବଢ଼େ, କାମନାର ଅଗ୍ନିଶିଖା ଅଧିକ ଉଚ୍ଚତାକୁ ଉଠେ। ନିଜକୁ ଅନ୍ୟଠାରୁ ବଡ଼ ବୋଲି ଓ ଭିନ୍ନ ବୋଲି ମନେ ହୁଏ। ଧନ ବଢ଼ିଲେ କ୍ଷମତା ପାଇବାର ଲାଳସା ବଢ଼େ। ଅହଂକାର ବଢ଼େ ଓ ଅନ୍ୟମାନଙ୍କୁ ହୀନ ଦୃଷ୍ଟିରେ ଦେଖିବାକୁ ବେଳେବେଳେ ଇଚ୍ଛାହୁଏ। ଏହା ଧନର ପ୍ରଭାବ ନୁହେଁ, ମନର ପ୍ରଭାବ। ଧନ ଆଦୌ କ୍ଷତିକାରକ ନୁହେଁ, ଧନର ଅପବ୍ୟବହାର ହିଁ ଯଥାର୍ଥରେ କ୍ଷତିକାରକ। ଧନ ସହିତ ଜ୍ଞାନ ଥିଲେ ଏପରି ଅବସ୍ଥା ଆସେ ନାହିଁ, ଜ୍ଞାନ ନଥିଲେ ଏପରି ଅବସ୍ଥା ହିଁ ଆସିଥାଏ।

କ୍ଷମତା ମଧ୍ୟ ଧନ ପରି ଏକ ବିଶିଷ୍ଟ ଉପାଦାନ। କ୍ଷମତା ବଳରେ ଜଣେ ଆତ୍ମସଚେତନ ହୋଇପାରେ ଅଥବା ଦୁର୍ଦ୍ଧର୍ଷହୋଇପାରେ। କ୍ଷମତା ଦାୟିତ୍ୱ ସଂପନ୍ନ କରାଏ, କରିବା ସଚେତନ କରାଏ। ଅନ୍ୟର କଲ୍ୟାଣ ନିମନ୍ତେ କ୍ଷମତା ଲାଗିପାରେ, ଅନ୍ୟର କ୍ଷତିପାଇଁ ମଧ୍ୟ ପ୍ରଯୁକ୍ତ ହୋଇପାରେ। ସବୁ ନିର୍ଭରକରେ ଆମର ବ୍ୟବହାର ଉପରେ।



Digitized by PPRACHIN, SOA

ସମାଜର କିଛି ଉନ୍ନତିକର କାର୍ଯ୍ୟରେ ଏହା ଲାଗିଲେ ଯଥାର୍ଥ ହୁଏ। ନିଜର ସୁଖସୁବିଧା ପାଇଁ କ୍ଷମତା ଲାଗିଲେ ତାହା କ୍ଷମତାର ଅପବ୍ୟବହାରରେ ଗଣାହୁଏ। ଅନ୍ୟର କ୍ଷତିକଲେ କ୍ଷମତା ଲାଗିଲେ ତାହା ପୂତିଗନ୍ଧମୟ ହୋଇଯାଏ। ବ୍ୟବହାର କରି ଜାଣିଲେ କ୍ଷମତା ବଳରେ ଅନ୍ୟମାନଙ୍କ ପାଇଁ ବହୁତ କିଛି ସୁବିଧା କରାଯାଇପାରେ ମାତ୍ର ବ୍ୟବହାର କରି ନ ଜାଣିଲେ ସର୍ବନାଶ।

ବୁଦ୍ଧି କ୍ଷେତ୍ରରେ ମଧ କଥାଟି ସେହିପରି। ବୁଦ୍ଧିବଳରେ ବୈଜ୍ଞାନିକ ଉଦ୍ଭାବନ ଓ ଆବିଷ୍କାର ଘଟିଥାଏ। ବୁଦ୍ଧିର ବିକାଶ ଓ ବିକଶିତ ବୁଦ୍ଧିର ପ୍ରୟୋଗ ହିଁ ମାନବ ପ୍ରଗତିର ମୂଳହେତୁ। ବୁଦ୍ଧି ଆଣେ ଜିଜ୍ଞାସା, ଜିଜ୍ଞାସାରୁ କଳ୍ପନା, କଳ୍ପନାରୁ ବାସ୍ତବତା ଓ ବାସ୍ତବତାର ସମୃଦ୍ଧି। ବୁଦ୍ଧି ମଣିଷକୁ ପକ୍ଷୀପରି ଆକାଶରେ ଉଡ଼ାଇପାରିଛି, ପାଣିରେ ମାଛ ପରି ପହଁରିବାର ସୁଯୋଗ ଦେଉଛି। ବୁଦ୍ଧି ପୁଣି ସାରା ପୃଥିବୀର ଦୂରତା କମାଇଦେଇଛି। ନିଜ ଘରେ ସାରା ପୃଥିବୀକୁ ଆଣି ରଖି ଦେଇଛି। ଦୂର ଆତ୍ମୀୟର ଇଚ୍ଛାମାତ୍ରକେ ଦର୍ଶନ କରାଯାଇଛି। ଏହି ବୁଦ୍ଧି ପୁଣି ନକାରାତ୍ମକ ବାଟରେ ଯାଇ ପ୍ରଳୟଙ୍କରୀ ହୋଇପାରୁଛି। ଘଡ଼ିକରେ ସ୍ୱର୍ଣ୍ଣଲଙ୍କା ଧ୍ୱଂସକରି ଦେଉଛି ଏହି ବୁଦ୍ଧିର ଅସଦ୍‌ବ୍ୟବହାର। ଆତଙ୍କବାଦୀର ପରମାଣୁ ବୋମା ଅଥବା ଉଦ୍‌ଜାନ ବୋମାର ବ୍ୟବହାର ଭିତରେ ରହିଛି ବୁଦ୍ଧିର ନକାରାତ୍ମକ ଦିଗ।

ଜୀବନର ଦୁଃଖର କଥା ବିଚାରକୁ ନେଲେ ଜଣାଯାଏ ଯେ ଦୁଃଖ କେତେ କେତେ ମଣିଷଙ୍କୁ ଭାଙ୍ଗିଦିଏ ଆଉ  କେତେ କେତେ ମଣିଷଙ୍କୁ ଟାଣି କରି ଦିଏ। ସହନଶକ୍ତି ବଢ଼ାଏ, ମଣିଷକୁ ନିଜକୁ ନିଜେ ଅତିକ୍ରମ କରିବାକୁ ସାହସ ଦିଏ। ଜୀବନକୁ ବୁଝିବାକୁ, ଜଗତକୁ ଜାଣିବାକୁ ଶକ୍ତିଦିଏ ଦୁଃଖ, ଅନୁଭୂତି ସଂପନ୍ନ କରେ ଦୁଃଖ। ଦୁଃଖତ ସମସ୍ତଙ୍କର ଅଛି, ଏମିତି କେହି ନାହିଁ ଯାହାର ଆଦୌ ଦୁଃଖ ନାହିଁ। କାହା ଦୁଃଖ କିପରି କାହିଁକି ତାହା ଭିନ୍ନ କଥା ସୁନା ସହିତ ଖାଦ ନ ମିଶିଲେ ଅଳଙ୍କାର ଗଢ଼ିହୁଏ ନାହିଁ। ଯେପରି ସୁନା ସହିତ ଖାଦ ମିଶି ଅଳଂକାର ଗଢ଼ା ହୁଏ, ସେପରି ସୁଖ ସହିତ ଦୁଃଖ ମିଶି ଜୀବନ ଗଢ଼ାହୁଏ। ମନେପଡ଼େ ଏଇ ପ୍ରସଙ୍ଗରେ ବୁଦ୍ଧ ଦେବଙ୍କର ଗୋଟିଏ କଥା। ପୁତ୍ରହରା ମାତାର ଆକୁଳତା ଏବଂ ମୃତ ପୁତ୍ରକୁ ବଞ୍ଚାଇ ଦେବାର ବାରମ୍ବାର ଅନୁରୋଧ ଶୁଣି ବୁଦ୍ଧଦେବ କହିଲେ- "ମାଆ, ମୁଁ ତୁମ ପୁତ୍ରକୁ ବଞ୍ଚାଇ ଦେବି ଯଦି ତୁମେ ମୁଠାଏ ସୋରିଷ ଆଣିଦେବ ତାହାଙ୍କ ଘରୁ ଯାହାଙ୍କ ଘରୁ କେହି କେବେ ମୃତ୍ୟୁ ବରଣ କରିନଥିବେ।" ଦାରୁଣ ଦୁଃଖରେ ଭାଙ୍ଗି ପଡିଥିବା ମାଆ ଯାଇ ଦୁଆର ଦୁଆର ବୁଲି ଶେଷରେ ହତାଶରେ ଫେରିଆସିଲେ, ସର୍ତ୍ତଅନୁସାରେ ମୁଠାଏ ସୋରିଷ ପାଇଲେ ନାହିଁ।  ଠିକ୍ ସେହିପରି ଏପରି ଜଣେ କେହି ନାହିଁ, ଯାହାର ଜୀବନ କିଛି ହେଲେ ଦୁଃଖ ନାହିଁ। ଆମକୁ ତାହା ଜଣାପଡ଼େ ନାହିଁ କାରଣ ଆମେ ନିଜକୁ ଛାଡ଼ି ଅନ୍ୟ ସମସ୍ତଙ୍କୁ ସୁଖୀ ବୋଲି ଭାବୁ। ମାତ୍ର



Digitized by PPRACHIN, SOA

ସେହି ମଣିଷ ନିଜେ ଯିଏ ଦୁଃଖର ଲହରୀକୁ ଭାଙ୍ଗି ଆଗକୁ ଯାଇଛନ୍ତି । ତାଙ୍କର ଚିନ୍ତାଶକ୍ତି ଭିନ୍ନ ଯାହାଙ୍କଠାରୁ ଉପଦେଶ ଓ ଦିଗଦର୍ଶନ ଅଭିନନ୍ଦନୀୟ । ତାଙ୍କୁ ଲୋକେ ଦୁଃଖୀ ବୋଲି କହିପାରନ୍ତି, ସେ ମଧ୍ୟ ନିଜକୁ ଦୁଃଖୀ ବୋଲି ମନେକରି ପାରନ୍ତି, ମାତ୍ର ସେମାନେ ଅନ୍ୟମାନଙ୍କ ମଧ୍ୟରେ ଅନନ୍ୟ, ସେମାନେ ହେଲେ ନିଦା ମଣିଷ। ସେମାନେ ଏକ ପ୍ରକାର ଚିନ୍ତାସିଦ୍ଧ ଓ ବାକ୍‌ସିଦ୍ଧ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ବିବର୍ତ୍ତନ ଧାରାରେ ଚେତନାର ଅଗ୍ରଗତି ଘଟିଚାଲିଛି । କାଲିଯାହା ଅସମ୍ଭବ ଲାଗୁଥିଲା, ଆଜି ତାହା ସମ୍ଭବହୋଇଛି । ଆଜି ଯାହା ଅସମ୍ଭବ ଲାଗୁଛି, କାଲି ତାହା ସମ୍ଭବ ହେବ। ପରଦାର ଅନ୍ତରାଳରେ ଥିବା ବିଶ୍ୱଶକ୍ତି ତାହା କରିବ। ସେହିଶକ୍ତି ଆଗାମୀ ଦିନରେ ମଣିଷକୁ ଦିଗ୍‌ଦର୍ଶନ ଦେବ, ଏ ପୃଥିବୀକୁ ନୂଆ ବାଗରେ ସଜାଡ଼ି ଦେବ। ସେତେବେଳେ ଧନ, କ୍ଷମତା, ବୁଦ୍ଧି ଏବଂ ଜୀବନର ଅଭିଜ୍ଞତାର ସଦ୍‌ବ୍ୟବହାରହେବ। ଫଳରେ ଏ ପୃଥିବୀ ହେବ ସ୍ୱର୍ଗଠାରୁ ଅଧିକ ଶୋଭନସୁନ୍ଦର ଓ ଲଳିତ ଲାବଣ୍ୟଯୁକ୍ତ। ମନୁଷ୍ୟର ଜୀବନ ହେବ ଦିବ୍ୟ ଆନନ୍ଦର ଅମୃତ ଉଚ୍ଛୁଳା ସୁବର୍ଣ୍ଣ କଳସ , ସୁଷମାର ସୁରଞ୍ଜିତ ସୌମ୍ୟ ମଧୁମାସ। ସେହି ସମୟ ଶୀଘ୍ର ଆସୁ, ଏହା ଆମେ ଆଶା କରିବା ଏବଂ ଗୁଣ୍ଡୁଚି ମୂଷା ହେଲେ ମଧ୍ୟ ବିଶ୍ୱଶକ୍ତିର ସେତୁବନ୍ଧରେ ଟିକିଏ ବାଲିରେଣୁ ଝାଡ଼ିଦେବା। ସେହି ବାଲିରେଣୁର ସଂଯୋଗରେ ସେତୁ ବନ୍ଧ ପୂର୍ଣ୍ଣ ହେବ।





Digitized by PPRACHIN, SOA

## ଲେଖକଙ୍କ ଅନ୍ୟାନ୍ୟ ପ୍ରକାଶିତ ଓ ସଙ୍କଳିତ ପୁସ୍ତକମାଳା

ପ୍ରବନ୍ଧ ଓ ସମାଲୋଚନା :

୧. ରାଜକବି ଧନଞ୍ଜୟ ଭଞ୍ଜଙ୍କ କୃତି ଓକୃତିତ୍ୱ

୨. ସମୀକ୍ଷା ସୌରଭ

୩. ସାହିତ୍ୟ ଚିନ୍ତନ

୪. ସମୀକ୍ଷା ସ୍ତବକ

୫. ଆମ ସଂସ୍କୃତି : ଆମ ଜୀବନ

୬. ସମୀକ୍ଷା ପ୍ରବାହ

୭. ପ୍ରବନ୍ଧ ଓ ପ୍ରାବନ୍ଧିକ

୮. ସାମାନ୍ୟ ସୂଚନା

୯. ଶ୍ରୀଅରବିନ୍ଦଙ୍କ ସାବିତ୍ରୀ ସମ୍ବନ୍ଧେ

୧୦. ଆମ ସଂସ୍କୃତି ଓ ଅନ୍ୟାନ୍ୟ ପ୍ରବନ୍ଧ

ଗୀତି କବିତା ଓ ଆଧୁନିକ କବିତା :

୧. ଧୂପବାସ

୨. ନବଚେତନା

୩. ମାଟିମହକ

୪. ଆରାଧନା

୫. ପ୍ରତିଧ୍ୱନି

୬. କାଲି ସକାଳର ସୂର୍ଯ୍ୟ (ଆଧୁନିକ କବିତା)

୭. ବନମାଳା

୮. ଭକ୍ତି ଶତକ

୯. ତୁମେ ଓ ମୁଁ



Digitized by PPRACHIN, SOA

ସଂକଳନ ଓ ସଂପାଦନା :

୧. ସେମାନଙ୍କ ଆତ୍ମ ଲିପି
୨. ମାତୃକଥାମୃତ
୩. ଶ୍ରୀଅରବିନ୍ଦଙ୍କ ସାବିତ୍ରୀ ଉପାଖ୍ୟାନ
୪. ସର୍ବାଙ୍ଗୀଣ ଶିକ୍ଷା ଓ ଜୀବନ
୫. ସାହିତ୍ୟ ସମ୍ପଦ



Digitized by PPRACHIN, SOA



ଡକ୍ଟର ଶରତ ଚନ୍ଦ୍ର ରଥ

ଜନ୍ମ ସ୍ଥାନ : ସାକ୍ଷୀଗୋପାଳ ନିକଟସ୍ଥ
ବୀରରାମଚନ୍ଦ୍ରପୁର ଶାସନ।

ପିତାଙ୍କ ନାମ : ଶ୍ରୀ ନୀଳାଦ୍ରି ବିହାରୀ ରଥ।

ମାତାଙ୍କ ନାମ : ଶ୍ରୀମତୀ ମନୋରମା ରଥ।

ଶିକ୍ଷା : ଏମ୍.ଏ., ଏମ୍.ଫିଲ୍, ପିଏଚ୍.ଡି।
୧୯୭୭ ମସିହାରେ ଓଡ଼ିଆ ଏମ୍.ଏ. ପରୀକ୍ଷାରେ
ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍କଳ ବିଶ୍ୱବିଦ୍ୟାଳୟ
ସ୍ୱର୍ଣ୍ଣପଦକ ଓ
ଭକ୍ତକବି ମଧୁସୂଦନ ରାଓ ସ୍ୱର୍ଣ୍ଣପଦକ ଲାଭ।

ବୃତ୍ତି : ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର
ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ପ୍ରଫେସର ଭାବେ ସେବା ନିବୃତ୍ତ ହେବା ପରେ
ବି ସାହିତ୍ୟ ସାଧନାରେ ମଗ୍ନ।



ଅଗ୍ରଦୂତ
କଟକ

Digitized by PPRACHIN, SOA